# ଆମ ଭାଷା : ଆମ ସଂସ୍କୃତି

ଲେଖକ
ଜଗନ୍ନାଥ ପ୍ରସାଦ ଦାସ

ପ୍ରକାଶକ :
ଶିକ୍ଷାସନ୍ଧାନ, ଏନ୍.ଡି-୭, ଭି.ଆଇ.ପି. ଏରିଆ
ଆଇ.ଆର.ସି. ଭିଲେଜ, ଭୁବନେଶ୍ୱର - ୭୫୧୦୧୫,
ସହଯୋଗ ରୂପାନ୍ତର, ଭୁବନେଶ୍ୱର
ମୁଦ୍ରଣ : ଶିକ୍ଷା ପ୍ରକାଶନୀ,
ଏନ୍.ଡି-୭, ଭି.ଆଇ.ପି. ଏରିଆ, ଆଇ.ଆର.ସି. ଭିଲେଜ,
ଭୁବନେଶ୍ୱର - ୭୫୧୦୧୫
ପ୍ରଥମ ପ୍ରକାଶନ : ୨୦୧୭
ମୂଲ୍ୟ : ୧୫୦/-
ଆଇଏସ୍‌ବିଏନ୍ : ୯୭୮-୯୩-୮୦୯୬୮-୧୧-୭



## AMA BHASHA : AMA SANSKRUTI

**Jagannath Prasad Das**

Published by :
Sikshasandhan, ND-7, VIP area,
IRC, Village, Bhubaneswar-751015, in collaboration with
Rupantar, Bhubaneswar
Printed at :
Siksha Prakashani, ND-7, VIP area,
IRC, Village, Bhubaneswar-751015
First Edition : 2017
Price : 150/-
ISBN : 978-93-80968-11-7

# ସୂଚୀପତ୍ର

**କୃତଜ୍ଞତା**

ଏ ବହିର ଅଧିକାଂଶ ଲେଖା ପ୍ରଥମେ 'ସମ୍ବାଦ' ଖବରକାଗଜରେ ପ୍ରକାଶିତ ହୋଇଥିଲା ।

# ଅନୁବାଦ କଳା ଓ ରଙ୍ଗବତୀ

ଅନୁବାଦ କହିଲେ ଆମେ ସାଧାରଣତଃ କୌଣସି ଲେଖାର ଗୋଟିଏ ଭାଷାରୁ ଅନ୍ୟ ଏକ ଭାଷାକୁ ରୂପାନ୍ତରୀକରଣ କଥା ବୁଝିଥାଉ । କିନ୍ତୁ ଅନୁବାଦର ଅନେକ ବିଭିନ୍ନ ପରିଭାଷା ଅଛି, ଯଥା : ବ୍ୟାଖ୍ୟା, ବିବରଣ, ଅନୁକରଣ, ପୁନରାଲୋଚନା, କଥନ, ବର୍ଣ୍ଣନ ଇତ୍ୟାଦି ଇତ୍ୟାଦି । ଇଂରେଜୀରେ ମଧ୍ୟ ଟ୍ରାନ୍ସ୍‌ଲେଟ୍ କରିବା ବିସ୍ତୃତ ଅର୍ଥରେ ଗୋଟିଏ ଜିନିଷକୁ ଅନ୍ୟ ଆକାର ବା ମାଧ୍ୟମରେ ପ୍ରକାଶ ବା ଗଠନ କରିବା, ଏପରିକି ଭାବନାକୁ କାର୍ଯ୍ୟରେ ପରିଣତ କରିବା ମଧ୍ୟ ଟ୍ରାନ୍ସଲେସନ ।

ଏହିପରି ବ୍ୟାପକ ପରିଭାଷାରେ ନିମ୍ନଲିଖିତ କାର୍ଯ୍ୟକୁ ମଧ୍ୟ ଅନୁବାଦର ସଂଜ୍ଞାରେ ନିଆଯାଇପାରେ: ଲିଖିତ ଗୀତକୁ ସଂଗୀତ ଦେବା, ଉପନ୍ୟାସକୁ ନାଟକ ବା ଚଳଚ୍ଚିତ୍ରର ରୂପ ଦେବା, ଲିଖିତ ନାଟକକୁ ମଞ୍ଚସ୍ଥ କରିବା, କୌଣସି ଲେଖାକୁ ଆଧୁନିକ ଭାଷା ଓ ଭିନ୍ନ ଭଙ୍ଗୀରେ ପୁନର୍ଲେଖନ କରିବା ଇତ୍ୟାଦି । ଏହି ସଂଜ୍ଞାକୁ ଆହୁରି ପରିବ୍ୟାପ୍ତ କଲେ କୌଣସି କଳାର ଅନୁକରଣରେ ଅନ୍ୟ ଏକ କଳାକୃତି ସୃଷ୍ଟି କରିବା, ଲେଖାର ପ୍ୟାରୋଡ଼ି ବା ଲାଳିକା ରଚନା କରିବା ମଧ୍ୟ ଏକ ପ୍ରକାରର ଅନୁବାଦ । ଏହି ଲେଖାରେ ଅନୁବାଦର ଏହି ବ୍ୟାପକ ଅର୍ଥକୁ ନିଆଯାଇଛି ।

ସବୁ ଅନୁବାଦ ବିଷୟରେ ସବୁ ସମୟରେ ଆଲୋଚନା କରାଯାଇଥାଏ ଏହା ମୂଳ ସୃଷ୍ଟି ପାଖରେ କେତେଦୂର ବିଶ୍ୱସ୍ତ ଏବଂ ଅନୁବାଦଟି ସୁନ୍ଦର କି ନା । ଏଥିପାଇଁ ଚର୍ବିତ ଚର୍ବଣ, ନାରୀ ବିଦ୍ୱେଷୀ ଏବଂ ଅତି ଅସଂଗତ ଉକ୍ତି ବ୍ୟବହାର କରାଯାଇଥାଏ: ଅନୁବାଦ ନାରୀ ଭଳି, ବିଶ୍ୱସ୍ତ ହୋଇଥିଲେ ସୁନ୍ଦରୀ ନୁହେଁ, ସୁନ୍ଦରୀ ହୋଇଥିଲେ ବିଶ୍ୱସ୍ତ ନୁହେଁ । ଅବଶ୍ୟ ଏହାକୁ ଅନ୍ୟ ଭାବେ ମଧ୍ୟ କୁହାଯାଇପାରେ, ଅନୁବାଦ ପୁରୁଷ ଭଳି, କେବେହେଲେ ସୁନ୍ଦର ନୁହେଁ, କେବେ ହେଲେ ବିଶ୍ୱସ୍ତ ନୁହେଁ । ଅନୁବାଦକର୍ତ୍ତାଙ୍କୁ ସବୁବେଳେ ଏହି ବିଶ୍ୱସ୍ତତାର ମାନକରେ ସମାଲୋଚନା

ସହିବାକୁ ପଡ଼ିଥାଏ । ସମାଲୋଚନା ଅତି ଉତ୍କଟ ହୋଇଥାଏ ଯେତେବେଳେ କୌଣସି ପ୍ରସିଦ୍ଧ ଓ ଲୋକପ୍ରିୟ କଳାକୃତିର ଅନୁବାଦ କରାଯାଇଥାଏ ।

ଏପରି ଶରବ୍ୟ ହେବାକୁ ପଡ଼ିଥିଲା ସତ୍ୟଜିତ ରାୟଙ୍କୁ ତାଙ୍କର ଫିଲ୍ମରେ ରବୀନ୍ଦ୍ରନାଥ ଠାକୁର ଓ ବିଭୂତି ଭୂଷଣ ବନ୍ଦ୍ୟୋପାଧ୍ୟାୟଙ୍କ ଲେଖାକୁ ପରିବର୍ତ୍ତିତ କରିଥିବାରୁ । **ପଥେର ପାଁଚାଲୀ** ବହିରେ ଦୁର୍ଗା ମରିଯାଉଛି ଅପୁ ଜନ୍ମ ହେବାର ଠିକ ପରେ ପରେ; ସତ୍ୟଜିତଙ୍କ ଫିଲ୍ମରେ ଦୁର୍ଗା ବଡ଼ ହେବା ପରେ ମରିଯାଉଛି ବର୍ଷାରେ ତିନ୍ତି । **ଅପରାଜିତ** ବହିର ଗୋଟିଏ ପ୍ରମୁଖ ଚରିତ୍ର ଲୀଳା ଫିଲ୍ମରେ ଅନୁପସ୍ଥିତ । **ଚାରୁଲତା** ଫିଲ୍ମ ରବୀନ୍ଦ୍ରନାଥଙ୍କ **ନଷ୍ଟନୀଡ଼** ଗଳ୍ପରୁ କେତେ ଅଲଗା ସେ ବିଷୟରେ ସମୀକ୍ଷକ ଅଶୋକ ରୁଦ୍ର ଏକ ଦୀର୍ଘ ଲେଖା ଲେଖିଥିଲେ ଏବଂ କହିଥିଲେ ଯେ ନଷ୍ଟନୀଡ଼ ସହିତ ଚାରୁଲତାର ସାମଂଜସ୍ୟ ଅତି ସାମାନ୍ୟ । ଏ ବିଷୟରେ ସତ୍ୟଜିତ ପନ୍ଦର ପୃଷ୍ଠାର ଏକ ଦୀର୍ଘ ସ୍ପଷ୍ଟୀକରଣ ଓ ଉତ୍ତର ଦେଇ ଶେଷରେ ଲେଖିଥିଲେ, ରୁଦ୍ରମଶାୟ ସାହିତ୍ୟ ବୁଝନ୍ତି କି ନା ମୁଁ ଜାଣେ ନା, ତେବେ ସେ ଫିଲ୍ମ କଥା ଆଦୌ ଜାଣନ୍ତି ନାହିଁ; ତାଙ୍କୁ ଆଉ ଉଦ୍ଧାର କରାଯାଇପାରିବ ନାହିଁ ।

ଫିଲ୍ମ ଯେ ସାହିତ୍ୟରୁ ଏକ ଅଲଗା କଳା, ଏ ବିଷୟରେ ସ୍ୱୟଂ ରବୀନ୍ଦ୍ରନାଥ ମଧ୍ୟ ଏକମତ ହୋଇଥାନ୍ତେ, କାରଣ ଶିଶିର ଭାଦୁଡ଼ୀଙ୍କ ଭାଇ ମୁରାରୀ ଭାଦୁଡ଼ୀଙ୍କୁ ୧୯୨୯ରେ ଦେଇଥିବା ପତ୍ରରେ ସେ ଲେଖିଥିଲେ, ପ୍ରତିଟି କଳା ନିଜେ ତିଆରି କରିଥିବା ପୃଥିବୀରେ ନିଜର ସ୍ୱତନ୍ତ୍ର ଅଭିବ୍ୟକ୍ତି ଚାହେଁ... ସିନେମା ଏ ପର୍ଯ୍ୟନ୍ତ ସାହିତ୍ୟର କ୍ରୀତଦାସ ଭଳି ଆଚରଣ କରୁଛି କାରଣ ଏ ପର୍ଯ୍ୟନ୍ତ ତାକୁ ମୁକୁଳାଇବା ପାଇଁ କେହି ସୃଜନଶୀଳ ପ୍ରତିଭା ଆସି ନାହାନ୍ତି ।(Ramin Jahanbeglooଙ୍କର The Sprit of India, 2008 ପୃଷ୍ଠା 97ରେ ଉଦ୍ଧୃତ) । ସତ୍ୟଜିତ ରାୟ ବୋଧହୁଏ ଏଭଳି ଏକ ପ୍ରତିଭା ଥିଲେ । ଏ କଥାକୁ ସଲମାନ ରଶଦି ଭିନ୍ନ ଭାବରେ କହିଥିଲେ: ବହି ଓ ଫିଲ୍ମର ଭାଷା ଅଲଗା ଏବଂ ଅନୁବାଦ କରିବାର ଉଦ୍ୟମ ଅଧିକାଂଶ ସମୟରେ ଅସଫଳ ରହେ ।

ଠିକ୍ ଏଇ ଭଳି ପରିସ୍ଥିତି ଉପୁଜିଥିଲା ଯେତେବେଳେ **ମାଟିର ମଣିଷ**କୁ ନେଇ ମୃଣାଳ ସେନ ଫିଲ୍ମ କରିଥିଲେ । ତାଙ୍କର ଆତ୍ମଜୀବନୀର ବର୍ଣ୍ଣନା ଅନୁସାରେ ୧୯୬୬ରେ ସେ ଯେତେବେଳେ ଫିଲ୍ମର ଶୁଟିଙ୍ଗ୍ କରୁଥିଲେ, ଜଣେ ରିସର୍ଚ୍ଚ ସ୍କଲାର ତାଙ୍କ ସହିତ ଯୁକ୍ତି କରିଥିଲେ ଯେ ବହିର ପାଠ ସହିତ ସେ ଅଯଥା

ସ୍ୱେଚ୍ଛାଚାର କରିଛନ୍ତି । ମୃଣାଳଙ୍କର ଉତ୍ତର ଥିଲା ଯେ ତାଙ୍କୁ ତିନି ଜଣ ମାଲିକାଣୀଙ୍କ ପାଖରେ କାମ କରିବାକୁ ହୁଏ : ବହିର ପାଠ, ସିନେମାର ଭାଷା ଏବଂ ତାଙ୍କର ନିଜର ସମୟକାଳ । ସେ କାଳିନ୍ଦୀ ଚରଣଙ୍କ ତିରିଶ ଦଶକର କାହାଣୀରେ ସାଂପ୍ରତିକ ସମ୍ବେଦନଶୀଳତା ବିନିଯୋଗ କରିଛନ୍ତି ମାତ୍ର ।

ଭୁବନେଶ୍ୱରରେ ଫିଲ୍ମର ଏକ ବିଶେଷ ପ୍ରଦର୍ଶନ ହେବା ଅବସରରେ କିଛି ଉତ୍କଟ ବିଦ୍ୱାନ(hardcore academics) ଏହାକୁ ଧର୍ମଦ୍ରୋହୀ କାମ ବୋଲି କହିଥିଲେ କାରଣ ଏଥିରେ ମୂଳପାଠର କିଛି ପରିବର୍ତ୍ତନ ହୋଇଥିଲା । ଫିଲ୍ମଟି ମଧ୍ୟ ପ୍ରେକ୍ଷାଳୟରେ ବେଶି ଦିନ ଚାଲିଲା ନାହିଁ । ଛବିର ନିର୍ମାତା ବାବୁଲାଲ ଦୋଷୀ କଲିକତା ଯାଇ ମୃଣାଳଙ୍କୁ ଅନୁରୋଧ କଲେ ଯେ ସେ ଛବିର ଆରମ୍ଭ ଓ ମଝିରେ ସାମାନ୍ୟ ପରିବର୍ତ୍ତନ ଏବଂ ଫିଲ୍ମ ଶେଷରେ ଏକ ବିରାଟ ପରିବର୍ତ୍ତନ କରନ୍ତୁ । ମୃଣାଳ ତାଙ୍କୁ କହିଲେ ଯେ ସେ ବରଂ ଫିଲ୍ମରୁ ତାଙ୍କ ନାଁକୁ ବାହାର କରି ଦିଅନ୍ତୁ !

ମାଟିର ମଣିଷ ଫିଲ୍ମର ଏ ଭଳି ଦଶା ହୋଇଥିବାର କାରଣ ବୋଧହୁଏ ଯେ ଆମେମାନେ ବହିଟି ସହିତ ଅତି ଘନିଷ୍ଠ ଭାବେ ପରିଚିତ ଥିଲୁ । ଆମେ ଚାହୁଁଥିଲୁ ଚଳଚ୍ଚିତ୍ରଟି ମଧ୍ୟ ବହିଟି ଭଳି ବିଶ୍ୱବ୍ରହ୍ମାଣ୍ଡର ବର୍ଣ୍ଣନାରୁ ଆରମ୍ଭ ହୋଇଥାନ୍ତା, ସେଇ ସମୟକୁ ଦେଖାଇଥାନ୍ତା, ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟକୁ ନୁହେଁ, ଏବଂ ସେଥିରେ ବହିରେ ବର୍ଣ୍ଣିତ ସବୁ ଚରିତ୍ର ଓ ଘଟଣା ରୂପାୟିତ ହୋଇଥାନ୍ତେ ଠିକ କାଳିନ୍ଦୀ ଚରଣ ଲେଖିଥିବା ଭଳି । ଆମେ ହୁଏ ତ ଏ କଥା ମଧ୍ୟ ଚାହୁଁଥିଲୁ ଯେ ଚରିତ୍ରମାନେ ଦେଖାଯାଉଥାନ୍ତେ ଆମେ ପଢ଼ିଥିବା ବହିରେ ଗୋପାଳ କାନୁନ୍‌ଗୋ ଆଙ୍କିଥିବା ଚିତ୍ରମାନଙ୍କ ଭଳି । ଏପରି ଭାବିବା ବେଳେ ଆମେ ଭୁଲିଯାଉ ଯେ ବହି ଓ ଫିଲ୍ମ ସଂପୂର୍ଣ୍ଣ ଅଲଗା ଜିନିଷ ଏବଂ ଫିଲ୍ମ ଦେଖିବା ବେଳେ ଆମେ ଦର୍ଶକ ମାତ୍ର, ମୂଳ ବହିର ପାଠକ ନୁହଁ । ପାଠକ ଦର୍ଶକ ଦ୍ୱନ୍ଦ୍ୱ ସଂପର୍କରେ ଏ କଥା ଉଲ୍ଲେଖନୀୟ ଯେ ଏକ ସମୟରେ ଓଡ଼ିଆ ଓ ବଙ୍ଗଳାରେ ଫିଲ୍ମକୁ ବହି କୁହାଯାଉଥିଲା ।

ଫିଲ୍ମ ଓ ବହିକୁ ସଂପୂର୍ଣ୍ଣ ଅଲଗା ରଖିବାର ଏକ ଚୂଡ଼ାନ୍ତ ଉଦାହରଣ ହେଉଛି ଜଣେ ଅଭିନେତ୍ରୀଙ୍କର ବକ୍ତବ୍ୟ । ଅମୃତା ପ୍ରୀତମଙ୍କ ଉପନ୍ୟାସ ପିଂଜର ଉପରେ ଆଧାରିତ ଫିଲ୍ମରେ ଅଭିନୟ କରିବା ବେଳେ ଉର୍ମିଳା ମାତଣ୍ଡକର କହିଥିଲେ, ମୁଁ ଉପନ୍ୟାସଟି ପଢ଼ିଲି ନାହିଁ, କାରଣ ମୁଁ ଫିଲ୍ମ ସ୍କ୍ରିପ୍ଟ୍‌ର ନିକଟ ହେବାକୁ ଚାହୁଁ ଥିଲି ।

ଉପନ୍ୟାସରୁ ଫିଲ୍ମ ହେବା ଭଳି ଗଳ୍ପ ଉପନ୍ୟାସରୁ ନାଟକ ହେବା ମଧ୍ୟ ଏକ ଅନୁବାଦ ପ୍ରକ୍ରିୟା । ଓଡ଼ିଆରେ ବହିରୁ ନାଟକର ଅନେକ ସୁନ୍ଦର ଉଦାହରଣ ଅଛି, ଯଥା, ଗୋପାଳ ଛୋଟରାୟଙ୍କ ଦ୍ୱାରା **ପେଟେଣ୍ଟ ମେଡିସିନ**ର ନାଟ୍ୟରୂପ **ଶ୍ରୀମତୀ ସମାର୍ଜନୀ**, କିମ୍ବା ଅଜିତ ଦାସଙ୍କ ଦ୍ୱାରା ଫତୁରାନନ୍ଦଙ୍କ **ନାକଟା ଚିତ୍ରକର**ର ସଫଳ ମଂଚନ । ଏହି ରୂପାନ୍ତରମାନଙ୍କର ମୂଳ ବହି ସହିତ ସାଦୃଶ୍ୟ ବିଷୟରେ କୌଣସି ପ୍ରତିକ୍ରିୟା ଦେଖିବାକୁ ମିଳେ ନାହିଁ, ଯାହାର କାରଣ ହୋଇପାରେ ଓଡ଼ିଆରେ ନାଟକ ମଂଚନ ସମୀକ୍ଷାର ଅଭାବ । ତେବେ ଦର୍ଶକମାନଙ୍କର ସ୍ୱୀକୃତି ହିଁ ଏହି ଅନୁବାଦମାନଙ୍କର ପ୍ରଶଂସା ପତ୍ର ।

ଓଡ଼ିଆ ଉପନ୍ୟାସକୁ ଅନ୍ୟ ଭାଷାରେ ଅନୁବାଦ କରିବା ବେଳେ କିନ୍ତୁ ସମୀକ୍ଷାର ଅଭାବ ହୁଏ ନାହିଁ । ଉପନ୍ୟାସକୁ ଫିଲ୍ମ ବା ନାଟକ କଲା ବେଳେ ତାର କାଟ ଛାଟକୁ ବରଂ କୁଣ୍ଠାର ସହିତ ଗ୍ରହଣ କରାଯାଏ, କିନ୍ତୁ ସାହିତ୍ୟିକ ଅନୁବାଦକୁ ପବିତ୍ର ବୋଲି ମନେ କରାଯାଏ । ପାଠରୁ ସାମାନ୍ୟ ବିଚ୍ୟୁତିକୁ ମାଷ୍ଟରିଆ ସମାଲୋଚକମାନେ ସହ୍ୟ କରିପାରନ୍ତି ନାହିଁ । ଉପନ୍ୟାସର ଫିଲ୍ମ ରୂପ ଯେପରି ଏକ ସଂପୂର୍ଣ୍ଣ ଅଲଗା ଗୋଷ୍ଠୀ( ପାଠକ ନୁହେଁ ଦର୍ଶକ) ପାଇଁ ଉଦ୍ଦିଷ୍ଟ, ସେହି ଭଳି ଅନୁବାଦିତ ବହିଟି ମଧ୍ୟ ଅନ୍ୟ ଗୋଟିଏ ଗ୍ରାହକ(ଭିନ୍ନ ଭାଷାର ପାଠକ) ପାଇଁ ଉଦ୍ଦିଷ୍ଟ । ଅନୁବାଦକକୁ ସବୁବେଳେ ଏହି ଗ୍ରାହକର ଚାହିଦାକୁ ମନେ ରଖିବାକୁ ହେବ । ଗୋପୀନାଥ ମହାନ୍ତିଙ୍କ ପ୍ରସିଦ୍ଧ ଉପନ୍ୟାସ **ପରଜା**ର ବିକ୍ରମ ଦାସ କୃତ ଇଂରେଜୀ ଅନୁବାଦରେ ମୂଳ ବହିର ଅନେକ ଅଂଶକୁ କାଟି ଦିଆଯାଇଛି । ଅନୁବାଦ ତତ୍ତ୍ୱର ନିଷ୍ଠାବାଦୀମାନେ ଏ ବିଷୟରେ ଆପତ୍ତି ଉଠାଇ ପାରନ୍ତି, କିନ୍ତୁ ଏହା ଯେ ବହିଟିକୁ ଇଂରେଜୀ ପାଠକ ପାଇଁ ସାବଲୀଳ କରି ଦେଇଛି ଏଥିରେ ସନ୍ଦେହ ନାହିଁ ।

ସାହିତ୍ୟିକ ଅନୁବାଦର ଅନ୍ୟ ଏକ ଦିଗ ହେଲା ଯେ ମୂଳ ପାଠଟି ସବୁବେଳେ ସତେଜ ରହୁଥିବା ବେଳେ ଅନୁବାଦଟି କାଳକ୍ରମେ ପୁରୁଣା ହୋଇଯାଏ ଏବଂ ସେଥିପାଇଁ ଅନେକ ସମୟରେ କ୍ଲାସିକ ବହିମାନଙ୍କର ନୂଆ ସମୟୋପଯୋଗୀ ଅନୁବାଦ ଦରକାର ହୁଏ । ଏ ବିଷୟରେ **ଗୀତାଂଜଳି**ର ଅନୁବାଦକୁ ନିଆଯାଇପାରେ । ରବୀନ୍ଦ୍ରନାଥ ନିଜେ କରିଥିବା ଓ ୟେଟ୍‌ସଙ୍କ ଦ୍ୱାରା ସଂଶୋଧିତ ବହି ନୋବେଲ ପ୍ରାଇଜ ପାଇବା ପରେ ଗୀତାଂଜଳି ସବୁବେଳେ ଆଲୋଚନାରେ ଥିଲା । ସମସ୍ତେ ଏକମତ ଥିଲେ ଯେ ଅନୁବାଦଟି ଆଦୌ ଠିକ ଓ ଉପଯୁକ୍ତ ନ

ଥିଲା । ଏହାର ଏକ ନୂଆ  ଅନୁବାଦର ଆବଶ୍ୟକତା ଅନୁବାଦ କରି ଟ୍ୟାଗୋର ବିଶେଷଜ୍ଞ ରାଦିଚେ ନିକଟରେ ଗୀତାଂଜଳିର ଏକ ନୂଆ ଅନୁବାଦ ପ୍ରକାଶ କରିଛନ୍ତି । ମଜାର ବିଷୟ ଯେ ଏହି ଅନୁବାଦଟି ମଧ୍ୟ କାହାରି ସମର୍ଥନ ପାଇ ନାହିଁ । ରବୀନ୍ଦ୍ରନାଥଙ୍କ ନିଜର ଅନୁବାଦ, ଯାହା ବର୍ତ୍ତମାନ କ୍ଲାସିକ ସ୍ତରକୁ ଉତ୍ତୀର୍ଣ୍ଣ, ହିଁ ପାଠକମାନେ ଆଦରି ନେଇଥିବା ଗୀତାଂଜଳି ।

ଅନୁବାଦ ଯେ ମୂଳ ଲେଖାଠାରେ ସଂପୂର୍ଣ୍ଣ ଭାବେ ବିଶ୍ୱସ୍ତ ରହିବା ଉଚିତ, ଏ ଭଳି ଚିନ୍ତାଧାରା ଆସିଥିଲା ଧାର୍ମିକ ଗ୍ରନ୍ଥର ଅନୁବାଦ ପ୍ରସଙ୍ଗରେ । ଧର୍ମଗ୍ରନ୍ଥ ଯେହେତୁ ଈଶ୍ୱର ବା ଦୈବବାଣୀ, ଏହାର ମର୍ଯ୍ୟାଦାକୁ କ୍ଷୁଣ୍ଣ କରାଯାଇ ନପାରେ । ସେଥିପାଇଁ ପ୍ରାର୍ଥନା ଓ ପୂଜାପାଠରେ ଅନୁବାଦ ଗ୍ରାହ୍ୟ ହୁଏ ନାହିଁ । ମୁସଲମାନମାନେ ସେମାନଙ୍କ ପ୍ରାର୍ଥନା କେବଳ ଆରବିକ ଭାଷାରେ କରିଥାନ୍ତି ଏବଂ ହିନ୍ଦୁମାନଙ୍କର ପୂଜାପାଠ କେବଳ ଦେବଭାଷା ସଂସ୍କୃତରେ ହୋଇଥାଏ ବ୍ରାହ୍ମଣମାନଙ୍କ ଦ୍ୱାରା । ଏହାର ମୂଳରେ ଯୁକ୍ତି ହେଲା ଯେ ଦେବତାଙ୍କ ମୁଖନିଃସୃତ ମହାନ ବାକ୍ୟର ପ୍ରକୃତ ଅନୁବାଦ ଅସମ୍ଭବ । ଅବଶ୍ୟ ୧୬୧୧ରେ ହିବ୍ରୁ ଓ ଗ୍ରୀକ୍‌ରୁ ଅନୁବାଦିତ କିଙ୍ଗ୍ ଜେମ୍‌ସ ବାଇବେଲ ବହିଟି ନିଜେ ବର୍ତ୍ତମାନ ଦେବ ଭାଷାର ମହତ୍ତ୍ୱ ଲାଭ କରି ସାରିଛି । ଏଇଭଳି ଭାବରେ ଧର୍ମକୁ ସାଧାରଣ ଲୋକଙ୍କ ବୁଝିବାର ବାହାରେ ରଖିବାରେ ଲାଭ ହୁଏ ପଣ୍ଡା ପୁରୋହିତ ମୁଲ୍ଲା ବିଶପ ଭଳି ମଧ୍ୟସ୍ଥି ବା ଦଲାଲମାନଙ୍କର । ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୬୧ରେ ବାଇବଲର ଏକ ଆଧୁନିକ ଇଂରେଜୀ ଅନୁବାଦ ହୋଇଛି । ୨୦୦୫ରେ ନବଯୁବକଙ୍କ ପାଇଁ ଅଷ୍ଟ୍ରେଲିଆର ବାଇବଲ ସୋସାଇଟି ଗୋଟିଏ ଅନୁବାଦ ପ୍ରକାଶ କରିଛନ୍ତି ଯେଉଁଥିରେ ଏପରି ବାକ୍ୟ ଅଛି: In da Bginnin God cre8d da havens & da earth.

ଅନୁବାଦ ପଢ଼ିବା ବେଳେ ଆମେ ଭୁଲିଯିବା ଉଚିତ ମୂଳ ଲେଖାଟି କେଉଁ ଭାଷାର ବା ଅନୁବାଦଟି ମୂଳଲେଖାର କେତେ ଅବିକଳ, ସଠିକ ଓ ବିଶ୍ୱସ୍ତ । ଆମେ ଯେତେବେଳେ ଟଲଷ୍ଟୟ, ନେରୁଦା ବା ମୋପାସାଁଙ୍କୁ ଇଂରେଜୀରେ ପଢୁ, ସେତେବେଳେ ତାର ମୂଳ ଭାଷା କଥା ଆମ ମନକୁ ଆସି ନଥାଏ । ଫିଟ୍‌ଜେରାଲ୍‌ଡଙ୍କ ଓମର ଖୈୟାମର ଅବିଶ୍ୱସ୍ତ ଅନୁବାଦକୁ ଆମେ ସଠିକ ମାନି ନେଉ । ଜଗନ୍ନାଥ ଦାସଙ୍କ ଭାଗବତ ପଢ଼ିଲା ବେଳେ ଆମେ ଭୁଲିଯାଉ ଯେ ଏହା ଏକ ମୂଳ ସଂସ୍କୃତ

ଲେଖାର ପୁନର୍ଲେଖନ । ସାରଳା ଦାସଙ୍କ ମହାଭାରତରେ ବ୍ୟାସଙ୍କୁ ଖୋଜିବା ଯେତିକି ନିରର୍ଥକ ସେତିକି ହାସ୍ୟାସ୍ପଦ । ଏହା ହିଁ ଏହି ଅନୁବାଦମାନଙ୍କର ସଫଳତା ଓ ସାର୍ଥକତା ।

ଆଉ ଗୋଟିଏ ସମସ୍ୟାମୂଳକ ଅନୁବାଦ ହେଲା କବିତାକୁ ସ୍ୱର ଦେବା ବା ଗୀତରେ ସଂଗୀତର ସଂଯୋଜନା କରିବା । ଏ ବିଷୟରେ ସବୁଠାରୁ ବେଶି ସଚେତନ ଥିଲେ ରବୀନ୍ଦ୍ରନାଥ ଠାକୁର । ସେ ଚାହୁଁଥିଲେ ଯେ ତାଙ୍କର ଗୀତରେ ସେ ଯେଉଁଭଳି ସ୍ୱର ଦେଇଛନ୍ତି, ଗାୟକଗାୟିକାମାନେ ଠିକ ସେହି ଭଳି ଗାଇବେ । ତାଙ୍କର ମୃତ୍ୟୁ ପରେ ତାଙ୍କର ରଚନା ଓ ସଂଗୀତର ସ୍ୱତ୍ୱ ବା କପିରାଇଟ ବିଶ୍ୱଭାରତୀ ହାତକୁ ଆସିଲା ଏବଂ ଗାୟକ ସଂଗୀତଜ୍ଞମାନଙ୍କୁ ରବୀନ୍ଦ୍ର ସଂଗୀତର ବ୍ୟବହାର ପାଇଁ ସେମାନଙ୍କର ଅନୁମତି ନେବାକୁ ପଡ଼ିଲା । ବିଶ୍ୱଭାରତୀ ଗାୟକମାନଙ୍କୁ ରବୀନ୍ଦ୍ର ଗୀତି ନିଜ ଶୈଳୀରେ ଗାଇବାକୁ ଦେଲେ ନାହିଁ । ଏପରିକି ୧୯୬୪ରେ ପ୍ରସିଦ୍ଧ ଗାୟକ ଦେବବ୍ରତ ବିଶ୍ୱାସଙ୍କର ରବୀନ୍ଦ୍ର ଗୀତ ଗାଇବାର ଶୈଳୀକୁ ବିଶ୍ୱଭାରତୀ ପକ୍ଷରୁ ବିରୋଧ କରାଯାଇଥିଲା । ରବୀନ୍ଦ୍ରଙ୍କ ମୃତ୍ୟୁର ପଚାଶ ବର୍ଷ ପରେ ୧୯୯୧ରେ ତାଙ୍କ ଲେଖା ଓ ଗୀତ କପିରାଇଟ ମୁକ୍ତ ହୋଇଯିବାର ଥିଲା । କିନ୍ତୁ ଏହି କପିରାଇଟରୁ ବିଶ୍ୱଭାରତୀ ବେଶ ଲାଭ କରୁଥିବାରୁ ସେମାନଙ୍କ ଅନୁରୋଧରେ ଏହାର ଅବଧି ଆହୁରି ଦଶ ବର୍ଷ ବଢ଼ାଇ ଦିଆଗଲା ।

ଏ ବିଷୟରେ ଉଲ୍ଲେଖଯୋଗ୍ୟ ଯେ ଗାନ୍ଧୀଜୀ ନିଜ ଲେଖାର କପି ରାଇଟ ବିପକ୍ଷରେ ଥିଲେ ଏବଂ **ହିନ୍ଦ ସ୍ୱରାଜ** ବହିର ଇଂରେଜୀ ସଂସ୍କରଣରେ ଲେଖି ଦେଇଥିଲେ, ନୋ ରାଇଟ୍‌ସ୍ ରିଜର୍ଭଡ । ତାଙ୍କର ମୃତ୍ୟୁ ପରେ ତାଙ୍କ ଲେଖାର କପି ରାଇଟ ନବଜୀବନ ଟ୍ରଷ୍ଟ ହାତରେ ରହିଲା; ୨୦୦୮ରେ ଏହି କପି ରାଇଟ ଶେଷ ହେବାରେ ସେମାନେ ଏହାକୁ ବଢ଼ାଇବାକୁ ଚାହିଁଲେ ନାହିଁ ।

୨୦୦୧ରେ ବିଶ୍ୱଭାରତୀ ହାତରୁ ରବୀନ୍ଦ୍ର ସଂଗୀତର କପିରାଇଟ ଚାଲିଯିବା ପରେ ତାଙ୍କର ଗୀତର ରକ୍, ସୋଲ୍‌ଫୁଲ ଗିଟାର ଇତ୍ୟାଦି ରୂପାନ୍ତର ଦେଖିବାକୁ ମିଳିଲା । ନିକଟରେ ଗୋଟିଏ ଚଳଚ୍ଚିତ୍ରରେ ରବୀନ୍ଦ୍ରନାଥଙ୍କର ଗୀତ 'ପାଗ୍‌ଲା ହାୱାର ବାଦଲ ଦିନେ'ର ଏକ ଡିକ୍ ଚିକ୍ ସଂସ୍କରଣ ଶୁଣିବାକୁ ମିଳିଲା ଯାହାର ଆରମ୍ଭ ହୋଇଥିଲା ଉ-ଲା-ଲା ରୁ । ରବୀନ୍ଦ୍ର ସଂଗୀତର ରୂଢ଼ିବାଦୀ ସମର୍ଥକଙ୍କ ପକ୍ଷରୁ ନିନ୍ଦା ପାଇବା ସତ୍ତ୍ୱେ ଗୀତଟି ସର୍ବସାଧାରଣରେ ଆଦୃତ ହୋଇଥିଲା, ଯଦିଓ ଚଳଚ୍ଚିତ୍ରଟି ଅସଫଳ ଥିଲା ।

ଏହି ପରିପ୍ରେକ୍ଷୀରେ ବର୍ତ୍ତମାନ ଆସିବା ରଂଗବତୀ ପ୍ରସଂଗକୁ । ଚାଳିଶ ବର୍ଷ ତଳେ ମିତ୍ରଭାନୁ ଗୌନ୍ତିଆଙ୍କ ଲିଖିତ ଗୀତଟି ପ୍ରଭୁଦତ୍ତ ପ୍ରଧାନଙ୍କ ସ୍ୱର ସଂଯୋଜନାରେ କୃଷ୍ଣା ପଟେଲ ଓ ଜିତେନ୍ଦ୍ର ହରିପାଲଙ୍କ କଣ୍ଠରେ ପ୍ରସାରିତ ହୋଇଥିଲା । ଅତି ଅଳ୍ପ ସମୟ ଭିତରେ ପ୍ରଭୂତ ଲୋକପ୍ରିୟତା ପାଇ ଏହା ଦେଶ ବିଦେଶରେ ପହଞ୍ଚି ସେଠାରେ ମଧ୍ୟ ଆଦୃତ ହୋଇଥିଲା । ଏହାର ଅନେକ ମିଶ୍ରିତ ବା ରିମିକ୍ସ ସଂସ୍କରଣ ମଧ୍ୟ ବଜାରକୁ ଆସିଥିଲା, ଯଥା ୨୦୧୦ରେ ୟୁ ଟ୍ୟୁବ୍‌ରେ ପ୍ରସାରିତ ଏହାର ତେଲୁଗୁ ରୂପ । ଏହାର ହିନ୍ଦୀ ରୂପାନ୍ତର ବ୍ୟବହାର ହୋଇଛି ନୀଳମାଧବ ପଣ୍ଡାଙ୍କ ଫିଲ୍ମରେ ।

ଗତ ମାସରୁ କିନ୍ତୁ ହଠାତ ବିତର୍କ ଓ ବାଦବିବାଦ ଉପୁଜିଛି ଏମ୍‌ଟିଭି କୋକ୍ ଷ୍ଟୁଡିଓରୁ ବାହାରିଥିବା ରିମିକ୍ସି ଯାହାକୁ ଗାଇଛନ୍ତି ଜଣାଶୁଣା ଗାୟକ ଗାୟିକା ସୋନା ମହାପାତ୍ର, ରାମ ସଂପତ ଓ ଋତୁରାଜ ମହାନ୍ତି । ଏହାର ଗାଇବା ଶୈଳୀ ବ୍ୟତୀତ ଅନ୍ୟ ଏକ ସମାଲୋଚନା ହୋଇଛି ଗୀତର ଦ୍ୱିତୀୟ ଭାଗରେ ତାମିଲ ର୍‍ୟାପ୍ ଓ ବନ୍ଦେ ଉତ୍କଳ ଜନନୀର ସଂଯୋଗ ।

ଅନୁବାଦର ବ୍ୟବସାୟିକ, ଆର୍ଥିକ ଓ ଆଇନଗତ ଦିଗ ମଧ୍ୟ ରହିଛି : ମୂଳ କୃତିର ଅନୁବାଦ ପାଇଁ ଅନୁମତି ନେବା, ତା ପାଇଁ ମୂଲ୍ୟ ଦେବା, ଅନୁବାଦିତ ବିଷୟର ବ୍ୟବହାର ଓ ପ୍ରୟୋଗ ବିଷୟରେ ବୁଝାମଣା ଇତ୍ୟାଦି । ଏହି ଲେଖାରେ କେବଳ ନାନ୍ଦନିକ ଦୃଷ୍ଟିରୁ ଆଲୋଚନା କରାଯାଉଛି କାରଣ ଆଇନ, ଟଙ୍କା ପଇସା ଇତ୍ୟାଦି କେବଳ ମୂଳ ସ୍ରଷ୍ଟା ଓ ଅନୁବାଦକଙ୍କର ଆପୋସ ସମସ୍ୟା, ଏଥିରେ ପାଠକ ଦର୍ଶକ ଶ୍ରୋତାଙ୍କର କୌଣସି ସଂପର୍କ ନାହିଁ ଏବଂ ସେମାନେ ଏଥିରେ ଆଗ୍ରହୀ ନୁହନ୍ତି ।

ରଙ୍ଗବତୀର ନୂଆ ରୂପକୁ ଦର୍ଶକ ଓ ଶ୍ରୋତା ଆନନ୍ଦର ସହିତ ଗ୍ରହଣ କରିଛନ୍ତି, ଏବଂ ଏହା ଦ୍ୱାରା ଗୋଟିଏ ନୂଆ ପୀଢ଼ୀ ଅନୁପ୍ରାଣିତ ହୋଇଛି । ଏହି ଅନୁବାଦ ଗୋଟିଏ ଆଞ୍ଚଳିକ ଭାଷାର ଗୀତକୁ ଆନ୍ତର୍ଜାତିକ ସ୍ତରକୁ ଏବଂ ଏକ ବୃହତ୍ତର ଶ୍ରୋତୃମଣ୍ଡଳୀ ପାଖକୁ ନେଇଯାଇଛି ।

ତେବେ ସମାଲୋଚନା କରାଯାଉଛି ଯେ ଏହି ରିମିକ୍ସ ମୂଳ ଗୀତକୁ ବିରୂପ କରୁଛି ଓ ଓଡ଼ିଆ ଜାତୀୟ ସଂଗୀତକୁ ଅବମାନନା କରୁଛି । କେବଳ କଳାତ୍ମକ ଓ ଗ୍ରହଣୀୟତା ଦୃଷ୍ଟିରୁ ଦେଖିଲେ କିନ୍ତୁ ଏହା ଏକ ଅତି ସଫଳ ଅନୁବାଦ ଓ

ଆଧୁନିକୀକରଣ, ଏବଂ ଏହା ଲୋକପ୍ରିୟ ହୋଇଥିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏହି ଅନୁବାଦକୁ ସ୍ୱାଗତ କରିବା କଥା ।

କୁହାଯାଇଥାଏ ଯେ ଅନୁକରଣ କରିବା ହେଉଛି ତୋଷାମଦ । ତାକୁ ବିସ୍ତାର କରି କୁହାଯାଇପାରେ ଯେ ଅନୁବାଦ ହେଉଛି ମୂଳ ରଚନା ପ୍ରତି ଶ୍ରଦ୍ଧାଂଜଳି । ଏଠାରେ ସାହିତ୍ୟିକ ଶୈଳୀ ପ୍ୟାରୋଡି ବା ଲାଳିକାକୁ ଅନୁବାଦ ବୋଲି ଧରି ତାର ଉଦାହରଣ ମଧ୍ୟ ଦିଆ ଯାଇପାରେ । ରାଧାନାଥ ତାଙ୍କର ଚିଲିକାରେ କୀଟ୍‌ସ୍‌ଙ୍କର ପ୍ରସିଦ୍ଧ ଉକ୍ତି 'ଏ ଥିଙ୍ଗ ଅଫ ବିଉଟି'ର ମୁକ୍ତ ଅନୁବାଦ କରିଥିଲେ, ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ । ଲାଳିକାକାର ଲେଖିଲେ, ମାଂସରେ ତୃପ୍ତିର ଅବସାଦ ନାହିଁ, ଯେତେ ଖାଉଥିଲେ ଆଉ ମାଗୁଥାଇ । ଏହା କୀଟ୍‌ସ୍‌ଙ୍କର ଅବମାନନା  ବା ରାଧାନାଥଙ୍କର ବିକୃତୀକରଣ ନୁହେଁ । ଏହା ହେଉଛି ପ୍ରସିଦ୍ଧ କବିତାର ପ୍ରସିଦ୍ଧ ଧାଡ଼ିକୁ ସମ୍ମାନ ଜଣାଇବା । ସେହିପରି ଫକୀରମୋହନଙ୍କର 'ଯା ଦେବୀ ବୃକ୍ଷ ମୂଳେଷୁ ଶିଳାରୂପେଣ ସଂସ୍ଥିତା' କୌଣସି ରୂପେ ଦେବୀ ଦୁର୍ଗାଙ୍କର ବା ମୂଳ ସ୍ତୁତିର ଅପମାନ ନୁହେଁ ।

ଆଲୋଚନା ଓ ମୂଲ୍ୟାୟନ କରିବା ବେଳେ ପ୍ରତ୍ୟେକ ଅନୁବାଦକୁ ଏହି ବ୍ୟାପକ ଦୃଷ୍ଟିରୁ ଦେଖିବା ଉଚିତ ।

*ଅଗଷ୍ଟ ୨୦୧୫*

# ନବେ ପ୍ରତିଶତ ଖଟଣି

କୁହାଯାଇଥାଏ ଯେ ପ୍ରତିଭା ହେଉଛି ଦଶ ପ୍ରତିଶତ ପ୍ରେରଣା ଆଉ ନବେ ପ୍ରତିଶତ ଖଟଣି । ଆମର ଲେଖକମାନେ କିନ୍ତୁ ଏ କଥା ମାନିବାକୁ ନାରାଜ । ଏ ଭଳି ଗୋଟିଏ ଧାରଣା ମଧ୍ୟ ସୃଷ୍ଟି କରାଯାଇଛି ଯେ ସାହିତ୍ୟର ଏକ ଦୈବୀ ଉତ୍ସ ଅଛି ଏବଂ ଲେଖକ ତାର ନିମିତ୍ତ ବା ଲିପିକାର ମାତ୍ର । ସାରଳା ଦାସଙ୍କ ଠାରୁ ଆରମ୍ଭ କରି(ତୁହି ଯାହା କହିଦେଉ ମୁହିଁ ତା ଲେଖଇ) ଉପେନ୍ଦ୍ର ଭଂଜ(ତାରକ ମନ୍ତ୍ର ପରସାଦେ, ମୋହର କବିପଣ ଉଦେ), ଯଦୁମଣି(ହୟଗ୍ରୀବ ମହାପ୍ରଭୁ ପ୍ରତାପେ) ଓ ନିକଟରେ ଗୋପୀନାଥ ମହାନ୍ତି( ଅଶରୀରୀ ବାଣୀ କୃପା କରି ଜନ୍ମ ହେଉଛନ୍ତି; ମୁଁ ତାଙ୍କ ମାଧ୍ୟମ, ସ୍ରୋତସ୍ୱତୀ ୩), ରମାକାନ୍ତ ରଥ ( ମୁଁ ଷ୍ଟେନୋଗ୍ରାଫର ମାତ୍ର)ଙ୍କ ପର୍ଯ୍ୟନ୍ତ । ଆଗ କାଳେ ଏ ଭଳି ଦାବୀର ଏକ ସୁଫଳ ଥିଲା ଯେ ଲେଖାଟି ଦୈବୀକୃତ ହୋଇଥିବାରୁ ଏହାକୁ ସମାଲୋଚନା ସାପେକ୍ଷ ମନେ କରାଯାଉ ନ ଥିଲା ।

ପାଶ୍ଚାତ୍ୟ ସାହିତ୍ୟରେ ମଧ୍ୟ ଏପରି ଉଦାହରଣ ଅଛି । ‘ଅଙ୍କଲ ଟମ୍‌ସ କେବିନ’ର ଲେଖିକା କହୁଥିଲେ, ଏହାକୁ ସ୍ୱୟଂ ଲର୍ଡ ଲେଖିଛନ୍ତି; ମୁଁ ତାଙ୍କ ହାତରେ ସାଧନ ମାତ୍ର ଥିଲି । ଅବଶ୍ୟ ସେ ଏ କଥା କହିଥିଲେ ଜୀବନର ଶେଷ ଭାଗରେ, ଉପନ୍ୟାସଟି ଅତି ପ୍ରସିଦ୍ଧି ଲାଭ କରିବା ପରେ ।

ଏହାର ଏକ ସ୍ପଷ୍ଟୀକରଣ ଦିଆଯାଇପାରେ ଯେ ଲେଖକମାନେ ଯାହାକୁ ଦୈବୀ, ଅଶରୀରୀ ବାଣୀ, କୃପା, ଶ୍ରୁତଲିଖନ ବୋଲି କହୁଛନ୍ତି, ତାହା ଏକ ଆଳଙ୍କାରିକ ପ୍ରୟୋଗ ମାତ୍ର; ସେମାନେ ଏହା ଦ୍ୱାରା ପ୍ରେରଣାକୁ ହିଁ ବୁଝାଉଛନ୍ତି । ଏ ବ୍ୟାଖ୍ୟା ମଧ୍ୟ ସମସ୍ୟାଜନକ, କାରଣ ଏଥିରୁ ନିଷ୍କର୍ଷ ବାହାରିବ ଯେ ପ୍ରେରଣା ବଳରେ ହିଁ ଲେଖକ ଲେଖି ଚାଲିବ, ଏଥିରେ ସଂପାଦନା, ସଂଶୋଧନ, ପରିବର୍ତ୍ତନ, ବିବର୍ତ୍ତନ, ପ୍ରଗତି ବା ପୁନର୍ଲେଖନର ଆବଶ୍ୟକତା ନାହିଁ ।

ସେହି ଭଳି ନିକଟ ଅତୀତରେ ପ୍ରକାଶିତ ଅରହାନ୍ ପାମୁକଙ୍କ ଉପନ୍ୟାସ 'ସ୍ନୋ'ରେ କବି-ନାୟକ କହୁଛି ଯେ କବିତା ତା ପାଖକୁ ଆସେ; ସେ କେବଳ ଗୋଟିଏ ମାଧ୍ୟମ ବା ଲିପିକାର ମାତ୍ର । ଏହା ପଢ଼ି ମୋର ବ୍ୟକ୍ତିଗତ ପ୍ରତିକ୍ରିୟା ହୋଇଥିଲା, ମୁଁ ଯଦି ଜାଣି ପାରନ୍ତି କବିତା କେଉଁଠାରୁ ଆସେ, ତା ହେଲେ ମୁଁ କବିତା ପାଇଁ ଅପେକ୍ଷା ନ କରି ନିଜେ ତା ପାଖକୁ ଯିବା ପାଇଁ ଚେଷ୍ଟା କରିଥାନ୍ତି !

ଓଡ଼ିଆ ପତ୍ରପତ୍ରିକାରେ 'ମୁଁ କାହିଁକି ଲେଖେ' ଗୋଟିଏ ବହୁ ପ୍ରସାରିତ ସ୍ତମ୍ଭ । ତଥାକଥିତ ପ୍ରତିଷ୍ଠିତ ଲେଖକଙ୍କଠାରୁ ଆରମ୍ଭ କରି ଚାରିଟି ପଦ୍ୟ ଲେଖିଥିବା କବି ଏଥିରେ ଅତି ଆଗ୍ରହରେ ଭାଗ ନିଅନ୍ତି ଏବଂ ଅତି ବିସ୍ତାରରେ ଏ ବିଷୟରେ ବାଚାଳତା କରିଥାନ୍ତି । କେହି କିନ୍ତୁ ସେମାନଙ୍କୁ 'ମୁଁ କିପରି ଲେଖେ' ସେ ବିଷୟରେ ଜଣାଇବାକୁ କହନ୍ତି ନାହିଁ । ଏହି ପ୍ରଶ୍ନଟି ବୋଧହୁଏ ନୂଆ ଲେଖକମାନଙ୍କ ପାଇଁ ଅଧିକ ଉପାଦେୟ ଓ ଉପକାରୀ ହୁଅନ୍ତା ।

ମତେ ଯଦି କେହି ଏ ପ୍ରଶ୍ନଟି କରେ ମୋ ପାଇଁ ତାର ସହଜ ଓ ସଂକ୍ଷିପ୍ତ ଉତ୍ତର ହେବ, ଅତି କଷ୍ଟରେ । ତାର କାରଣ ଲେଖାଟିଏ ଲେଖିବା ପାଇଁ ମତେ ବାରମ୍ବାର ବିଭିନ୍ନ ଅଭିଧାନ ଓ ସମାର୍ଥ ଶବ୍ଦକୋଷ ଦେଖିବାକୁ ପଡ଼େ । ଅନେକ କଟା କଟି ଅଦଳ ବଦଳ ପୁନର୍ଲେଖନ କରି ତାକୁ କିଛି ଦିନ ବନ୍ଦ କରି ରଖିଦିଏ; ପୁଣି ଥରେ ତାକୁ ଖୋଲି ପୁଣି ସେହି ପ୍ରକ୍ରିୟା ଦେଇ ଯାଏ । ଯେତେବେଳେ ମନେ ହୁଏ ଯେ ବହୁତ କଟାକଟି ହୋଇଗଲା ଓ ଲେଖାଟି ଉପରେ ଆଉ ସମୟ ଦେବା ଉଚିତ ନୁହେଁ, ମୁଁ ପରବର୍ତ୍ତୀ ଦୁସ୍ତର କାମଟିରେ ହାତ ଦିଏ । ସେହି କାଠିକର ପାଠଟି ହେଲା ଶେଷ ହୋଇଥିବା ଲେଖାଟିକୁ ପ୍ରେସବାଲା ପଢ଼ି ପାରିଲା ଭଳି ଗୋଲ ଗୋଲ ଅକ୍ଷରରେ ଲେଖିବା । ମୁଁ ହିସାବ କରିଛି ଯେ ଏ କାମରେ ପ୍ରତିଟି ଏ-୪ ସାଇଜ ପୃଷ୍ଠା ପୂରଣ କରିବା ପାଇଁ ମତେ ପ୍ରାୟ ପଚିଶ ମିନିଟ ସମୟ ଲାଗିଥାଏ ।

କିଛି ଇଂରେଜ ଲେଖକ ହାତରେ ନ ଲେଖି ସିଧାସଳଖ ଟାଇପରାଇଟରରେ ଲେଖୁଥିଲେ । ବର୍ତ୍ତମାନ କଂପ୍ୟୁଟରରେ ଲେଖିବା ଓ ଲେଖାକୁ ସଂଶୋଧନ କରିବା ସହଜ ଓ ସୁବିଧାଜନକ ହୋଇଗଲାଣି । ମୋ ଭଳି କିଛି ଲେଖକ କିନ୍ତୁ ଏ ପର୍ଯ୍ୟନ୍ତ ହାତରେ ଲେଖିବା ଓ ତାକୁ ଉତାରିବା କାମ ଜାରି ରଖିଛନ୍ତି । ଏ ପ୍ରକ୍ରିୟା ଅନେକ ଦିନ ହେଲା ଚାଲି ଆସିଛି । ଯେତେବେଳେ ଆମ ଓଡ଼ିଶାରେ ତାଳପତ୍ର ଉପରେ

ଲେଖା ହେଉଥିଲା, ବିଶେଷରେ କରଣ ସଂପ୍ରଦାୟର ଲୋକ ପୋଥି ଉତାରିବା କାମରେ ନିଯୁକ୍ତ ହେଉଥିଲେ । ସେତେବେଳର ଅନେକ ପୋଥିରେ ନକଲନବିସ ଏ ଭଳି ପୁଷ୍ପିକା ଲେଖୁଥିଲେ :

ଭଗ୍ନପୃଷ୍ଠ କଟୀଗ୍ରୀବା ତୁଲ୍ୟ ଦୃଷ୍ଟିରଧୋମୁଖମ୍
ଦୁଃଖେନ ଲିଖିତ ଗ୍ରନ୍ଥ ପୁତ୍ରବତ ପରିପାଳୟେତ୍ ।

ମୁଁ ନିଜେ ଏହାର ଭୁକ୍ତଭୋଗୀ । ୧୯୯୦-୯୧ରେ ମୋର ଯେଉଁ ସ୍ଲିପ୍‌ଡ୍ ଡିସ୍କ ହୋଇ ତାର ଅପରେଶନ ଦରକାର ହୋଇଥିଲା, ତାହା 'ଦେଶକାଳପାତ୍ର' ପାଇଁ ଦୀର୍ଘ ସମୟ ଟେବୁଲରେ ବସି ପଢ଼ିବା, ଲେଖିବା ଓ ଉତାରିବାର ସିଧାସଳଖ ଫଳ ଥିଲା । ଏହା ପରେ କିଏ ଦାବୀ କରିବ ଯେ କେବଳ ପ୍ରେରଣାରୁ ସାହିତ୍ୟ ଜନ୍ମ ନିଏ ?

ଆମର ଲେଖକମାନେ କି ପ୍ରକାର କଷ୍ଟ ଦେଇ ସେମାନଙ୍କର ସାହିତ୍ୟ ସୃଷ୍ଟି କରନ୍ତି ସେ ବିଷୟରେ ଆମେ ଜାଣୁ ନା । କିନ୍ତୁ ପାଶ୍ଚାତ୍ୟ ଲେଖକମାନଙ୍କର ଲେଖନ ପ୍ରକ୍ରିୟା ବିଷୟରେ ଅନେକ ତଥ୍ୟ ଉପଲବ୍ଧ । ସେଥିରୁ ଆମେ ଜାଣୁ ଯେ ହେମିଙ୍ଗୱେ ତାଙ୍କ **ଏ ଫେୟାରୱେଲ ଟୁ ଆର୍ମସ୍‌ର** ଉପସଂହାରକୁ ୩୯ ଥର ବଦଳାଇଥିଲେ ଏବଂ ପ୍ରୁଫ୍ ଦେଖିବା ବେଳେ ଆହୁରି ୩୦ ଥର ସଂଶୋଧନ କରିବା ପରେ କହିଥିଲେ, ଶେଷରେ ମୁଁ ଏହାକୁ ଠିକ ବୋଲି ମନେ କଲି । ଟଲ୍‌ଷ୍ଟୟ ତାଙ୍କର ଉପନ୍ୟାସ **ୱାର ଆଣ୍ଡ ପୀସ୍‌କୁ** ସାତଥର ବଦଳାଇ ଥିଲେ ।

କବି ୟେଟସ୍ ତାଙ୍କ **ଏ ସେକଣ୍ଡ କମିଙ୍ଗ** କବିତାର ଶହେଟି ଚିଠା କରିଥିଲେ । ତାଙ୍କର କବିତାମାନଙ୍କର ବିଭିନ୍ନ ଚିଠା ମିଳୁଥିବାରୁ ସମସ୍ୟା ହୁଏ କେଉଁ ଚିଠାରୁ ତାଙ୍କ କବିତାର ଆଲୋଚନା କରାଯିବ । ସେହିପରି ରବୀନ୍ଦ୍ରନାଥ ଠାକୁର ନିଜ ଲେଖାର ବାରମ୍ବାର ଅଦଳ ବଦଳ କରୁଥିଲେ; ୧୯୨୩ରେ ପ୍ରକାଶିତ **ରକ୍ତକରବୀର** ଭିନ୍ନ ଭିନ୍ନ ନାଁରେ- ଯଥା ନନ୍ଦିନୀ, ଯକ୍ଷପୁରୀ ଇତ୍ୟାଦି - ସେ ଦଶଟି ଖସଡ଼ା ତିଆରି କରିଥିଲେ ।

ସଂଶୋଧନ ଓ ସଂପାଦନର ଗୋଟିଏ ବିପରୀତ ଦିଗ ମଧ୍ୟ ଅଛି । ଜଣେ ଚାହିଁଲେ ନିଜର କବିତାକୁ ବଦଳାଇ ଚାଲିଥିବ, ଯାହାର ଶେଷ ନାହିଁ । କୌଣସି ସମୟରେ ତାକୁ ଶେଷ କରି କବିକୁ ନୂଆ କବିତା ପାଖକୁ ଯିବାକୁ ହେବ, ନ ହେଲେ ତାର ସମଗ୍ର ସୃଜନ ମାତ୍ର ଗୋଟିଏ କବିତାରେ ସୀମିତ ରହିଯିବ ।

ସଂପାଦନ ଓ ପୁନର୍ଲେଖନ ପାଇଁ କେତେ ସମୟ ଦେବ, ତା ମଧ୍ୟ ଲେଖକଙ୍କୁ ଠିକ କରିବାକୁ ପଡ଼ିବ । ବଙ୍ଗଳା କବି ସୁଧୀନ୍ଦ୍ରନାଥ ଥରେ କହିଥିଲେ ସେ ଗୋଟିଏ କବିତା ଲେଖିବା ବେଳେ 'ଉଡ଼େ ଚଲେ ଗେଛେ' ଶବ୍ଦବନ୍ଧକୁ 'ଉଡ୍‌ଡୀନ'ରେ ବଦଳାଇବାକୁ ତାଙ୍କୁ ସାତ ଦିନ ଲାଗିଥିଲା । ଏ କଥା ଶୁଣି ରବୀନ୍ଦ୍ରନାଥ କହିଥିଲେ, ଏ ଭଳି ପ୍ରବଣତା ଚାଲିଥିଲେ ତାଙ୍କର କବିତା ଲେଖା ହିଁ ବନ୍ଦ ହୋଇଯିବ !

ଆମ ଓଡ଼ିଶାରେ ଚଳଣି ଅଛି ଯେ ଲେଖକମାନେ ପୂଜା ପୂର୍ବରୁ ତତ୍ପର ହୋଇଯାନ୍ତି । ପୂଜା ସଂଖ୍ୟାର ସଂପାଦକମାନେ ଲେଖକମାନଙ୍କ ପଛରେ ପଡ଼ିଯାନ୍ତି ଏବଂ ଲେଖକ ଲେଖା ପଠାଇବା ବେଳେ ସଂପାଦକଙ୍କୁ ଲେଖନ୍ତି, ଏଇ ମାତ୍ର ଗଳ୍ପ ବା କବିତାଟି ଶେଷ କରି ତାକୁ ଡାକଘରେ ପକାଇବାକୁ ଯାଉଛି । ଏ କଥାର ଅର୍ଥ ହେଲା ଯେ ସଂଶୋଧନ କରିବାକୁ ସମୟ ପାଇ ନଥିବାରୁ ଲେଖାଟି କଞ୍ଚା ।

ଅବଶ୍ୟ ଯେଉଁମାନେ ପୂଜା ପାଇଁ ଅନେକ ଜନପ୍ରିୟ ଉପନ୍ୟାସ ଲେଖନ୍ତି ତାଙ୍କ ପାଖରେ ସଂପାଦନା ପାଇଁ ସମୟ ନଥାଏ । ଜଣେ ଜଣେ ବଙ୍ଗାଳୀ ଲେଖକ ପୂଜା ସଂଖ୍ୟା ପତ୍ରିକା ପାଇଁ ବର୍ଷକୁ ଆଠ ଦଶଟି ଉପନ୍ୟାସ ଲେଖିଥାନ୍ତି । କୁହାଯାଏ ଯେ ଏଭଳି ଲେଖକ ଗୋଟିଏ ପୃଷ୍ଠା ଲେଖିସାରିବା ମାତ୍ରେ ସେଇଟି ଟାଇପ୍ ହେବା ପାଇଁ ଚାଲିଯାଏ । ବହୁପ୍ରସୂ ଲେଖକ (ଯଥା ବଙ୍ଗଳାର ଆଶାପୂର୍ଣ୍ଣା ଦେବୀ : ୧୭୯ଟି ଉପନ୍ୟାସ, ୧୩୦୦ କ୍ଷୁଦ୍ରଗଳ୍ପ, ୫୭ଟି ପିଲାଙ୍କ ବହି)ଙ୍କ ଆଗରେ ପ୍ରଶ୍ନ, ଲେଖାକୁ ସଂଶୋଧନ କରିବେ ନା ନୂଆ ଲେଖା ଲେଖିବେ । ଓଡ଼ିଶାରେ କିନ୍ତୁ ଏ ଭଳି ଫଳପ୍ରସୂ ଲେଖକ ଏ ପର୍ଯ୍ୟନ୍ତ ବାହାରି ନାହାନ୍ତି ।

ଖଟଣିର ଅନ୍ୟ ଦିଗଟି ହେଲା ଲେଖା ପାଇଁ ପ୍ରସ୍ତୁତି । ଗବେଷଣା, ପ୍ରବନ୍ଧ, ଐତିହାସକ ଉପନ୍ୟାସ ଇତ୍ୟାଦି ପାଇଁ ହାଡ଼ଭଙ୍ଗା ଖଟଣି ବିଷୟରେ କୌଣସି ସନ୍ଦେହ ରହି ନ ପାରେ । ତେବେ କବିତା ଲେଖିବା ପାଇଁ ମଧ୍ୟ ପ୍ରାଥମିକ ଆୟୋଜନ ଦରକାର । 'ଏଲିଜି' କବିତା ଲେଖିବା ପାଇଁ ଡିଲାନ୍ ଟମାସ ଷାଠିଏ ପୃଷ୍ଠାର ନୋଟ ତିଆରି କରିଥିଲେ, କିନ୍ତୁ ଶେଷ ପର୍ଯ୍ୟନ୍ତ ସେ କବିତାଟିକୁ ସଂପୂର୍ଣ୍ଣ କରି ପାରି ନ ଥିଲେ । ଏ ବିଷୟରେ ଆମର ରାଧାନାଥ ରାୟ ସୁବ୍ୟବସ୍ଥିତ ଥିଲେ; ସେ ନିଜର ଟିପାଖାତାରେ କବିତା ଲେଖିବା ପାଇଁ ବ୍ୟବହାର ଯୋଗ୍ୟ ବିବରଣୀ ଲେଖି ରଖୁଥିଲେ ।

ମରିବାର କିଛି ଦିନ ପୂର୍ବରୁ ରାଧାନାଥ 'ମାଳ୍ୟଗିରି' କବିତା ଲେଖିବାର ଇଚ୍ଛା ପ୍ରକାଶ କରିଥିଲେ ଏବଂ ଏଥିପାଇଁ ସେ ଯେଉଁ ଟିପା କରିଥିଲେ ତାହା ଉପଲବ୍ଧ । ଏ ଟିପାରେ ସେ ନିଜେ ମାଳ୍ୟଗିରି ପର୍ବତ ଯାଇ ସେଠାରେ ଦେଖିଥିବା ପଶୁପକ୍ଷୀ, ଗଛ ଲତା, ନଦୀ ନାଳ ଇତ୍ୟାଦିର ବିସ୍ତୃତ ବିବରଣୀ ଲେଖି ରଖିଥିଲେ । ଏପରି କି ଏଥିରେ ସେ କବିତାର ଦୁଇ ଧାଡ଼ି ମଧ୍ୟ ଛାଡ଼ି ଯାଇଛନ୍ତି; ଶାସ୍ତ୍ରେ ନ ଥିଲେ ହେଁ ତୋ ନାମକରଣ, ତୁହି ମାଳ୍ୟଗିରି ତୀର୍ଥ ସନାତନ । ଏହି ଟିପାଖାତାକୁ ପଢ଼ିଲେ କୌଣସି ସନ୍ଦେହ ରହିବ ନାହିଁ ଯେ ସେ ଯଦି ମାତ୍ର ଆଉ କିଛି ଦିନ ସୁସ୍ଥ ଭାବରେ ବଞ୍ଚି ରହିଥାନ୍ତେ, ତାଙ୍କ ପାଖରୁ ଆମେ 'ଚିଲିକା' ଓ 'ମହେନ୍ଦ୍ରଗିରି' ଭଳି ଆଉ ଗୋଟିଏ କାବ୍ୟ ପାଇ ପାରିଥାନ୍ତେ ।

ଗୋଟିଏ ଲେଖା ଲେଖିବା ପୂର୍ବରୁ ଲେଖକ ମନେ ମନେ ଭାବି ନେଇଥାଏ ଲେଖାର ସ୍ୱରୂପ କିପରି ହେବ । କବିତାର ପ୍ରଥମ ଧାଡ଼ିରୁ ଆରମ୍ଭ କରି ମନ ଭିତରେ ଥିବା ଆବେଗ ଲେଖକକୁ ଆଗେଇ ନିଏ ଗୋଟିଏ ଧାଡ଼ିରୁ ଆଉ ଗୋଟିଏ ଧାଡ଼ି । ଗଳ୍ପ ଓ ବିଶେଷରେ ଉପନ୍ୟାସ ଲେଖିବା ବେଳେ କିନ୍ତୁ ଘଟଣାବଳୀକୁ କେଉଁ ବିନ୍ୟାସରେ ସଜାଇବ ତାକୁ କାଗଜରେ ନ ଲେଖିଲେ ବି ଅନ୍ତତଃ ମନ ଭିତରେ ସଜାଡ଼ି ରଖେ ଲେଖକ । ନାଟକ ଲେଖିବା ପାଇଁ ଆହୁରି ଅଧିକ କଠୋର ଅନୁଶାସନ ଦରକାର ହୁଏ- ଚରିତ୍ରମାନେ କେଉଁଠାରୁ କେତେବେଳେ ଆସିବେ ଇତ୍ୟାଦି । ନାଟକ ଲେଖିବା ବେଳେ ନାଟକକାର ମନ ଭିତରେ କାହାଣୀର ମଞ୍ଚାୟନ ମଧ୍ୟ କରୁଥାଏ ।

ଅବଶ୍ୟ ଏ କଥା ମଧ୍ୟ ନୁହେଁ ଯେ ଲେଖକ ପ୍ରଥମେ ଯେଉଁ ଭଳି ଭାବିଥାଏ ଏବଂ ଚରିତ୍ର ଓ କାହାଣୀର ବିକାଶ ପାଇଁ ଯେଉଁ ଛାଞ୍ଚ ବା ନକ୍‌ଶା ତିଆରି କରିଥାଏ ଶେଷ ପର୍ଯ୍ୟନ୍ତ ସେଇ ଭଳି ରହେ । ଲେଖା ଅଗ୍ରସର କରୁଥିବା ବେଳେ ଲେଖକର ଚିନ୍ତାଧାରା ବଦଳେ, ମନକୁ ନୂଆ ଭାବନା ଆସେ, ଲେଖୁଥିବା ଚରିତ୍ରଟି ଜୀବନ୍ୟାସ ନେଇ ଲେଖକକୁ ଭିନ୍ନ ଦିଗକୁ ଟାଣି ନିଏ । ଆନ୍ନା କାରେନିନାର ପ୍ରଥମ ଖସଡ଼ାରେ ନାୟିକା ତାଙ୍କର ପ୍ରେମିକଙ୍କୁ ବାହା ହେଉଥିଲେ, କିନ୍ତୁ ସଂଶୋଧନ ପରେ ଶେଷ ଖସଡ଼ାରେ ଟଲଷ୍ଟୟ ତାଙ୍କୁ ଏଥିରୁ ବଞ୍ଚିତ କରିଦେଲେ ।

ପ୍ରତ୍ୟେକ ଲେଖକର ଲେଖନ ପ୍ରଣାଳୀ ଅଲଗା । ତେବେ ଲେଖା ପାଇଁ ପ୍ରସ୍ତୁତି ଏବଂ ପ୍ରଥମ ଖସଡ଼ାର ସଂପାଦନ ଯେ ଲେଖାକୁ ଅଧିକ ସୁନ୍ଦର କରିପାରେ ଏଥିରେ

ସନ୍ଦେହ ନାହିଁ । ଅନେକ ସମୟରେ ସ୍ୱତଃସ୍ଫୂର୍ତ୍ତ ସ୍ୱାଭାବିକ ଦୈବୀ ପ୍ରେରଣାରୁ ଉଦ୍‌ଭୁତ ଜଣାଯାଉଥିବା ଲେଖାଟି ବହୁ ଶ୍ରମ, ସମୟ ଓ ସଂଶୋଧନ ପ୍ରସୂତ ହୋଇଥିବାର ସମ୍ଭାବନା ଅଧିକ । ଅନ୍ୟ ଭାଷାମାନଙ୍କରେ ପ୍ରକାଶକଙ୍କର ସଂପାଦକ ଥାନ୍ତି ଯେଉଁମାନେ ପାଣ୍ଡୁଲିପିରେ ଆବଶ୍ୟକୀୟ ସଂଶୋଧନ କରି ତାକୁ ପ୍ରକାଶନ ଉପଯୋଗୀ କରିଥାନ୍ତି । ଆମର ଏଠାରେ ଏ କାମଟି ଲେଖକଙ୍କୁ ହିଁ କରିବାକୁ ପଡ଼େ । ତେଣୁ ଆମର ଲେଖକଙ୍କୁ ଅଧିକ ସାବଧାନ ରହିବା ଉଚିତ ।

ଏ ବିଷୟରେ ଶେଷ କଥା ହେଲା ଯେ ଲେଖାଟି ପଛରେ କେତେ ଶ୍ରମ ବ୍ୟୟ ହୋଇଛି ସେ କଥା ଗୌଣ ହୋଇଯାଏ; ଲେଖାର ଅନ୍ତିମ ପ୍ରକାଶିତ ରୂପ ହିଁ ସବୁ କିଛି । ତେବେ ଏ କଥା ମଧ୍ୟ ସତ ଯେ ବିନା ପରିଶ୍ରମରେ ଯାହା ଲେଖାଯାଏ ତାକୁ ପାଠକ ପଢ଼ନ୍ତି ବିନା ଆନନ୍ଦରେ, ବିନା ଆଗ୍ରହରେ ।

*ସେପ୍ଟେମ୍ବର ୨୦୧୫*

# ଗୋରା ଲୋକଙ୍କ ବୋଝ ଓ ଜିଲି ସାହେବାଣୀ

-୧-

୧୮୯୯ ମସିହାରେ ରଡ୍‌ୟାର୍ଡ କିପଲିଙ୍ଗ୍ The White Man's Burden ବୋଲି ଗୋଟିଏ କବିତା ଲେଖିଥିଲେ ଯାହାର ପ୍ରଥମ ଚାରିଧାଡ଼ି ଥିଲା :

Take up the white man's burden
Send forth the best you breed-
Go send your sons to exile
To serve your captives' need.

ଏ ଲେଖାର ବର୍ଷକ ପୂର୍ବରୁ ଆମେରିକା ଯୁଦ୍ଧ କରି ସ୍ପେନ ପାଖରୁ ଫିଲିପାଇନ୍ସକୁ ନେଇ ଯାଇଥିଲା ଓ ବର୍ତ୍ତମାନ ଫିଲିପିନ-ଆମେରିକା ଲଢ଼ାଇ ଚାଲିଥିଲା । କିପଲିଙ୍ଗ୍ ଆମେରିକାକୁ ଉଦ୍‌ବୋଧିତ କରୁଥିଲେ ଫିଲିପିନ ଲୋକଙ୍କର ଭାର ନେଇଯିବା ପାଇଁ ଏବଂ ତାଙ୍କ କବିତାର ଉପଶୀର୍ଷକ ଥିଲା The US and the Philippine Islands । କବିତାକୁ ପଢ଼ି ପରବର୍ତ୍ତୀ ସମୟରେ ରାଷ୍ଟ୍ରପତି ହେବାକୁ ଯାଉଥିବା ଥିଓଡର ରୁଜଭେଲ୍ଟ୍ କହିଥିଲେ, ନିହାତି ଖରାପ କବିତା, କିନ୍ତୁ ଉପନିବେଶ ପ୍ରତିଷ୍ଠା କରିବା ଦୃଷ୍ଟିରୁ ଏକ ଉତ୍ତମ ଉପଲବ୍ଧି ।

ଏ କବିତାରେ କିପଲିଙ୍ଗ୍ ଚାହୁଁଥିଲେ ଯେ ଇଂଲାଣ୍ଡ ଓ ଅନ୍ୟ ଇଉରୋପୀୟ ଦେଶ ଯେପରି ଉପନିବେଶ ସ୍ଥାପନ କରିଛନ୍ତି, ଆମେରିକା ମଧ୍ୟ ତା କରୁ । ଏହି ଉପନିବେଶର ଲୋକମାନଙ୍କୁ କିପଲିଙ୍ଗ୍ ବର୍ଣ୍ଣନା କରିଥିଲେ, fluttered folk and wild/new-caught, sullen peoples, half-devil and half-child । କବିତାର ମର୍ମ ଥିଲା ଯେ ସାମ୍ରାଜ୍ୟବାଦ ଏକ ମହତ କାର୍ଯ୍ୟ । ସେହି ସମୟଠାରୁ ଔପନିବେଶିକତାର ଆଲୋଚନା ବେଳେ 'ଗୋରା ଲୋକଙ୍କ ବୋଝ' ଓ 'ଅଧା-ସଇତାନ ଅଧା-ଶିଶୁ' କଥା ଉଠିଥାଏ ।

ଗୋରା ଲୋକ ଆମ ଦେଶକୁ ଅଧିକାର କରିବା ପରେ ପରେ ଆମକୁ 'ସଭ୍ୟ' କରିବାରେ ଲାଗିଗଲେ । ସେମାନେ ବିଲାତୀ ବ୍ୟବସ୍ଥା ପ୍ରଚଳନ କଲେ ଓ ଆମ ଉପରେ ସଂସ୍କୃତ ଆରବିକ ମାଧମରେ ପାଠ ବଦଳରେ ଇଂରେଜୀ ଭାଷା ଲଦିଦେଲେ । ଆମର ପାରମ୍ପରିକ ରୀତିନୀତିକୁ ଭାଙ୍ଗି ଦେଇ ସେମାନେ ତାଙ୍କ ହିସାବରେ ଜମିଜମା ବନ୍ଦୋବସ୍ତ ଓ ଫୌଜଦାରୀ ଆଇନ ପ୍ରଣୟନ କଲେ । ଏ ସବୁ କରିବା ମୂଳରେ ଯୁକ୍ତି ଥିଲା ଯେ ଏହା ଆମର ଭଲ ପାଇଁ ।

ଏଥରକ ସେମାନେ କିଛି ସାମାଜିକ ବ୍ୟବସ୍ଥାରେ ହାତ ଦେଲେ, ଯଥା, ବିଧବା ପୁନର୍ବିବାହ, ସତୀପ୍ରଥା ଉଚ୍ଛେଦ ଇତ୍ୟାଦି ଯେଉଁଥି ପାଇଁ ସେମାନଙ୍କୁ ଭାରତୀୟ ସଂସ୍କାରକଙ୍କର ସମର୍ଥନ ମଧ୍ୟ ମିଳିଲା । ଗୋରାମାନଙ୍କର ଓଡ଼ିଶାରେ ଏ ଭଳି ଏକ କାମ ଥିଲା ମେରିଆ ନରବଳିର ଉଚ୍ଛେଦନ । ବିଦ୍ୱାନମାନେ ବର୍ତ୍ତମାନ ଏ ବିଷୟରେ ଗବେଷଣା କରି ମତ ଦେଉଛନ୍ତି ଯେ କନ୍ଧମାନେ ଇଂରେଜମାନଙ୍କୁ ତାଙ୍କ ଅଞ୍ଚଳରେ ପୂରାଇ ଦେଉ ନଥିଲେ । ସେମାନଙ୍କ ପାଖରୁ ବାରମ୍ବାର ହାରିଯିବା ପରେ ମେରିଆର ଦ୍ୱାହି ଦେଇ ଇଂରେଜମାନେ କନ୍ଧମାନଙ୍କ ଉପରେ ଯୁଦ୍ଧ ଘୋଷଣା କରି ଦମନ ଲୀଳା ଆରମ୍ଭ କରିଦେଲେ । ନରବଳି ବନ୍ଦ କରିବା ଆଳରେ ସେମାନେ କନ୍ଧମାନଙ୍କ ପ୍ରତିରୋଧକୁ ପୂରାପୂରି ଧ୍ୱଂସ କରି ୧୮୩୫ରେ କନ୍ଧମାଳକୁ କବଳ କରିନେଲେ । ଏବଂ ନିଜକୁ ତ୍ରାଣକର୍ତ୍ତା ଭାବରେ ଉପସ୍ଥାପିତ କଲେ ।

ଗୋରା ଲୋକ ଯେ କଳା ଲୋକଙ୍କୁ ଶାସନ କରି ସେମାନଙ୍କୁ ସଭ୍ୟ ଓ ମାର୍ଜିତ କରିବାର ଦାୟିତ୍ୱ ନେଇ ନେଲେ, ସାହିତ୍ୟରେ ମଧ୍ୟ ଏହି ଭାବଧାରାର ପ୍ରତିଫଳନ ହେଲା । ଫିଲିପ ଟେଲରଙ୍କ ଉପନ୍ୟାସ **ସୀତା**(୧୮୭୨)ରେ ବିଲାତୀ ହିରୋ ସତୀ ହୋଇ ଜଳିଯାଉଥିବା ବିଧବାକୁ ଉଦ୍ଧାର କରି ଶେଷରେ ତାକୁ ବିବାହ କରୁଛି । ଜୁଲ ଭର୍ନଙ୍କର 'Around the World in Eighty Days'(୧୮୭୩)ରେ ଅଶି ଦିନରେ ପୃଥିବୀ ପ୍ରଦକ୍ଷିଣ କରିବାର ବାଜି ନେଇଥିବା ନାୟକ ନିଜ ସମୟର ସ୍ୱଳ୍ପତା ସତ୍ତ୍ୱେ କୌଶଳ କରି ଜଣେ ସତୀକୁ ଉଦ୍ଧାର କରିଥିଲା । ଏପରିକି ରବୀନ୍ଦ୍ରନାଥ ଠାକୁରଙ୍କ ଦିଦି(୧୮୯୫) ଗଳ୍ପରେ ଜୟଗୋପାଳର ସ୍ତ୍ରୀ ଶଶି ନିଜର ସ୍ୱାମୀକୁ ବିଶ୍ୱାସ ନ କରି ତାର ଛୋଟ ଭାଇର ରକ୍ଷଣର ଭାର ଇଂରେଜ ମାଜିଷ୍ଟ୍ରେଟଙ୍କ ପାଖରେ ସମର୍ପଣ କଲା କାରଣ ତା ଆଖିରେ ଗୋରାଲୋକ ତାର ନିଜର ଜ୍ଞାତିମାନଙ୍କଠାରୁ ଉତ୍ତମ ମା-ବାପ ।

ଏ ସବୁର ପ୍ରତିଫଳନ ଆମ ଓଡ଼ିଆ ସାହିତ୍ୟରେ ହେଲା ଅନେକ ପରେ କାରଣ ଭକ୍ତି ଓ ପ୍ରେମମୂଳକ କାବ୍ୟ କବିତାରେ ସାମାଜିକ ସ୍ଥିତି ବିଷୟରେ ଲେଖିବାର ସୁଯୋଗ ନ ଥିଲା । ଆମ ସାହିତ୍ୟକୁ ଗୋରା ଆସିଲେ ଫକୀରମୋହନଙ୍କ ଜରିଆରେ । ନିଜର ଉପନ୍ୟାସରେ ଫକୀରମୋହନ ଇଂରେଜ ଉପନିବେଶବାଦ ଓ ସେମାନଙ୍କ ପ୍ରବର୍ତ୍ତିତ ରାଜସ୍ୱ ଓ ଦଣ୍ଡବିଧି ଆଇନକୁ ସମାଲୋଚନା କରୁଥିବା ବେଳେ ଅନ୍ୟ ଲେଖାମାନଙ୍କରେ ଗୋରା ଅମଲା ଓ ବିଶେଷରେ ରେଭେନଶାଙ୍କ ପ୍ରଶଂସାରେ ଶତମୁଖ ଥିଲେ । ପହିଲା ଡିସେମ୍ବର ୧୯୧୫ରେ ଉତ୍କଳ ସାହିତ୍ୟ ପତ୍ରିକା ପାଇ ସେ ତାର ସଂପାଦକ ବିଶ୍ୱନାଥ କରଙ୍କୁ ପତ୍ରରେ ଲେଖିଥିଲେ, ''କାହିଁକି ବୁଝିପାରିଲି ନାହିଁ ସାହିତ୍ୟ ବାହ୍ୟ ଆକାରଟା ଏଥରକ ମୋ ଆଖିକୁ ବଡ଼ ସୁନ୍ଦର ଦିଶିଲା । ଫିଟାଇଲି, ରେଭେନଶା ଫଟୋରେ ତିନିଥର ମୁଣ୍ଡ ଲଗାଇ, ପୁଣି ଥରେ ଭଲ କରି ଅନାଇ, ପୁଣି ତିନି ଥର ମୁଣ୍ଡ ଲଗାଇଲି ।'' ନିଜର ଆତ୍ମଜୀବନୀରେ ମଧ୍ୟ ସେ ଏ ଭଳି ଗୁଣ କୀର୍ତ୍ତନ କରିଛନ୍ତି ।

ସୁରେନ୍ଦ୍ର ମହାନ୍ତି ତାଙ୍କର **ଫକୀର ମୋହନ**(୧୯୫୦) ବହିର ପରିଶିଷ୍ଟରେ ଫକୀରମୋହନଙ୍କ 'ଆତ୍ମଜୀବନୀରୁ ଏକ ଅଧ୍ୟାୟ' ସଂଯୋଜନା କଲାବେଳେ ଗୋରାମାନଙ୍କ ଅତ୍ୟଧିକ ପ୍ରଶଂସା ତାଙ୍କୁ ବୃଷ୍ଟିକଟୁ ଲାଗିଥିବାରୁ ସେ ଫକୀରମୋହନଙ୍କ ଲେଖାରୁ କେତେକ ବାକ୍ୟକୁ କାଟି ଦେଇଥିଲେ ।

ସୈନ୍ୟ ଓ ଶାସକମାନଙ୍କ ବ୍ୟତୀତ ଆଉ ଯେଉଁ ଗୋରା ଦଳ ଆମକୁ ସଭ୍ୟ କରିବାକୁ ଆସିଲେ, ସେମାନେ ହେଲେ ପାଦ୍ରି । ସେମାନେ ଆମକୁ ପିତୁଳାମୁକ୍ତ କରିବାର ପଣ ନେଇ ଆସୁଥିଲେ । ତାଙ୍କ ଆଗରେ ବାଇବଲର ପବିତ୍ରବାଣୀ ଥିଲା : The idols He shall utterly abolish. He will famish all the gods of the earth । ଓଡ଼ିଶା ପାଇଁ ପାଦ୍ରିଙ୍କର ଏକ ବିଶେଷ ଲକ୍ଷ୍ୟ ଥିଲା ଜଗନ୍ନାଥ ମନ୍ଦିର । ୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ବେଳେ ମରହଟ୍ଟା ଅତ୍ୟାଚାରରେ ଛଟପଟ ଓଡ଼ିଆମାନେ ତାଙ୍କୁ ପାଛୋଟି ଆଣିଲେ । ଏପରିକି ପୁରୀ ପଣ୍ଡାମାନେ ମଧ୍ୟ ଇଂରେଜମାନଙ୍କ ମିତ ହେଲେ । କମ୍ପାନୀ ଶାସକମାନେ ନିଜର ସ୍ୱାର୍ଥ ପାଇଁ ପୁରୀ ମନ୍ଦିରକୁ ଆପଣା ମତେ ଚଳିବାକୁ ଦେଲେ ଓ ସାହାଯ୍ୟ କଲେ । ୧୮୨୨ରେ କିନ୍ତୁ ବାପ୍‌ଟିଷ୍ଟ ମିଶନର ଗୋରା ପାଦ୍ରି ଆସିଲେ ଭିନ୍ନ ଲକ୍ଷ୍ୟ ନେଇ । ତାଙ୍କ ନିଜ ରିପୋର୍ଟ ଅନୁସାରେ ତାଙ୍କର ଉଦ୍ଦେଶ୍ୟ ଥିଲା attacking one of the

strongest holds of the prince of darkness... extract the first stones from the foundation of the mighty pagoda... Juggernaut, the great, the obscene, the bloody Juggernaut, must fall. ।

ଏପରି କିଛି କିନ୍ତୁ ହେଲା ନାହିଁ । ଜଗନ୍ନାଥ ମନ୍ଦିରକୁ ରସାତଳ କରିବା ତ ଦୂରର କଥା, ବେଶି ଲୋକଙ୍କୁ ବି ଖିରସ୍ତାନ କରିପାରିଲେ ନାହିଁ ସେମାନେ । ଗୋରା ଅମଲାଙ୍କୁ ପ୍ରଶଂସା କରୁଥିବା ଫକୀରମୋହନଙ୍କର ପାଦ୍ରିଙ୍କ ପାଇଁ ନକାରାତ୍ମକ ଦୃଷ୍ଟି ଥିଲା । ସେ ଲେଖିଛନ୍ତି, ଖ୍ରୀଷ୍ଟିଆନ ପ୍ରଚାରକଙ୍କ ହାତରେ ଘୋଡ଼ା ଚାବୁକ ଥାଏ; ଯୀଶୁଖ୍ରୀଷ୍ଟଙ୍କୁ ନିନ୍ଦା କଲେ ଦେ ପ୍ରହାର । ପ୍ରକୃତରେ କିନ୍ତୁ ଏହି ପାଦ୍ରିମାନେ ଅତି ହିନିମାନ ଅବସ୍ଥାରେ ରହୁଥିଲେ, ଲୋକମାନେ ତାଙ୍କୁ ଥଟ୍ଟା ତାମସା ଅପମାନ କରୁଥିଲେ । ଏହି ବିଚରାମାନେ ଓଡ଼ିଶାର ହିନ୍ଦୁମାନଙ୍କୁ ଖ୍ରୀଷ୍ଟିଆନ କରିବାରେ ଅସମର୍ଥ ହେଲେ ବି ଓଡ଼ିଶାର ଶିକ୍ଷା ଓ ସାମାଜିକ କ୍ଷେତ୍ରରେ ଅନେକ କାମ କରିଥିଲେ ଯାହା ଆମକୁ ସ୍ୱୀକାର କରିବାକୁ ହେବ ।

ପରବର୍ତ୍ତୀ ସମୟରେ ଧର୍ମ ପ୍ରଚାର ଓ ଆଧ୍ୟାତ୍ମିକ ଉଦ୍ଦେଶ୍ୟ ନେଇ କେତେକ ଗୋରା ସ୍ତ୍ରୀ ପୁରୁଷ ଭାରତକୁ ଆସିଥିଲେ ଏବଂ ଏଠାରେ ନିଃସ୍ୱାର୍ଥ ସେବା କରି ଆମର ପ୍ରଶଂସା ଭାଜନ ହୋଇଛନ୍ତି । ସେମାନଙ୍କ ଭିତରୁ ପ୍ରସିଦ୍ଧ କେତେଜଣ ହେଲେ ଆନି ବେସାନ୍ତ (ଭାରତରେ ରହିଥିଲେ ୧୮୯୩ରୁ ଚାଳିଶ ବର୍ଷ, ମୃତ୍ୟୁ ପର୍ଯ୍ୟନ୍ତ), ଭଗିନୀ ନିବେଦିତା(୧୮୯୯ରୁ ବାର ବର୍ଷ), ସି.ଏଫ୍ ଆଣ୍ଡ୍ରୁଜ (୧୯୦୪ରୁ ୧୯୩୬), ଶ୍ରୀମା(୧୯୨୦ରୁ ତେପନ ବର୍ଷ), ଭେରିଅର ଏଲଓ୍ୱିନ (୧୯୨୭ରୁ ସଇଁତିରିଶ ବର୍ଷ) ଏବଂ ମଦର ଟେରେସା(୧୯୩୭ରୁ ଷାଠିଏ ବର୍ଷ) । ଏମାନଙ୍କ ବ୍ୟତୀତ ଆସିଥିଲେ ମୀରାବେନ ଗାନ୍ଧୀଙ୍କର ଶିଷ୍ୟାହୋଇ ୧୯୨୫ରେ; ଗାନ୍ଧୀଙ୍କ ମୃତ୍ୟୁ ପରେ ୧୯୫୯ରେ ସେ ଫେରିଗଲେ ଏବଂ ଭାରତକୁ ପୂରାପୂରି ଭୁଲିଗଲେ ।

ଉପରୋକ୍ତ ମହାନ୍ ଲୋକମାନେ ଭାରତର ସେବାରେ ନିଜକୁ ଉତ୍ସର୍ଗ କରି ଦେଇଥିଲେ ଏବଂ ଚାଲିଚଳନ, ଚିନ୍ତାଧାରା ଓ ଭାବାବେଶରେ ପୂର୍ଣ୍ଣମାତ୍ରାରେ ଭାରତୀୟ ଥିଲେ । ଏଠାରେ କରିଥିବା କାମକୁ ସେମାନେ 'ବୋଝ' ଭାବରେ ନୁହେଁ ବରଂ ସ୍ୱଇଚ୍ଛାରେ ଆନନ୍ଦରେ ନିଜ ଉପରକୁ ନେଇଥିଲେ । ଭାରତ ମଧ୍ୟ ସେମାନଙ୍କ ଦ୍ୱାରା ବିଶେଷ ଭାବରେ ଉପକୃତ ହୋଇଥିଲା ।

ସାହିତ୍ୟରେ ମଧ୍ୟ ପ୍ରଭାବ ପଡ଼ିଲା ଏ ଭଳି ନିଃସ୍ୱାର୍ଥ ଗୋରା ଲୋକ ଆସି

ଭାରତରେ ଲୋକ ସେବା କରୁଥିବାର । ନିକଟ ଅତୀତର ଏ ଭଳି ଗୋଟିଏ ବହି ହେଲା ୧୯୮୫ରେ ପ୍ରକାଶିତ ଜନପ୍ରିୟ ଉପନ୍ୟାସ A City of Joy । ଏଥିରେ ଅଛି କଲିକତା ଆନନ୍ଦଗ୍ରାମର ଦୁଃସ୍ଥ ଓ କୁଷ୍ଠରୋଗ ପୀଡ଼ିତ ଲୋକମାନଙ୍କର ସେବା କରୁଥିବା ପୋଲାଣ୍ଡର ପାଦ୍ରି ଓ ଆମେରିକାର ଯୁବ ଡାକ୍ତରଙ୍କର କାହାଣୀ ।

ଏତେବେଳକୁ Edward Said ଙ୍କର Orientalism(1978) ଓ ଗାୟତ୍ରୀ ଚକ୍ରବର୍ତ୍ତୀ ସ୍ପିଭାକ ପ୍ରମୁଖଙ୍କର ସାମ୍ରାଜ୍ୟବାଦ ବିରୋଧୀ ଲେଖାର ଯୁଗ ଆସିଗଲାଣି ଏବଂ ଉତ୍ତର ଉପନିବେଶବାଦୀ ଲେଖାର ଆଧିପତ୍ୟ । ଲୋକମାନେ ପ୍ରଶ୍ନ କରୁଛନ୍ତି ଏ ପର୍ଯ୍ୟନ୍ତ କଣ ସେଇ ଗୋରା ଲୋକ ଆମର ବୋଝ ବୋହୁଛନ୍ତି ଏବଂ ଆମର ଆପଦ ବିପଦରେ କେବଳ ସେଇମାନେ ଆମର ସାହା ଭରସା ? ଏ କଣ ଆମ ପାଇଁ କଂଗ୍ରେସର 'ସୋନିଆ ଲାଓ ଦେଶ ବଚାଓ' ଅବସ୍ଥା ? ଏହି କାରଣରୁ A City of Joy ସମାଲୋଚନାର ଶରବ୍ୟ ହେଲା ।

-୨-

ମୋ ପାଇଁ ମଧ୍ୟ ଏହି ଭଳି ଗୋଟିଏ ସମସ୍ୟା ଆସିଥିଲା । ସ୍ୱାଧୀନତା ପୂର୍ବରୁ ଜନ୍ମିଥିବାରୁ ଓ ପରବର୍ତ୍ତୀ ସମୟରେ ଆମର ସ୍ୱାଧୀନତା ସଂଗ୍ରାମ ଓ ପଚାଶ ଷାଠିଏ ଦଶକରେ ପୃଥିବୀର ବିଭିନ୍ନ ବିକାଶଶୀଳ ଦେଶର ସ୍ୱାଧୀନତା ବିଷୟରେ ଜାଣି ଓ ସାମ୍ରାଜ୍ୟବାଦ ବିରୋଧୀ ଲେଖାମାନ ପଢ଼ି ମୋର ମଧ୍ୟ ଦୃଢ଼ ପ୍ରତିକ୍ରିୟା ଥିଲା ଗୋରା ଲୋକଙ୍କ କଳା ଲୋକଙ୍କୁ ସଭ୍ୟ କରିବା ବିଷୟରେ ।

ମୁଁ ୧୯୭୯-୮୧ରେ ପୁରୀ ରଘୁରାଜପୁର ଚିତ୍ରକାରଙ୍କ ଗାଁରେ ପଟଚିତ୍ର ଓ ତାର ଚିତ୍ରକାରଙ୍କ ଉପରେ ଗବେଷଣା କରୁଥିଲି । (ପଟଚିତ୍ରକୁ କେତେକ ଲେଖକ କାହିଁକି ପଟ୍ଟଚିତ୍ର ବୋଲି ଲେଖୁଛନ୍ତି, ତା ମୋର ଅଜଣା ।) ସେଠାରେ ମୁଁ ପ୍ରଥମେ ଭିଲି ସାହେବାଣୀଙ୍କ ନାଁ ଶୁଣିଲି । ସେଠାର ଗାଁ ବାଲା କହିଲେ ଯେ ଅନେକ ବର୍ଷ ଧରି ସେମାନେ ଚିତ୍ର କାମ ଛାଡ଼ି ଦେଇ ହାତ ବାନ୍ଧି ବସିଥିଲେ ଏବଂ ଭିଲି ସାହେବାଣୀଙ୍କ ଯୋଗୁ ହିଁ ସେମାନେ ନିଜର କୁଳବୃତ୍ତି ଚିତ୍ର କାମକୁ ଫେରି ଆସିଲେ । ଚିତ୍ର କାମ ଛାଡ଼ି ଦେବାର ଘଟଣାକ୍ରମ ଏପରି ଥିଲା :

ପୁରୀରୁ କିଛି ଦୂର ରଘୁରାଜପୁର ଓ ଦାଣ୍ଡସାହି ଗାଁର ଚିତ୍ରକାର ଜାତିର ଲୋକଙ୍କର କୁଳ ବେଉସା ଥିଲା ମନ୍ଦିରର କିଛି କାମ କରିବା ଓ ଜଗନ୍ନାଥ ପଟଚିତ୍ର କରି ପୁରୀ ଆସୁଥିବା ଯାତ୍ରୀଙ୍କୁ ବିକିବା । ଏଇଥିରେ ସେମାନେ ଗୁଜରାଣ ମେଣ୍ଟାଉ ଥିଲେ

ବିଂଶ ଶତାବ୍ଦୀର ପ୍ରଥମ ଦଶକ ପର୍ଯ୍ୟନ୍ତ । ପୁରୀ ମନ୍ଦିର ପାଖରେ ପଟଚିତ୍ର ବିକିବାର ଜାଗା ଥିଲା ମନ୍ଦିର ଭିତର ବେଢ଼ା ଓ ବାହାରେ ଅରୁଣ ସ୍ତମ୍ଭ ପାଖ ଚକଡ଼ାର ଚିତ୍ରପଟି ମାହାଲ । ଏହି ମାହାଲ ପ୍ରତିବର୍ଷ ନିଲାମ ହେଉଥିଲା ଏବଂ ଗରିବ ଚିତ୍ରକାର ଡାକ ଦେଇପାରୁ ନଥିବାରୁ ବ୍ୟବସାୟୀ ତାକୁ ନିଲାମରେ ନେଇ ଯାଉଥିଲେ । ସେମାନେ ଚିତ୍ରକାରମାନଙ୍କ ପାଖରୁ ଶସ୍ତାରେ ଚିତ୍ର କିଣି ମାହାଲରେ ବେଶି ଦାମରେ ବିକ୍ରି କରୁଥିଲେ ।

ଏଇ ଭଳି ଏକ ମଧ୍ୟସ୍ଥ ଥିଲା ଚିତ୍ରପଟି ମାହାଲର ଠିକାଦାର ଆନନ୍ଦ ମହାନ୍ତି । ସେ ଶଗଡ଼ରେ ଧାନ ନେଇ ରଘୁରାଜପୁର ଯାଇ ଚିତ୍ରକାରଙ୍କ ପାଖରୁ ଧାନ ବଦଳରେ ଶସ୍ତାରେ ଯାତ୍ରୀପଟି କିଣୁଥିଲା । ଏଗୁଡ଼ିକର ଦାମ ଖୁବ୍ କମ୍ ହୋଇଥିବାରୁ ଚିତ୍ର ସବୁ ହିସାବ ହେଉଥିଲା ଶହ ଦରରେ । ଆନନ୍ଦ ମହାଜନି କାମ ମଧ କରୁଥିଲା ଏବଂ ଟଙ୍କା ଲେଣ ଦେଣ ବ୍ୟାପାରରେ ସିଭିଲ କୋର୍ଟରେ ଜଣାଶୁଣା ଥିଲା । ସେ କେସ କରି ସଂପତ୍ତି ବଢ଼ାଇବାରେ ଲାଗିଥିଲା ଓ ୧୯୦୪-୦୫ରେ ନିଜକୁ ଗୋଲା ଜାତିର କହୁଥିବା ବେଳେ ୧୯୧୦-୧୧ ବେଳକୁ ନିଜକୁ କାୟସ୍ଥ କରଣ ବୋଲି ଲେଖିଲା । ଏହି ଆନନ୍ଦ ମହାନ୍ତି ଯୋଗୁ ଚିତ୍ରକାରମାନେ ଗରିବରୁ ଗରିବ ହେବାରେ ଲାଗିଲେ ।

ଏଇ ସମୟରେ ପୁରୀର ଜଣେ ସମାଜସେବୀ ମିଛୁ ମିଶ୍ରେ ଚିତ୍ରକାରଙ୍କ ସହାୟତା ପାଇଁ ଗୋଟିଏ କୋଠ ଆରମ୍ଭ କଲେ ଏବଂ ଚିତ୍ରକାରମାନେ କିପରି ସିଧାସଳଖ ଯାତ୍ରୀମାନଙ୍କୁ ପଟିଚିତ୍ର ବିକ୍ରି କରି ପାରିବେ ତାର ବ୍ୟବସ୍ଥାରେ ଲାଗିଲେ । ତାଙ୍କ ଚେଷ୍ଟାକୁ  ଭଣ୍ଡ କରିବା ପାଇଁ ଆନନ୍ଦ ମହାନ୍ତି ଦୁଇଟି କାମ କଲା । ସେ ପଟଚିତ୍ରର ନମୁନା ନେଇ କଲିକତା ଯାଇ ସେଠାରେ କଂସାରିପଡ଼ା ଆର୍ଟ ଷ୍ଟୁଡିଓ ଛାପାକଳରେ ଚିତ୍ରଟିର ରଂଗୀନ ପ୍ରତିଲିପି ବହୁ ସଂଖ୍ୟାରେ ଛପାଇ ଆଣିଲା ଓ ହାତ ତିଆରି ଚିତ୍ର ବଦଳରେ ତାକୁ ଆହୁରି ଶସ୍ତା ଦରରେ ବିକିଲା ।  କିଛି ଦିନ ପରେ ରଘୁରାଜପୁର ଯାଇ ସେ ହଜାର ସଂଖ୍ୟାରେ ଯାତ୍ରୀପଟି ବରାଦ କଲା ଓ କିଛି ନେଇ ବାକି ପରେ ନେବ ବୋଲି କାଗଜ ଲେଖାଇ ନେଲା । ଏହି ଦଲିଲରେ ଚିତ୍ରକାର ତାକୁ ପରେ କି ଜିନିଷ ଶହ ଶହ ଦେବେ ସେ କଥା ସ୍ପଷ୍ଟ ଲେଖା ହେଲା ନାହିଁ । ଏଥର ଆନନ୍ଦ କଚେରୀରେ ମକଦ୍ଦମା କଲା ଯେ ଚିତ୍ରକାରଙ୍କ ଠାରୁ ତାର ଶହ ଶହ ଟଙ୍କା(ଚିତ୍ର ନୁହେଁ!) ପ୍ରାପ୍ୟ ଅଛି । ଚିତ୍ରକାରମାନେ କେସ୍‌ରେ ହାରିଲେ ଏବଂ ତାଙ୍କ ହାତରୁ ଜମିବାଡ଼ି ଚାଲିଗଲା ।

ଏଥରକ ଚିତ୍ରକାରମାନେ ବାଧ୍ୟ ହୋଇ ତାଙ୍କର କୌଳିକ କାମ ଛାଡ଼ି ମାଟି ଖୋଳା, ପାନ ବରଜରେ ପାଣି ମଡ଼ାଇବା, ରାଜମିସ୍ତ୍ରୀ କାମକୁ ଆପଣାଇଲେ । ତାଙ୍କ ଭିତରୁ କେତେଜଣ ମୋହନ ଗୋସ୍ୱାମୀଙ୍କ ଯାତ୍ରା ଦଳରେ ଯୋଗ ଦେଲେ । ଏମାନଙ୍କ ଭିତରେ ଥିଲେ ପରବର୍ତ୍ତୀ ସମୟରେ ପ୍ରସିଦ୍ଧ କେଳୁ ଚରଣ ମହାପାତ୍ର ଓ ଜଗନ୍ନାଥ ମହାପାତ୍ର । ଥରେ ଚିତ୍ରକାରମାନେ ଷ୍ଟେସନ ପାଖରେ ଗୋପବନ୍ଧୁ ଦାସଙ୍କୁ ଭେଟିଲେ ଏବଂ ସେ ସେମାନଙ୍କୁ ଅରଟରେ ସୂତା କାଟିବାକୁ ଉପଦେଶ ଦେଲେ । କିଛି ଚିତ୍ରକାର ତଥାପି ଚିତ୍ରକାମ ନ ଛାଡ଼ି ଚିତ୍ର କରୁଥିଲେ ଏବଂ ନିଜ ଉଦ୍ୟମରେ ପୁରୀର ରାସ୍ତାଘାଟ ସମୁଦ୍ର କୂଳରେ ଯାତ୍ରୀମାନଙ୍କୁ ପଟି ବିକ୍ରି କରିବାକୁ ଚେଷ୍ଟା କରୁଥିଲେ । ଏ ହେଲା ଚିତ୍ରକାରମାନଙ୍କର ନିଜ ବେଉସାରୁ ବାହାରିଯିବାର କାହାଣୀ ।

ମୁଁ ରଘୁରାଜପୁରରେ କାମ କରିବା ବେଳକୁ ଜିଲି ସାହେବାଣୀଙ୍କ ସହିତ ବ୍ୟକ୍ତିଗତ ସଂପର୍କ ରଖିଥିବା ଅନେକ ଲୋକ ଜୀବିତ ଥିଲେ ଏବଂ ତାଙ୍କ କଥା ଭଲ ଭାବେ ମନେ ରଖିଥିଲେ । (ଜଗନ୍ନାଥ ମହାପାତ୍ର କହୁଥିଲେ ଯେ ସେ ଅତି ସୁନ୍ଦରୀ ଥିଲେ) । ସେମାନେ ଅତି ସରାଗର ସହିତ ଜିଲିଙ୍କ କଥା କହୁଥିଲେ ଏବଂ ବାରମ୍ବାର ମତେ ବୁଝାଉଥିଲେ ତାଙ୍କ ଯୋଗୁ ସେମାନେ କିପରି ଅନ୍ୟ ଧନ୍ଦାରୁ ପୁଣି ଚିତ୍ରକାମକୁ ଫେରି ଆସିଥିଲେ । ତିରିଶ ବର୍ଷ ପୁରୁଣା କଥା ହେଲେ ବି ସେମାନେ ସାହେବାଣୀକୁ ଭୁଲି ନଥିଲେ । ତେବେ ସେମାନେ ଜିଲିର ବନାନ ତ ଦୂରର କଥା, ତାଙ୍କର ପୂରା ନାଁ ମଧ୍ୟ ମତେ କହି ପାରିଲେ ନାହିଁ । ତାଙ୍କଠାରୁ ଏତିକି ଜଣାପଡ଼ିଲା ଯେ ଜିଲି ପରିବାର ସହ ପୁରୀରେ ରହୁଥିଲେ ଏବଂ ତାଙ୍କ ସ୍ୱାମୀ ବରପାଲିରେ କାମ କରୁଥିଲେ । ମୋର ମନେ ପଡ଼ିଲା ଯେ ପଚାଶ ଦଶକରେ କିଛି ଗୋରା ଲୋକ ବରପାଲିରେ ଗ୍ରାମ ଉନ୍ନୟନ କାମ କରୁଥିଲେ; ସେତେବେଳେ ଓଡ଼ିଶା ସାରା ପ୍ରଚଳିତ ବରପାଲି ପାଇଖାନା ଏଇମାନଙ୍କର ଉଦ୍‌ଭାବନ ଥିଲା । ମୋର କିପରି ଧାରଣା ଥିଲା ଯେ ଏମାନେ ଆମେରିକାର କ୍ୱେକର ଖ୍ରୀଷ୍ଟିଆନ ସଂପ୍ରଦାୟର ଥିଲେ । ଦିଲ୍ଲୀର କ୍ୱେକର ସଂସ୍ଥାରୁ ଜଣାଗଲା ଯେ ସେମାନେ American Friends Service Committee(AFSC) ନାମକ ଅନୁଷ୍ଠାନ ଗଢ଼ି ବରପାଲିରେ କାମ କରୁଥିଲେ; ପଚାଶ ଦଶକରେ ବରପାଲିରେ କାମ କରୁଥିଲେ ଏହି ସଂସ୍ଥାର Philip Zealey । ତାଙ୍କଠାରୁ ଠିକଣା ନେଇ ମୁଁ ଫିଲିପ ଓ AFSCର Pennsylvania ଅଫିସ ସହିତ ଯୋଗାଯୋଗ କଲି । ୧୯୭୯ରେ Halina Zealeyଙ୍କର ଦେହାନ୍ତ ହୋଇଥିଲା

ଓ ଫିଲିପ ବର୍ତ୍ତମାନ UNOର ରେଙ୍ଗୁନ ଅଫିସରେ କାମ କରୁଥିଲେ । ସେ ମତେ ଅନେକ ତଥ୍ୟ ଯୋଗାଇଲେ ଓ ଆମେରିକାରୁ ସେ ସମୟର AFSC କାଗଜପତ୍ରର ନକଲ ପଠାଇଲେ । ଏଇ ସମୟରେ ମୋର ଆଖିରେ ପଡ଼ିଲା C. Ross Smithଙ୍କର A Time in India(1961) ବହି । ସେ ପୁରୀରେ ୧୯୫୨ରେ ଜିଲି ଦମ୍ପତି ଏବଂ ତାଙ୍କର ଛୋଟ ଝିଅ ନିନା ଓ ରୋଜମେରିଙ୍କ ସହିତ କିଛି ଦିନ କଟାଇଥିଲେ । ପରେ ମତେ ସୁଯୋଗ ମିଳିଲା ଲଣ୍ଡନ Museum of Mankindରେ ସେମାନଙ୍କୁ ହାଲିନା ଦେଇଥିବା କେତେକ କାଗଜ ଦେଖିବାର ।

ଜିଲି ସାହେବାଣୀ ବା ହାଲିନା ଜିଲିଙ୍କ ଜନ୍ମ ପୋଲାଣ୍ଡରେ । ଦ୍ୱିତୀୟ ମହାଯୁଦ୍ଧ ବେଳେ ପୋଲାଣ୍ଡ ଜର୍ମାନୀ ଓ ରୁଷିଆର ଅଧିକାରରେ ଥିବା ବେଳେ ସ୍କୁଲ ଛାତ୍ରୀ ହାଲିନା ରାଜଧାନୀ ୱାର୍ସରେ ଛ ବର୍ଷ କାଳ Polish Undergroundର ସକ୍ରିୟ ସଭ୍ୟା ଥିଲେ । ଫିଲିପଙ୍କୁ ବାହା ହେବା ପରେ ସେ ସପରିବାର ପୁରୀରେ ରହିଲେ । ସେଠାରେ ସେମାନେ ସମୁଦ୍ର କୂଳ ବାପ୍ଟିଷ୍ଟ ମିଶନ ବଙ୍ଗଳାରେ ରହି ଓଡ଼ିଆ ଶିଖୁଥିଲେ; ଫିଲିପ ଶନି ରବିବାର ପୁରୀରେ ରହି ବାକି ଦିନ ଚାଲିଯାଉଥିଲେ ବରପାଲିରେ କାମ କରିବା ପାଇଁ ।

ପ୍ରଫେସର ନିର୍ମଳ କୁମାର ବସୁ ସେତେବେଳେ AFSCର ପରାମର୍ଶଦାତା ଥିଲେ ଓ ଜୁନ ୧୯୫୨ରେ ପୁରୀ ଆସିଥିବା ବେଳେ ହାଲିନାଙ୍କୁ ପୁରୀର ଚିତ୍ରକାର ଓ ପଥୁରିଆଙ୍କ କାମ ସହିତ ପରିଚିତ କରାଇଥିଲେ । ଏବଂ ହାଲିନା ଏହି ସୁନ୍ଦର କାରୁକାର୍ଯ୍ୟ ଦେଖି ମୁଗ୍ଧ ହୋଇ ଯାଇଥିଲେ । ଦିନେ ସମୁଦ୍ରକୂଳରେ ବୁଲିବା ବେଳେ ସେ ଯାତ୍ରୀପଟି ବିକ୍ରି କରୁଥିବା ପାଣୁ ମହାରଣାଙ୍କୁ ଭେଟିଲେ ଓ ପରଦିନ ଫିଲିପଙ୍କୁ ନେଇ ପାଣୁର ଗାଁ ଦାଣ୍ଡସାହିକୁ ଗଲେ । ସେଠାରେ ସେ ଚିତ୍ରକାରଙ୍କୁ ଭେଟି ପାଞ୍ଚ ଇଞ୍ଚରେ ଚାରି ଇଞ୍ଚ ଆକାରର କିଛି ପଟଚିତ୍ର କିଣିଲେ ଗୋଟିକୁ ଚାରି ଅଣା(ବର୍ତ୍ତମାନର ପଚିଶ ପଇସା) ଦରରେ । ସେ ଚିତ୍ରକାରଙ୍କୁ କହିଲେ ଯେ ଆହୁରି ଭଲ ଚିତ୍ର ହେଲେ ସେ ବେଶି ଦାମ ଦେଇ କିଣିବେ ।

ଦାଣ୍ଡସାହି ବାଲା କିନ୍ତୁ ହାଲିନାଙ୍କୁ ଜଣାଇଲେ ନାହିଁ ଯେ ପାଖ ଗାଁ ରଘୁରାଜପୁରରେ ତାଙ୍କର ଜ୍ଞାତି ଭାଇ ମଧ୍ୟ ଚିତ୍ରକାମ କରନ୍ତି । ଏ କଥା ସେ ପରେ ଶୁଣିଲେ ଚନ୍ଦନପୁରରେ ଜଣେ କଦଳୀ ବିକାଳି ପାଖରୁ । କିଛି ଦିନ ପରେ ହାଲିନା ସେଠାକୁ ମଧ୍ୟ ଗଲେ ଏବଂ ସେ ଗାଁରୁ ଚିତ୍ର କିଣିଲେ । ସେ ଘୋଷଣା କଲେ ଯେ ସେ ଭଲ ଚିତ୍ର ପାଇଁ ଗୋଟିଏ ପ୍ରତିଯୋଗିତା କରିବେ ଓ ସେଥିପାଇଁ ପୁରସ୍କାର ଦେବେ ।

ଛ ମାସ ପରେ ପ୍ରତିଯୋଗିତା ହୋଇ ଏଥିରେ ରଘୁରାଜପୁରର ଅଗାଧୁ ଓ ଲକ୍ଷ୍ମଣ ଦଶ ଦଶ ଟଙ୍କା ପୁରସ୍କାର ପାଇଲେ । ପ୍ରକୃତରେ ତାଙ୍କର ଚିତ୍ର କୁଆଡ଼େ ଆଙ୍କି ଦେଇଥିଲେ ଦାଣ୍ଡସାହିର ପାଣୁ ଓ ପୁରୀର ଦାମ ମହାରଣା । ଦାଣ୍ଡ ସାହି ବାଲା କହିଲେ, ରଘୁରାଜପୁରିଆ ଯଦି ପଟି ଆଙ୍କିବେ, ତେବେ ପାନ ବରଜରେ ପାଣି ମଡ଼େଇବ କିଏ ? ଅପମାନିତ ହୋଇ ରଘୁରାଜପୁରର କିଛି ଚିତ୍ରକାର ଯାଇ ଜଗନ୍ନାଥ ମହାପାତ୍ରଙ୍କୁ ଭେଟିବାକୁ ସ୍ଥିର କଲେ ।

ଚଉତିରିଶ ବର୍ଷ ବୟସ୍କ ଜଗନ୍ନାଥ ମହାପାତ୍ର ଯଦିଓ ଭଲ ଚିତ୍ରକର ଥିଲେ ଏବଂ ଗାଁରେ ତାଙ୍କର ଭଲ ନାଁ ଥିଲା, ସେ ବର୍ତ୍ତମାନ ଦିନରେ ମଜୁରୀ ଖଟୁଥିଲେ ଓ ରାତିରେ ମୋହନ ଗୋସ୍ୱାମୀଙ୍କ ଯାତ୍ରା ଦଳରେ କାମ କରୁଥିଲେ । ଗାଁ ବାଲା ତାଙ୍କୁ ସନ୍ଧ୍ୟାବେଳେ ପୁରୀରେ ଭେଟିବା ବେଳକୁ ସେ ସେଇ ରାତିର ଯାତ୍ରା ପାଇଁ ରିହର୍ସାଲ କରୁଥିଲେ । ସେ ତାଙ୍କ ପାଖରୁ ଦାଣ୍ଡସାହିବାଲାଙ୍କ ଟାହୁଲି କଥା ଶୁଣିଲେ କିନ୍ତୁ କିଛି କହିଲେ ନାହିଁ । ପରଦିନ ସକାଳେ ଜଗନ୍ନାଥ ଗାଁକୁ ଫେରି ଆସିଲେ ଓ ନିଜର ପୁରୁଣା ଟ୍ରଙ୍କରୁ ରଂଗ ତୁଳୀ ପଟି ସରଂଜାମ ବାହାର କଲେ ।

ହାଲିନା ନିଜକୁ ଏଥରକ ଚିତ୍ରକାରଙ୍କ ସେବାରେ ପୂରାପୂରି ନିଯୋଜିତ କରିଦେଲେ । ତାଙ୍କର ଲକ୍ଷ୍ୟ ରହିଲା କିପରି ଚିତ୍ରକାରମାନେ ପୁଣି ନିଜ କାମକୁ ଫେରି ଆସିବେ, ଏବଂ ଭଲ ଚିତ୍ର ତିଆରି କରିବେ । ସେ ୮୨ ଜଣ ଚିତ୍ରକାରଙ୍କ ସହିତ ଘନିଷ୍ଠ ହୋଇଗଲେ ଏବଂ ସେମାନେ ବେଳା ଅବେଳାରେ ତାଙ୍କ ପାଖକୁ ସାହାଯ୍ୟ ଓ ଉପଦେଶ ପାଇଁ ଆସୁଥିଲେ । ଯଦିଓ ସେମାନେ ତାଙ୍କ ଘରେ ପାଣି ଛୁଉଁ ନଥିଲେ, ବାପ୍ଟିଷ୍ଟ ବଙ୍ଗଳାରେ ଚିତ୍ରକାରଙ୍କର ମେଳା ଲାଗି ରହୁଥିଲା ।

ପଟଚିତ୍ର ବିକ୍ରି ପାଇଁ ହାଲିନା କଲିକତା, ବମ୍ବେ, ଦିଲ୍ଲୀରେ ପ୍ରଦର୍ଶନୀର ଆୟୋଜନ କଲେ । ସେ Bengal Home Industries Association ଓ Indian Institute of Art and Industry ସହିତ ଯୋଗାଯୋଗ କରି ଚିତ୍ର ପ୍ରଦର୍ଶନୀ ଓ ବିକ୍ରୟର ବ୍ୟବସ୍ଥା କଲେ । ଏମାର ମଠ ମହନ୍ତଙ୍କୁ ଲେଖି ରଘୁନନ୍ଦନ ଲାଇବ୍ରେରୀରେ ପଟଚିତ୍ର ବିକ୍ରି ପାଇଁ ଜାଗା କଲେ । ଏ ସବୁ ପାଇଁ ଲେଖି ଲେଖି ତାଙ୍କୁ AFSCରୁ ମିଳିଥିଲା ପାଞ୍ଚ ଶହ ଟଙ୍କା ।

ହାଲିନା ପଠାଇଥିବା କିଛି ପଟଚିତ୍ର AFSC ଜରିଆରେ ଭାରତୀୟ କଳା ବିଶେଷଜ୍ଞ Prof. Stella Kramrischଙ୍କ ପାଖରେ ପହଞ୍ଚିଲା । AFSC ତାଙ୍କ

ପାଖରୁ 'Halina's self-developed project' ପାଇଁ ଉପଦେଶ ବା ମାର୍ଗଦର୍ଶନ ଚାହିଁଲେ । Kramrisch ପଚିଶଟିରୁ ବାଇଶଟି ଚିତ୍ର ବିକ୍ରି କରି ପାରିଲେ ଓ ଆହୁରି ୧୨୨ଟି ପାଇଁ ବରାଦ ଓ ଅଗ୍ରୀମ ପାଇଲେ । ସେ ମତ ଦେଲେ ଯେ ଏ କଳା ପାଇଁ ଆମେରିକାରେ ପୃଷ୍ଠପୋଷକତା ପାଇବା ସମ୍ଭବ ।

ଓଡ଼ିଶାର ରାଜ୍ୟପାଳ ଫଜଲ ଅଲି ପୁରୀ ଯାଇଥିବା ବେଳେ ହାଲିନା ତାଙ୍କୁ ଦୁଇଟି ପଟଚିତ୍ର ଦେଲେ କଟକ ରାଜଭବନ ପାଇଁ । କିଛି ଦିନ ପରେ, ସ୍ୱାଧୀନତା ଦିବସ ପୂର୍ବ ୧୪ ଅଗଷ୍ଟ ୧୯୫୩ ଦିନ ଫିଲିପ ଓ ହାଲିନା ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଭେଟି କିଛି ପଟଚିତ୍ର ଉପହାର ଦେଲେ । ମୁଖ୍ୟମନ୍ତ୍ରୀ ଶୁଣି ଆଶ୍ଚର୍ଯ୍ୟ ହେଲେ ଯେ କଲିକତା ବମ୍ବେ ଦିଲ୍ଲୀରେ ମଧ୍ୟ ଲୋକେ ଓଡ଼ିଶାର ଚିତ୍ର ବିଷୟରେ ଆଗ୍ରହୀ । ସେ ହାଲିନାଙ୍କୁ ଏ ବିଷୟରେ ଗୋଟିଏ ମେମୋରାଣ୍ଡମ ଦେବାକୁ କହିଲେ । ହାଲିନା ଓ ଫିଲିପ ତାଙ୍କୁ ଗୋଟିଏ ନୋଟ ଦେଲେ ଯାହା ୧୬ ଅଗଷ୍ଟରେ ହେଉଥିବା କ୍ୟାବିନେଟ ସଭାରେ ଉପସ୍ଥାପିତ କରାଗଲା ଏବଂ ନୋଟ୍‌ରେ ପରାମର୍ଶ ଦିଆଯାଇଥିବା ଏକ Artistic Crafts Marketing Organisation ଖୋଲା ଯିବାର ନିଷ୍ପତ୍ତି ନିଆଗଲା । ମୁଖ୍ୟମନ୍ତ୍ରୀଙ୍କ ସଭାପତିତ୍ୱରେ ଯେଉଁ Cottage Industries Board ଥିଲା, ସେଥିରେ ହାଲିନାଙ୍କୁ ସଭ୍ୟ କରାଗଲା ଏବଂ ତାଙ୍କୁ ପୁରୀର Arts and Crafts Centre ଚଳାଇବାର ଦାୟିତ୍ୱ ଦିଆଗଲା । ତାଙ୍କୁ ଅନୁରୋଧ କରାଗଲା ପୁରୀ ହାତକାମର ଗୋଟିଏ କ୍ୟାଟାଲଗ ତିଆରି କରିବା ପାଇଁ । ମୁଖ୍ୟମନ୍ତ୍ରୀ ବର୍ତ୍ତମାନ ତାଙ୍କ ବକ୍ତୃତାରେ ଓଡ଼ିଶାର କଳାକୁ 'discovered by American friends' ବୋଲି କହୁଥିଲେ ।

ସେହି ବର୍ଷ ନଭେମ୍ବର ୫ରୁ ୧୩, ହାଲିନା ପୁରୀରେ ଗୋଟିଏ Artistic Crafts Exhibition କଲେ ଯାହାର ଉଦ୍‌ଘାଟନ କଲେ ମୁଖ୍ୟମନ୍ତ୍ରୀ । ଏ ସବୁ କାମ ପାଇଁ AFSCରୁ କିଛି ଟଙ୍କା ମାଗିବାରେ ସେ ୨୪ ତାରିଖରେ ତାରରେ ଉତ୍ତର ପାଇଲେ APPROVE THREE THOUSAND RUPEES REVOLVING FUND CONGRATULATIONS ON SUCCESSFUL EXHIBITION.

୧୯୫୪ ଆରମ୍ଭରେ ଫିଲିପ ଦିଲ୍ଲୀକୁ ବଦଳିର ଆଦେଶ ପାଇଲେ । ଓଡ଼ିଶା ଛାଡ଼ିବା ଆଗରୁ ହାଲିନା ଆଉ ଗୋଟିଏ ପ୍ରତିଯୋଗିତା କରିବାକୁ ଚାହିଁଲେ । ଏ ପ୍ରତିଯୋଗିତା ହେଲା କଟକରେ ଉତ୍କଳ ବିଶ୍ୱବିଦ୍ୟାଳୟରେ । ଏଥିରେ ପ୍ରଥମ ହେଲା ଜଗନ୍ନାଥ ମହାପାତ୍ରଙ୍କର ଗଣେଶ ପଟଚିତ୍ର । ଏହାର ପ୍ରକୃତ କାରିଗର କିଏ ସେ ବିଷୟରେ

ଏଥରକ କୌଣସି ସନ୍ଦେହ ନ ଥିଲା । ଏହି ଚିତ୍ରଟି ବର୍ତ୍ତମାନ ଲଣ୍ଡନର Museum of Mankindର Zealy Collectionରେ ଅଛି । ଏହି ପଟର ବିଶେଷତ୍ୱ ଥିଲା ଯେ ଏହାର ଧଡ଼ିରେ ଚିରାଚରିତ ଫୁଲ, ଲତା ଇତ୍ୟାଦି ବଦଳରେ ମୂଷାର ଚିତ୍ର ଥିଲା ।

ହାଲିନା ୩୧. ୩. ୧୯୫୪ରେ Arts & Crafts Centreରୁ ଅବ୍ୟାହତି ନେଲେ ଓ କିଛି ଦିନ ପରେ ଜିଲି ପରିବାର ପୁରୀ ଛାଡ଼ିଲେ ଦୁଇ ବର୍ଷରୁ ଊର୍ଦ୍ଧ୍ୱ ସମୟ ରହିବା ପରେ ।

ମୋର ଗବେଷଣାର ବହି ଲେଖିବା ବେଳେ ମୋ ଆଗରେ ସମସ୍ୟା ଥିଲା ଆମର କଳାକୁ ଉଜ୍ଜୀବିତ କରିବା ପାଇଁ ଜଣେ ଗୋରା ବିଦେଶିନୀଙ୍କୁ କେତେ ସ୍ୱୀକୃତି ଓ ସମ୍ମାନ ଦିଆଯିବ । ଶେଷରେ ତଥ୍ୟ ଓ ଯୁକ୍ତି ଆଗରେ ମୋର ଭାବପ୍ରବଣତା ହାର ମାନିଲା । ମୁଁ ବୁଝିଲି ଯେ ଯେଉଁମାନେ ଉପକୃତ ହୋଇଛନ୍ତି ଏବଂ ସେମାନେ ଯାହା ପାଖରୁ ଉପକାର ପାଇଛନ୍ତି ବୋଲି ଭାବୁଛନ୍ତି, ସେହି ଉପକୃତ ଓ ଉପକାରିଣୀଙ୍କ ମଝିରେ ମୋର କୌଣସି ସ୍ଥାନ ନାହିଁ ।

ତେଣୁ ମୁଁ ମୋ **Puri Paintings**(Arnold-Heinemann, 1982)ବହିରେ ଗୋଟିଏ ପରିଚ୍ଛେଦରେ ଘଟଣାଟିକୁ ଲେଖିଲି ଯେପରି ଘଟିଥିଲା, ଏବଂ ଏହାର ଶେଷକଲି ଏପରି :

Halina Zealey had achieved the impossible. She had brought back a whole community of Chitrakars to a profession which was traditionally their own but which they had abandoned under compelling circumstances. She had achieved this single-handed, with a meagre grant of Rs.3500, her halting Oriya and an infinite love for the Puri paintings and their makers.

(ମୁଁ ଭାବୁଥିଲି ପରିଚ୍ଛେଦକୁ ଦୁଇ ଭାଗ କରି ତାର ଶୀର୍ଷକ ଦେବି The Middleman of Puri ଏବଂ Enter, the Memsahib । ମୋର ପ୍ରକାଶକଙ୍କର ସଂପାଦିକା କିନ୍ତୁ କହିଲେ ଯେ ଗବେଷଣାମୂଳକ ବହିରେ ଏପରି ଚପଳ ହାଲୁକା ଭାଷା ଚଳିବ ନାହିଁ । ତେଣୁ ପରିଚ୍ଛେଦ ନାଁ ରହିଲା ସାଦାସିଧା Decline and Revival ।)

*ଅକ୍ଟୋବର ୨୦୧୫*

# ସାହିତ୍ୟର ଭାଷା

ଏ ଭଳି ଏକ ମତ ଅଛି ଯେ ସାହିତ୍ୟରେ, ଏବଂ ବିଶେଷରେ ଗଳ୍ପ ଉପନ୍ୟାସ ନାଟକରେ, ସର୍ବସାଧାରଣଙ୍କର ସରଳ କଥିତ ଭାଷା ବ୍ୟବହାର ହେବା ଉଚିତ। ଲେଖାରେ କି ଭଳି ଭାଷା ବ୍ୟବହାର କରିବ, ଲେଖକ ଆଗରେ ସବୁବେଳେ ଏ ପ୍ରଶ୍ନଟି ଥାଏ। ଆମର ଭାଷା ଓ ସାହିତ୍ୟ ପରିପ୍ରେକ୍ଷୀରେ ପ୍ରଶ୍ନଟି ହେଲା ସେ ସଂସ୍କୃତର ତତ୍‌ସମ ବା ତା ଦ୍ୱାରା ପ୍ରଭାବିତ ତଦ୍‌ଭବ ଶବ୍ଦ ସଂକୁଳ ଭାଷାରେ ଲେଖିବ ନା ଦେଶଜ ଶବ୍ଦ ଓ ଭାଷା ବ୍ୟବହାର କରିବ। ଏ ପ୍ରଶ୍ନ ଆମ ସାହିତ୍ୟରେ ଅନେକ ପୁରୁଣା, ସାରଳା ଦାସ ଓ ଜଗନ୍ନାଥ ଦାସଙ୍କ ଠାରୁ। ସଂସ୍କୃତର ଆଧିପତ୍ୟ ଭାଙ୍ଗି ଲୋକଙ୍କ ପାଖରେ ପହଞ୍ଚିବା ପାଇଁ ସେମାନେ ଦାଣ୍ଡି ମହାଭାରତ ଓ ତେଲି ଭାଗବତ ଲେଖିଲେ ଏବଂ ସେହି ଦିନଠାରୁ ଓଡ଼ିଆ ଭାଷା ଓ ସାହିତ୍ୟର ମୂଳଦୁଆ ପଡ଼ିଲା। ବର୍ତ୍ତମାନର ଓଡ଼ିଆ ଭାଷା ସେତେବେଳର ଓଡ଼ିଆଠାରୁ ବିଶେଷ ବିଚ୍ୟୁତ ହୋଇନାହିଁ।

ମଝିରେ କିନ୍ତୁ ଏକ ବିରାଟ ପରିବର୍ତ୍ତନ ଆସିଥିଲା ରୀତିଯୁଗ କାବ୍ୟରେ, ଉପେନ୍ଦ୍ର ଭଂଜ ପ୍ରମୁଖଙ୍କ ଲେଖାରେ। ରାଜାମାନଙ୍କ ସଭାରେ ଏ ଭଳି ସଂସ୍କୃତ ଆଶ୍ରିତ ଭାଷାର ଅଳଙ୍କାରବହୁଳ ଲେଖା ଆଦର୍ଶ ଭାବେ ଗଣା ହେଲା। ଏ କବିତାମାନ ପଣ୍ଡିତମାନଙ୍କର ବିଶ୍ଳେଷଣ ଓ ବ୍ୟାଖ୍ୟା ସାପେକ୍ଷ ଥିଲା, ଯେପରି ସାଂପ୍ରତିକ ସମୟରେ ପାଶ୍ଚାତ୍ୟ ସାହିତ୍ୟର ଇଲିଅଟ ଭଳି କବିଙ୍କ ଲେଖାର। ଆମର ସେ ସମୟର କବିମାନେ ନିଶ୍ଚୟ ଦୈନନ୍ଦିନ କଥାବାର୍ତ୍ତାରେ ଲୋକ ପ୍ରଚଳିତ ଭାଷା ବ୍ୟବହାର କରୁଥିଲେ, କିନ୍ତୁ କବିତା ଲେଖିବା ବେଳେ ରାଜକୀୟ ସଂସ୍କୃତ ପୋଷାକ ପିନ୍ଧୁଥିଲେ। କାବ୍ୟର ଆରମ୍ଭରେ ଉପେନ୍ଦ୍ର ଜଣାଇ ଦେଉଥିଲେ ଯେ ଲେଖାଟି ପଣ୍ଡିତ କୋବିଦ ସୁଜ୍ଞ ସୁଜାଣମାନଙ୍କ ପାଇଁ ଉଦ୍ଦିଷ୍ଟ। ଲାବଣ୍ୟବତୀର ଆରମ୍ଭରେ ସେ ଏ କଥା ମଧ

ଆଶା କରିଥିଲେ ଯେ 'ବୁଝାଇଲେ ଜଡ଼ ଜନ ଭାବକୁ ପାଇବ' । ଏହି ବୁଝାଇବା କାମ ଦରବାରରେ ପଣ୍ଡିତ ଓ ସାଧାରଣରେ ପାଲା ଗାୟକଙ୍କ ଉପରେ ନ୍ୟସ୍ତ ଥିଲା, ଯେପରି ଇଲିଅଟଙ୍କୁ ବୁଝାଇବାର ଭାର ଥିଲା ଇଂରେଜୀ ଅଧ୍ୟାପକଙ୍କ ଉପରେ ।

ଆମ ଦେଶରେ ଯେତେବେଳେ ସାହିତ୍ୟର ଆରମ୍ଭ ହେଲା, ତାର ଭାଷା ଥିଲା ସଂସ୍କୃତ, ଯଦିଓ ଲୋକମାନେ ପ୍ରାକୃତ ଓ ଅପଭ୍ରଂଶରେ କଥାବାର୍ତ୍ତା କରୁଥିଲେ । ସଂସ୍କୃତ ନାଟକରେ ନୀଚବର୍ଗର ଲୋକ(ଯେଉଁଥିରେ ରାଣୀ ସମେତ ସମସ୍ତ ସ୍ତ୍ରୀ ଜାତି ଅନ୍ତର୍ଭୁକ୍ତ ଥିଲେ)ଙ୍କ ପାଇଁ ସଂଳାପ ଥିଲା ଏହି ଅସଂସ୍କୃତ ଭାଷାରେ । ଓଡ଼ିଶାରେ ଏହାର ଏକ ଉଦାହରଣ ହେଉଛି ଗଜପତିନା ଶ୍ରୀ କପିଳେନ୍ଦ୍ର ଦେବେନ ବିରଚିତୋୟଂ ବ୍ୟାୟୋଗଃ **ପରଶୁରାମ ବିଜୟ** । ଏହି ନାଟକରେ କାଳିଦାସ ପ୍ରମୁଖ ସଂସ୍କୃତ ନାଟ୍ୟକାରଙ୍କୁ ଅନୁକରଣ କରି କପିଳେନ୍ଦ୍ର(ଶାସନକାଳ ୧୪୩୫-୧୪୬୬) ନିଜର ସଂସ୍କୃତ ନାଟକରେ ଚନ୍ଦ୍ରକଳାଙ୍କ ମୁହଁରେ ନିମ୍ନଭଳି ଓଡ଼ିଆ ସଂଳାପ ଓ ଗୀତ ଦେଇଛନ୍ତି :

ଚନ୍ଦ୍ରକଳା : ଅଜ୍ଜ ଶୁଣି ଅଜ୍ଜୁ । ଆର୍ଯ୍ୟ ଶ୍ରୂୟତାମ । ଗୀତାଭିନୟ କରିବା । ଅମର ରାଗେଣ ଗୀୟତେ । କେବଣ ମୁନିବର, ପରଶୁ ଦକ୍ଷିଣ କର, ବାମେଣ ଶୋହେ ଧନୁଶର ନା ॥ କୋପେଣ ବୋଲଇ ବୀର ତ, ତୁ ସେ ମୋ ବଧିଲୁ ତାତ, ଆଜ ତୋର ଛେଦିବଇଁ ମାଥ ନା ॥ ଶୁଣ ରାଜନ ହୋ କିଏ ତୋର ରାଜ୍ୟ ବ୍ରହ୍ମ ବଧେ ନା ॥

(ଡ: ଦଶରଥ ଓଝା ତାଙ୍କର **ହିନ୍ଦୀ ନାଟକ- ଉଦ୍‌ଭବ ଔର ବିକାଶ** ବହିରେ ଏହାକୁ ପୁରୁଣା ହିନ୍ଦୀବୋଲି କହିଛନ୍ତି ଯାହା ସଂପୂର୍ଣ୍ଣ ଭୁଲ ।)

ଓଡ଼ିଆ କବିମାନଙ୍କ ପାଇଁ ଉଚ୍ଚ ନୀଚ ବର୍ଗ ଭେଦରେ ତତ୍‌ସମ ଓ ତଦ୍‌ଭବ-ଦେଶଜ ଶବ୍ଦ ବ୍ୟବହାର ପାଇଁ କୌଣସି ନିୟମ ନଥିଲା । ତେବେ କବିମାନେ ସେମାନଙ୍କ କାବ୍ୟକୁ ଅଳଙ୍କାର ମଣ୍ଡିତ କରିବା ପାଇଁ ସଂସ୍କୃତ ଶବ୍ଦ ବ୍ୟବହାର କରୁଥିଲେ । ତଥାପି କବି ସବୁବେଳେ ଚଳିତ ଭାଷାରୁ ନିଜକୁ ଦୂରରେ ରଖିବ କିପରି ? ସ୍ୱୟଂ ଉପେନ୍ଦ୍ର ଭଂଜ ନିଜ କାବ୍ୟରେ ଯେଉଁ ନିତିଦିନିଆ ଓଡ଼ିଆ ଭାଷା ବ୍ୟବହାର କରିଛନ୍ତି ତାର କେତୋଟି ଉଦାହରଣ ହେଲା :

କି କଲ ବୋଲି ଲାଗିଲା ନ ଲାଗିଲା ଚେତୁଆଇ ସେ ନବୀନା । ନାଥ ହାତ ଧରି ଚାଟୁଆଇ ନେବେ ତୋତେ । ହସିଲା ହସିଲା ହୋଇ ସଜନୀଏ ବୋଲି । ଯଥାକଥା

କରି ତାକୁ ଜଣାଣ ଲେଖିବା । ଏମନ୍ତରେ ଗଲା ତହିଁ କେତେ ସମ୍ବତ୍ସର । କିସ ପୁଣି ଦେଖା ନଯାଏ ଜିଇଥିଲେ ଜୀବରେ, ବିଷମ ସମସ୍ୟା ପୂରଣ ହେଲା ଏହି ଠାବରେ ॥ ମଥା ଟେକି କଥା ବୋଲନ୍ତେ, କିସ କହିବି କହି ଦିଅ ମୋତେ ॥ ଇତ୍ୟାଦି ।

ଏହି ଭଳି ସଂସ୍କୃତ ଓ ଦେଶଜ ଶବ୍ଦର ଏକତ୍ର ବ୍ୟବହାରକୁ ଅଳଂକାର ଶାସ୍ତ୍ରରେ ଗୁରୁଚଣ୍ଡାଳ ଦୋଷ ଆଖ୍ୟା ଦିଆଯାଇଛି । ସେହି ଦୃଷ୍ଟିରୁ ଭଂଜ ନିଶ୍ଚୟ ଦୋଷୀ । କିନ୍ତୁ ଏଥିପାଇଁ ବୋଧହୁଏ ଭୟଙ୍କର ଅପରାଧୀ ହେବେ ପରବର୍ତ୍ତୀ ସମୟର ରାଧାନାଥ ରାୟ । ତାଙ୍କର 'ଦରବାର' ଏହି ଅପରାଧରେ ଭରପୂର । ଏଥିରେ ବ୍ୟବହୃତ କିଛି ଉଦାହରଣ ହେଲା : କିମ୍ବା ଘନ କାଳେ ଉଛେ ବର୍ହ ଟୋଳି, କେକୀ ନାଚେ ଯଥା ଦୋହଲି ଦୋହଲି ॥ ଥରେ ଥରେ କାଶି ସାହେବୀ ଠାଣିରେ, ପୋଛଇ ବଦନ ରୋମାଲ କାନିରେ ॥ ତାଙ୍କର ଅନ୍ୟ କବିତା ମାନଙ୍କରେ ଅଛି : ବିକଳେ ରାବୁଁ ରାବୁଁ ଊର୍ଦ୍ଧ୍ୱେ ଉଡ୍ଡୀନ, ଉହୁଙ୍କି ଶିଶୁ କଙ୍କି ଦେଲା ଗିଳିଣ ॥ ଆଣ୍ଠୋଇ ଆୟୁଧ ଥୋଇ ଅବନୀରେ ଓଳଗି ହେଲେ ଅବଳା । ଇତ୍ୟାଦି ।

ଏ ସବୁକୁ ଦୋଷ କୁହାଯାଉଥିଲେ ମଧ୍ୟ ଏହି ଉଦାହରଣମାନ ଓଡ଼ିଆ ଭାଷାର ସଜୀବତାର ଲକ୍ଷଣ । ଏହି ଉଦାହରଣମାନଙ୍କୁ କେବଳ ସଂସ୍କୃତ ବା କେବଳ ଦେଶୀୟ ଶବ୍ଦ ଦେଇ ଲେଖିଲେ ତାହା ଏପରି ଦ୍ୟୋତକ ହେବ ନାହିଁ । ଏ ଭଳି ପ୍ରୟୋଗ ଓଡ଼ିଆ ଭାଷାର ଦୁର୍ବଳତା ନୁହେଁ, ଏହା ତାର ସାମର୍ଥ୍ୟ ଓ ଶକ୍ତି । ଏହାକୁ ବରଂ କୁହାଯାଇପାରେ ଗୁରୁଚଣ୍ଡାଳ ଗୁଣ ।

ଫକୀରମୋହନଙ୍କୁ ଶ୍ରେୟ ଦିଆ ଯାଇଥାଏ ତାଙ୍କ ଉପନ୍ୟାସରେ କଥିତ ଓଡ଼ିଆ ଭାଷା ପ୍ରୟୋଗ କରିଥିବାର । **ଛମାଣ ଆଠଗୁଣ୍ଠ**ର ଆରମ୍ଭ ହେଲା : ରାମଚନ୍ଦ୍ର ମଙ୍ଗରାଜ ଜଣେ ମଫସଲର ଜମିଦାର, ମଧ୍ୟ ମହାଜନ । ନଗଦ ଟଙ୍କା କାରବାରଠାରୁ ଧାନର ମହାଜନୀ ବେଶି । ଶୁଣାଯାଏ ଆଡେ ଦୀର୍ଘେ ଚାରି କୋଶ ମଧ୍ୟରେ ଆଉ କାହାରି କାରବାର ଚଳେ ନାହିଁ । ଏହାକୁ ଯଦି ଚଣ୍ଡାଳ ଭାଷା ଆଖ୍ୟା ଦିଆଯାଏ, ତେବେ ସେହି ଉପନ୍ୟାସର ଶେଷରେ ଅଛି ଗୁରୁ ଭାଷାର ଉଦାହରଣ  ଅନନ୍ତ ଆକାଶରେ ସୂର୍ଯ୍ୟମଣ୍ଡଳର ଅତି ଊର୍ଦ୍ଧ୍ୱରେ ରତ୍ନସିଂହାସନରେ ଗୋଟିଏ ଜ୍ୟୋତିର୍ମୟୀ, ଶାନ୍ତିମୟୀ, ଆଶା ପ୍ରଦାୟିନୀ ସ୍ତ୍ରୀ ମୂର୍ତ୍ତି ବିରାଜିତା ।... ମଙ୍ଗରାଜଙ୍କ ଆତ୍ମା ସେହି ମୂର୍ତ୍ତିକୁ ଲକ୍ଷ୍ୟ କରି ଧାବିତ ହେଲା । ଏହା କେବଳ ବାକ୍ୟରୁ ବାକ୍ୟକୁ ଗୁରୁଚଣ୍ଡାଳ ଗୁଣର ବ୍ୟବହାର ନୁହେଁ,

ଗୋଟିଏ ସଂପୂର୍ଣ୍ଣ ଉପନ୍ୟାସରେ ଉଭୟ ଶୈଳୀର ସର୍ଜନଶୀଳ ପ୍ରୟୋଗ, ଯାହା ଭାଷା ଓ ସାହିତ୍ୟକୁ ଶକ୍ତି ଦେଇଛି ।

ଜଣେ କାହାଣୀ ଲେଖକ ଆଗରେ ପ୍ରଥମ ପ୍ରଶ୍ନ ରହେ ସେ ନିଜର ଚରିତ୍ରମାନଙ୍କ ପାଇଁ କି ପ୍ରକାର ଭାଷା ବ୍ୟବହାର କରିବ, ସାହିତ୍ୟିକ ଭାଷା ନା ଚଳିତ ଭାଷା । ଇଟାଲିର ଲେଖକ ଆଲବର୍ଟୋ ମୋରାଭିଆ ତାଙ୍କର 'ରୋମାନ୍ ଟେଲ୍ସ୍' ବହିର ଭୂମିକାରେ ଲେଖିଛନ୍ତି, ସେ ରୋମ୍‌ର ସାଧାରଣ ନିମ୍ନବର୍ଗର ଲୋକଙ୍କୁ ନେଇ ଗପ ଲେଖିବା ବେଳେ ତାଙ୍କ ଆଗରେ ଏହି ପ୍ରଶ୍ନଟି ଥିଲା । ସେ ନିଜର ଚରିତ୍ରମାନଙ୍କ ମୁହଁରେ ସାହିତ୍ୟିକ ଭାଷା ଦେଇଥିଲେ, ରାସ୍ତାଘାଟରେ ପ୍ରଚଳିତ ଭାଷା ନୁହେଁ । ଏହାର ସମର୍ଥନରେ ସେ କହିଥିଲେ, ସାହିତ୍ୟିକ ଭାଷା କଥିତ ଭାଷା ଅପେକ୍ଷା ଅଧିକ ସତ୍ୟ ଏବଂ କାବ୍ୟିକ ଭାବେ ଅଧିକ ଭାବବ୍ୟଂଜକ ।

ଗୋଟିଏ ସାହିତ୍ୟର ଯେତେବେଳେ ବିକାଶ ହୁଏ, ତାର ଭାଷା କଥିତ ଭାଷାଠାରୁ ସେତିକି ଦୂରେଇ ଯାଏ । ସାରଳା ଦାସଙ୍କ ମହାଭାରତରେ ଯେଉଁ ପ୍ରକାର କଥିତ ଭାଷାର ବ୍ୟବହାର ଥିଲା ଜଗନ୍ନାଥଙ୍କ ଭାଗବତ ବେଳକୁ ତା ରହିଲା ନାହିଁ । ଯଦିଓ ଭାଗବତ ଗାଁ ଗଣ୍ଡାରେ ପଢ଼ା ହେଉଥିଲା ଏବଂ ସାଧାରଣ ଲୋକ ତାକୁ ଶୁଣି ତାର ଆନନ୍ଦ ନେଉଥିଲେ, ସେମାନେ ଯେ ତାକୁ ସଂପୂର୍ଣ୍ଣ ବୁଝିପାରୁଥିଲେ ସେ କଥା କହି ହେବ ନାହିଁ । ଉଦାହରଣ ସ୍ୱରୂପ ଭାଗବତରେ ଅଛି :

ଜୀମୂତଗଣ ଯାର କେଶ । ସନ୍ଧ୍ୟା ଯାହାର ନିଜ ବାସ ॥
ପ୍ରକୃତି ହୃଦୟ ଯାହାର । ମନ ଯାହାର ନିଶାକର ॥
ପକ୍ଷିଏ ଯାର ବ୍ୟାକରଣ । ବୁଦ୍ଧି ବିଷୟ ମନଗଣ ॥

ଏହି ପଦମାନଙ୍କରେ ବ୍ୟବହୃତ ସଂସ୍କୃତ ବହୁଳ ଭାଷା ଓ ଅମୂର୍ତ୍ତ ଭାବ ନିଶ୍ଚିତ ଭାବେ ଗାଁର ଅପାଠୁଆ ଲୋକଙ୍କ ପାଇଁ ଦୁର୍ବୋଧ୍ୟ ଥିଲା ।

ସଂସ୍କୃତମଣ୍ଡିତ ଭାଷାରେ ଲେଖିବାର ଆଉ ଗୋଟିଏ ଧାରା ଆରମ୍ଭ ହେଲା ପୌରଣିକ, ଧାର୍ମିକ ବିଷୟକୁ ନେଇ ଗଳ୍ପ ଉପନ୍ୟାସ ଲେଖିବା ବେଳେ । ହିନ୍ଦୀରେ ଏ ଧାରାର ଜଣେ ପ୍ରମୁଖ ପ୍ରବର୍ତ୍ତକ ଥିଲେ ରାହୁଲ ସଂକ୍ରିତ୍ୟାୟନ(୧୮୯୩-୧୯୬୩) । ଓଡ଼ିଆରେ ମଧ୍ୟ ଲେଖକମାନେ ଏହି ନିୟମ ଅନୁସରଣ କରିଛନ୍ତି । ଉଦାହରଣ ସ୍ୱରୂପ, ସାରଳା ମହାଭରତର ସତ୍ୟ ଆମ୍ଭ ବର୍ଣ୍ଣନା କରିବାକୁ ଯାଇ ସୁରେନ୍ଦ୍ର ମହାନ୍ତି

କାହାଣୀକୁ ଏ ଭଳି ଆରମ୍ଭ କରିଛନ୍ତି : ମହାକାନ୍ତାରରେ ଘଞ୍ଚ ନିଚ୍ଛିଦ୍ର ଅରଣ୍ୟ ମଧ୍ୟରେ ଅଜ୍ଞାତବାସୀ ପାଣ୍ଡବ ପଞ୍ଚଭ୍ରାତାଙ୍କର ପର୍ଣ୍ଣକୁଟୀର ... ଅଶସ୍ତ୍ର ଅସହାୟ ବନବାସୀ । ଏ କଥାକୁ ଅତି ସରଳ ଓଡ଼ିଆରେ କୁହାଯାଇପାରିଥାନ୍ତା, କିନ୍ତୁ ସେଥିରେ ବୋଧହୁଏ ଶାସ୍ତ୍ରୀୟ ଗାମ୍ଭୀର୍ଯ୍ୟ ଆସିବ ନାହିଁ ବୋଲି ଏ ଭଳି ଭାଷା ବ୍ୟବହାର କରାଯାଇଛି ।

ଆମର ବୋଧହୁଏ ଏ ଭଳି ଏକ ଧାରଣା ଅଛି ଯେ ଗୁରୁତ୍ୱପୂର୍ଣ୍ଣ ବିଷୟକୁ କଠିନ ଭାଷାରେ ଲେଖିବା ଉଚିତ, ନ ହେଲେ ପାଠକମାନେ ତାକୁ ଗମ୍ଭୀରତାର ସହ ଗ୍ରହଣ କରିବେ ନାହିଁ । ସେଥିପାଇଁ ବିଦ୍ୱାନମାନେ ସେମାନଙ୍କ ଗବେଷଣାପ୍ରସୂତ ଲେଖାକୁ ଏପରି ଏକ କଟମଟ ଭାଷାରେ ଲେଖନ୍ତି ଯାହା ସାଧାରଣ ପାଠକ ପାଇଁ ଦୁର୍ଭେଦ୍ୟ ହୋଇଯାଏ । ଗଭୀର ତାତ୍ତ୍ୱିକ ବିଷୟକୁ ଯେ ସହଜ ସରଳ ଭାଷାରେ ଲେଖାଯାଇ ପାରେ ଇଂରେଜୀରେ ତାର ଉଦାହରଣ ସୁଧୀର କକଡ଼, ଆଶିଷ ନନ୍ଦୀ ଓ ମଧୁ କିଶ୍ୱରଙ୍କର ଲେଖା । ଦାର୍ଶନିକ ଭିଟଗେନଷ୍ଟାଇନ କହିଥିଲେ ଯେ ଗୋଟିଏ ଗମ୍ଭୀର ଓ ଉତ୍ତମ ଦାର୍ଶନିକ ବହି କେବଳ 'ଜୋକ୍' ବା ଟାହିଟାପରା ମାଧ୍ୟମରେ ଲେଖାଯାଇପାରେ ।

ଓଡ଼ିଆରେ ଗୁରୁଗମ୍ଭୀର ଭାଷାର ଆଉ ଏକ ଉଦାହରଣ ହେଉଛି ପ୍ରାବନ୍ଧିକମାନଙ୍କର ଭାଷା । ଗୋଟିଏ ଉଦାହରଣ ଉନବିଂଶ ଶତାବ୍ଦୀର : ଆମ୍ଭେମାନେ ଊର୍ଦ୍ଧ୍ୱ ନାମାଙ୍କିତ ମହାତ୍ମାଙ୍କର ରଚିତ ପୁସ୍ତକାବଳୀକୁ ସ୍ଥୂଳତଃ ଆଲୋଚନା ପର୍ବରେ କାବ୍ୟ ସମ୍ବନ୍ଧୀୟ ଅବଶ୍ୟ ଜ୍ଞାତବ୍ୟ କେତେଗୁଡ଼ିଏ ବିଷୟ ନିମ୍ନରେ ପ୍ରଦର୍ଶନ କରି ପଶ୍ଚାତ ତାଙ୍କର କାବ୍ୟ ସମୂହର ଯଥାଯଥ ଆଲୋଚନାରେ ପ୍ରବୃତ୍ତ ହେବୁଁ । (ଲାଲା ରାମନାରାୟଣ ଲାଲ, ନବସମ୍ବାଦ ପତ୍ରିକା, ୧୭.୧୧.୧୮୮୭) । ଅନ୍ୟ କେତୋଟି ନିକଟର ଉଦାହାରଣ ତଳେ ଦିଆଗଲା ।

ଦିଗନ୍ତର ବର୍ଣ୍ଣାଢ଼୍ୟ ଗାରିମାକୁ ପ୍ରସାରିତ ପକ୍ଷଛାୟାରେ ଢାଙ୍କି ଦେଇ ଧରିତ୍ରୀର ସ୍ନିଗ୍ଧ ସବୁଜ ଛାତି ଉପରେ ଏକ କ୍ଷୁଧାର୍ତ୍ତ ଶକୁନ ପରି ତାର ଉତ୍‌କ୍ଷେପ, ମୁହୂର୍ତ୍ତକ ମଧ୍ୟରେ ବିଚୂର୍ଣ୍ଣ କରିଦେଲା ସ୍ୱପ୍ନ ଓ ସାଧନାର ସ୍ୱର୍ଣ୍ଣ ସ୍ତମ୍ଭ ।(ଖଗେଶ୍ୱର ମହପାତ୍ର, ବନଲତା ଓ ଅଳକା) ।

ଅବିରାମ ଉଦ୍ଦାମ ସ୍ରୋତ ଉପରେ ମୁହୂର୍ତ୍ତଟିଏ ଦୃଷ୍ଟି ନିବଦ୍ଧ କଲେ ହିଁ ଜଣକୁ ଅବସନ୍ନ କରିବ ଅସହାୟବୋଧ । ଏ ଦୃଶ୍ୟମାନ ସ୍ରୋତ ଯେପରିକି ଏକ ଅଦୃଶ୍ୟ ଅପ୍ରତିରୋଧ୍ୟ ସ୍ରୋତର ପ୍ରତୀକ ତଥା ସଂକେତ । ... ଅନୁଚ୍ଚ ବୃକ୍ଷକୁ ଆଉଜି ଘାସମୟ କୂଳରେ ବସି ରହିଥିବା ଶୈଶବରୁ ସଦ୍ୟ ଉତୀର୍ଣ୍ଣ ବାଳକଟିଏ, ନଦୀ

ବକ୍ଷରେ ସେ ବଟବୃକ୍ଷ ଦୃଶ୍ୟମାନ ହେବା ମୁହୂର୍ତ୍ତଠୁଁ ଅପଲକ ପ୍ରାୟ ଅନାଇ ରହିଥିଲା ବୃକ୍ଷ ଏବଂ ପକ୍ଷୀ ସମ୍ବଳିତ ସେ ଚଳମାନ ଦୃଶ୍ୟକୁ ।(ମନୋଜ ଦାସ, ସମ୍ବାଦ ବାର୍ଷିକ ବିଶେଷାଙ୍କ, ୨୦୧୫) ।

ଯଦି ଉଦ୍ଦିଷ୍ଟ ପରିବର୍ତ୍ତନ ସଂଘଟିତ ହୁଏ, କ୍ରୋଧ ତିଷ୍ଠି ରହିବାର କିଛି କାରଣ ନ ଥାଏ ଏବଂ ତାହା ସ୍ୱତଃ ନିଷ୍କ୍ରାନ୍ତ ହୋଇଯାଏ । ଯଦି ପରିବର୍ତ୍ତନର ଆଶା ସୁଦୂର ପରାହତ ତା' ହେଲେ କ୍ରୋଧ, ଯାହା ଦୀର୍ଘ କାଳ ଧରି ଶୀର୍ଷାବସ୍ଥାରେ ରହିପାରେ ନାହିଁ, ହତାଶା ଓ ନିଷ୍ଫଳତା ବୋଧରେ ପୂର୍ବର ଉଗ୍ରତା ହରାଇ ତିଷ୍ଠି ରହେ, କିଛି କାଳ ପରେ ଶକ୍ତି ସଂଗ୍ରହ କରି ପୁଣି ଶୀର୍ଷାବସ୍ଥାରେ ପହଞ୍ଚେ, ତା ପରେ ପୁଣି ହତାଶା ଓ ନିଷ୍ଫଳତାବୋଧକୁ ଓହ୍ଲାଇ ଆସେ ।(ରମାକାନ୍ତ ରଥ, ଭୀମଭୋଇଙ୍କ ଦୃଷ୍ଟାନ୍ତ)

ଏଥିରୁ ଜଣାଯିବ ଯେ ପୌରାଣିକ, ଐତିହାସିକ ଓ ପ୍ରବନ୍ଧ ଲେଖା ପାଇଁ ତତ୍‌ସମ ଶବ୍ଦ ବ୍ୟବହାରର ଏକ ଅଲିଖିତ ନିୟମ ଅଛି ।

ତତ୍‌ସମ ତଦ୍‌ଭବ ଦେଶଜ ବାହାରେ ଲେଖକ ଆଗରେ ଆଉ ଏକ ପ୍ରଶ୍ନ ହେଲା, ଯଦି ଚରିତ୍ରଟି ଓଡ଼ିଆ ହୋଇ ନ ଥାଏ ଏବଂ ତାର ନିଜ ଭାଷାରେ କଥାବାର୍ତ୍ତା କରୁଥାଏ ତା ମୁହଁରେ କି ଭାଷା ଦିଆଯିବ ? ଏହାର ଏକ ସହଜ ସମାଧାନ ବାହାର କରାଯାଇଛି । ଚରିତ୍ରଟି ପ୍ରଥମେ ଦିଚାରି ପଦ ନିଜ ଭାଷାରେ କହିବା ପରେ ଓଡ଼ିଆରେ କଥା କହେ । 'ଛମାଣ ଆଠଗୁଣ୍ଠ'ର ସେକ କେରାମତ ଅଲି ଓ ଶେଖ ଦିଲଦାର ଇତ୍ୟାଦିଙ୍କ ସଂଳାପ ଏଇଭଳି ଥିଲା; ପ୍ରଥମେ ସାମାନ୍ୟ ପାର୍ସି ଓ ପରେ ପୂରା ଓଡ଼ିଆ । ସେହିପରି 'ମାମୁ'ର ଡସନ ସାହେବ ଦି ଚାରି ଶବ୍ଦ ଇଂରେଜୀରେ କହି ଓଡ଼ିଆକୁ ଆସିଗଲେ ।

ଆଉ ଏକ ପ୍ରକାରର ସମସ୍ୟା ହୁଏ ଗଳ୍ପ ନାଟକ ଉପନ୍ୟାସରେ ତଥାକଥିତ ଶିକ୍ଷିତ ଲୋକମାନଙ୍କ ମୁହଁରେ ସଂଳାପ ଦେଲା ବେଳେ । ଏ ଭଳି ଲୋକମାନେ ନିଜ ନିଜ ଭିତରେ କଥା କହିଲା ବେଳେ ଅଧା ସମୟ ଇଂରେଜୀରେ କଥାବାର୍ତ୍ତା କରିଥାନ୍ତି । ଏ ଭଳି ଚରିତ୍ର ପାଇଁ ବାସ୍ତବବାଦୀ ସଂଳାପ ଲେଖିଲେ ଅଧା ଲେଖା ଇଂରେଜୀ ହୋଇଯିବ । ଲେଖକ ସେଥିପାଇଁ ନିଜ ଲେଖାରେ ଏହି କଥାବାର୍ତ୍ତାର ଓଡ଼ିଆ ତର୍ଜମା କରି ଲେଖନ୍ତି । ଇଂରେଜୀ ଅନୁସରଣରେ ବର୍ତ୍ତମାନ ହଂସଗୀତି, ବିହଙ୍ଗମ ଦୃଷ୍ଟି ଓ କୁମ୍ଭୀର କାନ୍ଦଣା ଭଳି ଅନୁବାଦ ଆମର ଦେହସୁଆ ହୋଇଗଲାଣି ।

ଗଦ୍ୟରେ ଇଂରେଜୀ ଶବ୍ଦର ବ୍ୟବହାର ଅନେକ ଦିନରୁ ପ୍ରଚଳିତ ଥିବା ବେଳେ କବିତାରେ ଏହାର ବ୍ୟବହାର ନଥିଲା । ବଙ୍ଗଳା କବି ଜୀବନାନନ୍ଦ ଦାଶ ଯେତେବେଳେ ତାଙ୍କର ଗୋଟିଏ କବିତାରେ ଫୁଟବଲ ଶବ୍ଦ ବ୍ୟବହାର କଲେ, ସମସାମୟିକ ଲେଖକ ବୁଦ୍ଧଦେବ ବସୁ ଚମତ୍କୃତ ହୋଇ ଯାଇଥିଲେ । ଓଡ଼ିଆ କବିତାରେ ମଧ୍ୟ ଇଂରେଜୀ ଶବ୍ଦ ବ୍ୟବହାର ହେଲା । ଗୋପବନ୍ଧୁ ନିଜର କବିତାର ଶୀର୍ଷକ ରଖିଥିଲେ 'ରେଳ ଉପରେ ଚିଲିକା ଦର୍ଶନ', କିନ୍ତୁ ରେଳକୁ ରହ ରହ କ୍ଷଣେ କହିବା ବେଳେ ତାକୁ ବାଷ୍ପୀୟ ଶକଟ ସମ୍ବୋଧନ କରିଥିଲେ । ପରେ ସଚ୍ଚି ରାଉତରାୟ ଲେଖିଲେ ଜହ୍ନରାତିର ନିରୋଳା ଜଙ୍କସନ । ଏଥରକେ ଓଡ଼ିଆ କବିତାରେ ବ୍ୟବହାର ହେଲା ମେଘର ଓଭରବ୍ରିଜ, ନକ୍ଷତ୍ର ଓ ଗ୍ରହର ଟ୍ରାଫିକ, ଚାହାଣୀର ସିଗନାଲ ଇତ୍ୟାଦି । ନିକଟରେ ପ୍ରକାଶିତ କବିତା ସଂକଳନର ନାଁ ହେଉଛି 'ଇଥର ବୋଲି କିଛି ନାହିଁ' ଓ 'ନିଆଁର କୋଲାଜ' ।

ଏ ପର୍ଯ୍ୟନ୍ତ  କେବଳ ସଂସ୍କୃତ ଆଶ୍ରିତ ଗଦ୍ୟର ଉଦାହରଣ ଦିଆଯାଇଛି । ଆଧୁନିକ ଓଡ଼ିଆ କବିତାରେ ମଧ୍ୟ ଏକ ସମୟରେ ସଂସ୍କୃତର ବହୁଳ ବ୍ୟବହାର ସାଧାରଣ ଥିଲା । ଯଥା : ମୋହଶୂନ୍ୟ ଉଦାର ସକାଳରେ, ନା ଅପର୍ଯ୍ୟାପ୍ତ ସ୍ମୃତିର ବଦାନ୍ୟତାରେ । ପ୍ରଜ୍ଞା ସଞ୍ଚୟ କରି ରଖେ କେବଳ ମନୋରଂଜନର ସାମାନ୍ୟ ପର୍ବକୁ, ନା ସଂପୂର୍ଣ୍ଣ ଅନୁଭବର ଏକତ୍ରିତ ଉପଲବ୍ଧି । ଅନୁଧାବନ ପଶ୍ଚାଦ୍ଧାବନରେ କେତେ ଦୃଷ୍ଟି ନ୍ୟସ୍ତ ବିଭ୍ରାନ୍ତ ଓ ସୀମିତ ହେଲା । (ଯେ ଯାହାର ନିର୍ଜନତା, ୧୯୭୯) । ଅନାସକ୍ତ ସମୟମାନଙ୍କରେ ବୈଦେହୀ ସ୍ୱରକୁ ପ୍ରକ୍ଷେପିତ କରି । ପ୍ରଜ୍ଞା ପ୍ରାକ୍‌କଥନ ଶ୍ଳାଘା ଓ ସାନ୍ନିଧ୍ୟ । ଧ୍ରୁବୀୟ ଆକାଂକ୍ଷାମାନ ସ୍ୱୟଂକ୍ରିୟ ଆତ୍ମଉତରଣ । (ଯାତ୍ରାର ପ୍ରଥମ ପାଦ, ୧୯୮୮) । ଏ ଧାଡ଼ିଗୁଡ଼ିକ ଗୁରୁ ଗମ୍ଭୀର ନିଶ୍ଚୟ, କିନ୍ତୁ କିଛି ବୁଝାଗଲା ? ମୁଁ ମଧ୍ୟ ବୁଝିବାକୁ ଚେଷ୍ଟା କରୁଛି ।

ସୁଖର ବିଷୟ ସଂପ୍ରତି ଓଡ଼ିଆର ଗଦ୍ୟ ଓ ପଦ୍ୟ ଲେଖକମାନେ ଆଉ ଏପରି ଦାନ୍ତଭଙ୍ଗା ଭାଷା ବ୍ୟବହାର କରୁନାହାନ୍ତି ଏବଂ ଯୁବ ଲେଖକ ଲେଖିକାଙ୍କର ଲେଖା ଏହି ତଥାକଥିତ ସଂଭ୍ରାନ୍ତ ଭାଷାର କବଳରୁ ମୁକ୍ତ ।

ଏ ବିଷୟରେ ଶେଷ କଥା ହେଲା ଯେ ସାହିତ୍ୟର ଭାଷା ନିଶ୍ଚୟ ଦୈନନ୍ଦିନ ଚଳିତ ଭାଷାରୁ ଭିନ୍ନ ରହିବ, କିନ୍ତୁ ତାକୁ ଅଯଥା କଠିନ ସଂସ୍କୃତ ବହୁଳ ଶବ୍ଦର ଭାର ଦେଇ ଦୁଃଖପାଠ୍ୟ ଓ ଦୁର୍ବୋଧ କରିବାର କୌଣସି ଆବଶ୍ୟକତା ନାହିଁ ।

*ଅକ୍ଟୋବର ୨୦୧୪*

# ଦେବ ଭାଷା ଓ ଆମ ଭାଷା

ସଂସ୍କୃତ ଭାଷା ସବୁ ସମୟରେ ନିଜକୁ ଦେବତାଙ୍କର ଭାଷା ବୋଲି ଦାବି କରି ଆସିଛି । ଏହାର ପ୍ରତିବାଦରେ ଷୋଡ଼ଶ ଶତାବ୍ଦୀ କବି ଏକନାଥ ଦୁଃଖ ଓ କ୍ରୋଧର ସହିତ କହିଥିଲେ, ସଂସ୍କୃତ ଭାଷାକୁ ଯଦି ଦେବତାମାନେ ତିଆରି କରିଥିଲେ, ମରାଠୀ ଭାଷାକୁ କ'ଣ ଚୋର ତିଆରି କରିଥିଲେ ? ବର୍ତ୍ତମାନ ଓଡ଼ିଆ ଭାଷା ପରିପ୍ରେକ୍ଷୀରେ ମଧ୍ୟ ସେଇ ପ୍ରଶ୍ନଟି କରାଯାଇପାରେ ।

ବର୍ଷକ ତଳେ କ୍ଲାସିକାଲ ମୋହର ପାଇବା ପରେ ଓଡ଼ିଆ ଭାଷା ସଂସ୍କୃତ ସହିତ ସମାନ ଆସନ ପାଇଛି । ଏହି ମର୍ଯ୍ୟାଦା ପାଇବା ପାଇଁ ଗୋଟିଏ ସର୍ତ୍ତ ଥିଲା ଯେ ଭାଷାଟିର ସାହିତ୍ୟିକ ପରମ୍ପରା ମୌଳିକ ହୋଇଥିବ ଏବଂ ଏହା ଅନ୍ୟ କୌଣସି ଭାଷା ସଂପ୍ରଦାୟରୁ ଉଧାରରେ ଆସିନଥିବ । ତାର ଅର୍ଥ ଓଡ଼ିଆ ଭାଷା ସବୁବେଳେ ନିଜ ପାଦରେ ଠିଆ ହୋଇଛି, ସଂସ୍କୃତ ଉପରେ ଭରା ଦେଇ ବା ସଂସ୍କୃତର ଲାଞ୍ଜ ହୋଇ ନୁହେଁ ।

ସଂସ୍କୃତ ସବୁ ସମୟରେ ଆମ ଦେଶରେ ଏକ ସ୍ୱତନ୍ତ୍ର ଆସନରେ ରହି ଆସିଛି । ଏକ ସମୟରେ(ତାମିଲ ବ୍ୟତୀତ) ସଂସ୍କୃତ ହିଁ ଥିଲା ଆମର ଲେଖାପଢ଼ାର ଭାଷା । ସଂସ୍କୃତରେ କେବଳ ସାହିତ୍ୟ ହିଁ ଲେଖା ହେଉ ନଥିଲା, ଏହା ଥିଲା ଜ୍ୟୋତିଷ, ଗଣିତ, ଦର୍ଶନ, ବ୍ୟାକରଣ ଇତ୍ୟାଦି ଶାସ୍ତ୍ରର ଭାଷା ମଧ୍ୟ । ଏପରିକି ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଆମର ପଠାଣି ସାମନ୍ତ ତାଙ୍କର ଗଣିତ ଜ୍ୟୋତିଷ ବହି **ସିଦ୍ଧାନ୍ତ ଦର୍ପଣ** ଲେଖିଥିଲେ ଓଡ଼ିଆରେ ନୁହେଁ, ସଂସ୍କୃତରେ ।

ସଂସ୍କୃତ କେବେ ହେଲେ ଜନସାଧାରଣଙ୍କର କଥାବାର୍ତ୍ତାର ଭାଷା ନଥିଲା; ଏହା ଥିଲା ପଣ୍ଡିତ ଓ ବିଦ୍ୱାନ ଏବଂ ବିଶେଷରେ ପୁରୋହିତମାନଙ୍କର ପୂଜାର ଭାଷା । ଏହାକୁ ଏକ ସମୟରେ ଇଉରୋପରେ ପ୍ରଚଳିତ ଭାଷାମାନଙ୍କ ବ୍ୟବହାର ସହିତ

ତୁଳନା କରାଯାଇପାରେ । ରୋମାନ ସାମ୍ରାଜ୍ୟରେ ଲାଟିନ୍ ଥିଲା ଲୋକଙ୍କର ଭାଷା, କିନ୍ତୁ ଗ୍ରୀକ୍ ଥିଲା ବିଦ୍ୱାନମାନଙ୍କର ଲେଖିବାର ଭାଷା । ଏକ ସମୟରେ ଇଂଲାଣ୍ଡରେ ଲେଖକମାନେ ଭାବୁଥିଲେ ଯେ ସାକ୍ସନ ଶବ୍ଦ ବଦଳରେ ଗ୍ରୀକ୍ ବା ଲାଟିନ୍ ଶବ୍ଦ ବ୍ୟବହାର କଲେ ଲେଖାର ମର୍ଯ୍ୟାଦା ବଢ଼ିଯିବ । ପଞ୍ଚଦଶ ଶତାବ୍ଦୀ ବେଳକୁ ରୋମର ଚର୍ଚ୍ଚ ପ୍ରଭାବରେ ଲାଟିନ୍ ହୋଇଗଲା ବିଦ୍ୱାନଙ୍କର ଭାଷା, ଯଦିଓ ଲୋକଙ୍କର କଥାବାର୍ତ୍ତାର ଭାଷା ଥିଲା ଇଟାଲିଆନ୍ । ଏଠାରେ ଉଲ୍ଲେଖଯୋଗ୍ୟ ଯେ କୋପରନିକସ୍ ତାଙ୍କର ସୂର୍ଯ୍ୟକେନ୍ଦ୍ରିକ ତତ୍ତ୍ୱ ଲାଟିନ୍‌ରେ ଲେଖି ବଞ୍ଚିଗଲେ, କିନ୍ତୁ ଶହେ ବର୍ଷ ପରେ ସେଇ କଥାକୁ ବେଶି ଲୋକ ପଢ଼ିବେ ବୋଲି ଇଟାଲିଆନ୍‌ରେ ଲେଖି ଗାଲିଲିଓ ଚର୍ଚ୍ଚ ହାତରେ ଧରାପଡ଼ିଲେ ।

ପରବର୍ତ୍ତୀ ସମୟରେ ଆମ ଦେଶରେ ଏ ଭଳି ସଂପର୍କ ଥିଲା ଉଚ୍ଚତର କୁହାଯାଉଥିବା ଫାର୍ସି ଓ ଦେଶଜ ଉର୍ଦ୍ଦୁ ଭିତରେ । ମହମ୍ମଦ ଇକବାଲ ଉଭୟ ଭାଷାରେ ଲେଖୁଥିଲେ । ପୂର୍ବରୁ କେବଳ ଉର୍ଦ୍ଦୁରେ ଲେଖୁଥିବା ବେଳେ ସେ ଇଉରୋପ ଯିବା ପରେ ଫାର୍ସିରେ ଲେଖିଲେ ଏବଂ ମୃତ୍ୟୁ ପୂର୍ବରୁ ପୁଣି ଉର୍ଦ୍ଦୁକୁ ଫେରି ଆସିଲେ ।

ଆମ ଦେଶରେ ସଂସ୍କୃତର ପ୍ରାଧାନ୍ୟ ବିରୁଦ୍ଧରେ ପ୍ରଥମେ ସ୍ୱର ଉତ୍ତୋଳନ କଲେ ଭକ୍ତ କବିମାନେ । ପ୍ରାୟ ଅଷ୍ଟମ ଶତାବ୍ଦୀରେ ଦକ୍ଷିଣ ଭାରତରେ ଆରମ୍ଭ ହୋଇଥିବା ଭକ୍ତି ଆନ୍ଦୋଳନର କବିମାନେ ସଂସ୍କୃତ ଓ ତାର ସଂସ୍କୃତିକୁ ପୂରାପୂରି ଅଗ୍ରାହ୍ୟ କରିଦେଲେ । ସେମାନେ ଅସ୍ୱୀକାର କଲେ ଭଗବାନ ଓ ଭକ୍ତଙ୍କ ମଝିରେ ମଧ୍ୟସ୍ଥି ଥିବା ବ୍ରାହ୍ମଣ ଓ ସଂସ୍କୃତ ଭାଷାକୁ । ମଣିଷର ମୁକ୍ତି ପାଇଁ ସେମାନେ ଜ୍ଞାନ, କର୍ମ ଓ ଧ୍ୟାନ ବଦଳରେ ଭକ୍ତିକୁ ପ୍ରାଧାନ୍ୟ ଦେଲେ ଏବଂ ଏହି ଭକ୍ତିକୁ ଅଭିବ୍ୟକ୍ତ କଲେ ଆଞ୍ଚଳିକ ଗୀତ, ସଂଗୀତ ଓ ନୃତ୍ୟ ମାଧ୍ୟମରେ । ସେମାନେ ଲୋକମାନଙ୍କ ସହିତ ମିଳିମିଶି ରହିଲେ ଓ କଥିତ ଭାଷାର ପରମ୍ପରାକୁ ଆପଣାଇ ନେଲେ । ସେଥିପାଇଁ ତାଙ୍କ ଲେଖାରେ ଆସିଲା ଭାଷାର ବିବିଧତା, ବୈଚିତ୍ର୍ୟ ଓ ବାଗ୍‌ବିନ୍ୟାସ । ସେମାନେ ଭାଙ୍ଗିଦେଲେ ଧର୍ମ ଜାତି ଲିଙ୍ଗ ଭେଦ ଓ ବୈଷମ୍ୟ । ସେମାନେ ଏକାତ୍ମ ହୋଇଗଲେ ମୁସଲମାନ ସୁଫିଙ୍କ ସହିତ । ସବୁଠାରୁ ଅଧିକ, ସେମାନେ ଭାଙ୍ଗିଦେଲେ ସଂସ୍କୃତର ପ୍ରାଧାନ୍ୟ ଓ ପ୍ରତିପତ୍ତି ।

ଆମ ଓଡ଼ିଶାରେ ମଧ୍ୟ ଏହି ଭକ୍ତିଯୁଗ ବୈପ୍ଳବିକ ପରିବର୍ତ୍ତନ ଆଣି ଦେଲା । ଓଡ଼ିଆ ଭାଷାର ମୂଳଦୁଆ ପଡ଼ିଲା ଭକ୍ତ କବିମାନଙ୍କ ଲେଖାରେ । ସାରଳା ଦାସ

ଶୁଦ୍ଧ ଓଡ଼ିଆରେ ମହାଭାରତ ଲେଖିଲେ । ଜଗନ୍ନାଥ ଦାସଙ୍କ ଭାଗବତର ଭାଷା ହେଲା ମାନକ ଓଡ଼ିଆ । ଏହି ଆନ୍ଦୋଳନରୁ ସୃଷ୍ଟି ହେଲେ ଭିନ୍ନ ଧର୍ମର ସାଲବେଗ ଓ ଭିନ୍ନ ଲିଙ୍ଗର ମାଧବୀ ଦାସୀ । ସେତେବେଳେ ମଧ୍ୟ ପଣ୍ଡିତମାନେ ଏହି ନୂଆ ଓଡ଼ିଆ କବିମାନଙ୍କର ଆବିର୍ଭାବକୁ ସହି ପାରି ନ ଥିଲେ । ଜଗନ୍ନାଥ ଦାସଙ୍କ ଭାଗବତକୁ ନାପସନ୍ଦ କରି ସେମାନେ ତାର ନିନ୍ଦାସୂଚକ ଆଖ୍ୟା ଦେଇଥିଲେ 'ତେଲି ଭାଗବତ' । ଓଡ଼ିଶାର ଜନସାଧାରଣ, ସ୍ତ୍ରୀପିଲା ସମସ୍ତେ କିନ୍ତୁ ଏହି ଭାଗବତକୁ ଆଦରି ନେଲେ ।

ଆଶ୍ୱାସନାର ବିଷୟ ଯେ ଓଡ଼ିଆରେ ଶ୍ରୀମଦ୍ ଭାଗବତ ଲେଖିବାର ଧୃଷ୍ଟତା ବା ଧର୍ମଦ୍ରୋହ ପାଇଁ ଜଗନ୍ନାଥ ଦାସଙ୍କୁ ଫାଶି ହୋଇ ନଥିଲା ଯାହା ସେଇ ସମୟରେ ଇଉରୋପରେ ହୋଇଥିଲା ବାଇବଲ୍‌ର ଅନୁବାଦ ପାଇଁ । ୧୫୩୬ରେ ନିଉ ଟେଷ୍ଟାମେଣ୍ଟକୁ ଇଂରେଜୀରେ ଅନୁବାଦ କରିଥିବାରୁ ଉଇଲିଆମ୍ ଟିଣ୍ଡେଲଙ୍କୁ ମୃତ୍ୟୁଦଣ୍ଡ ମିଳିଥିଲା । ପ୍ରଟେଷ୍ଟାଣ୍ଟ ପୁନଃସଂସ୍କାର ପରେ ହିଁ ଇଉରୋପରେ ବାଇବଲ୍‌କୁ ଭଲ୍‌ଗେଟ ବା ଲୋକ ଭାଷାରେ ଅନୁବାଦ କରିବାର ସ୍ୱୀକୃତି ମିଳିଲା ।

ଭକ୍ତି ଆନ୍ଦୋଳନର ଚଳଚଞ୍ଚଳ ସମୟ ବେଳକୁ ସଂସ୍କୃତ ଏକ ମୃତ ଭାଷା ହୋଇ ସାରିଥିଲା । କବୀର ଏ କଥାକୁ ସୁନ୍ଦର ଭାବରେ କହିଥିଲେ, ସଂସ୍କୃତ ହୈ କୂପ ଜଳ, ଭାଷା ବହତା ନୀର ।

ସଂସ୍କୃତର ପୁନରାଗମନ ହେଲା ଓଡ଼ିଆ କବିତାର ରୀତି ଯୁଗରେ । ସଂସ୍କୃତଭିତ୍ତିକ ଅଳଙ୍କାର ହୋଇଗଲା ସାହିତ୍ୟର ଶ୍ରେଷ୍ଠତ୍ୱର ପ୍ରତିପାଦକ । ମନେ ହେଲା ଯେପରି କାବ୍ୟ ଲେଖା ଯାଉଥିଲା ଅଳଙ୍କାର ଜ୍ଞାନର ପ୍ରଦର୍ଶନ ପାଇଁ । ଉଦାହରଣ ସ୍ୱରୂପ କୁହାଗଲା ଯେ ଶୁଷ୍କଂ କାଷ୍ଠଂ ତିଷ୍ଠତ୍ୟଗ୍ରେ କବିତା ନୁହେଁ; କବିତା ହେଉଛି ନୀରସ ତରୁବର ପୁରତୋ ଭାତି । ଶୁଖିଲା କାଠର ବର୍ଣ୍ଣନାରେ ପ୍ରଥମ ଉକ୍ତିଟି ନିଶ୍ଚୟ ବେଶି ଉପଯୁକ୍ତ, କାରଣ ଶୁଷ୍କ କାଷ୍ଠ ଶବ୍ଦରୁ ଯେଉଁ ଅପ୍ରୀତିକର କର୍କଶ ଭାବ ଉପୁଜୁଛି, ତା ନୀରସ ତରୁବରରେ ଅନୁପସ୍ଥିତ । ନୀରସ ତରୁବରରେ ପୁଣି ଆଭା ଆସିବ କେଉଁଠାରୁ ?

ଏ ଭଳି ଅଳଙ୍କାର ସଙ୍କୁଳ କବିତା ସାମ୍ରାଜ୍ୟର କବିସମ୍ରାଟ ଥିଲେ ଆମର ଉପେନ୍ଦ୍ର ଭଂଜ । ସଂସ୍କୃତ କାବ୍ୟ ରୀତିର ସମସ୍ତ ନୀତି ନିୟମକୁ କରଗତ କରି ତାର ବ୍ୟବହାରରେ ଉପେନ୍ଦ୍ର ସଂସ୍କୃତ କବିଙ୍କୁ ବି ଲଙ୍ଘି ଯାଇଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏପରି ଅଳଙ୍କାର ବହୁଳତା କାବ୍ୟରୁ ସ୍ଥାପତ୍ୟକୁ ସଂକ୍ରମିତ

ହୋଇଥିଲା । ମନ୍ଦିର କାନ୍ଥରେ ଥିବା ରତି ବନ୍ଧର ମିଥୁନ ମୂର୍ତ୍ତିରେ ପ୍ରେମୀ ଯୁଗଳ ନଗ୍ନ ଥିଲେ ମଧ୍ୟ ଅଳଙ୍କାରରେ ବିଭୂଷିତ ହୋଇଥିବାର ଦେଖା ଯାନ୍ତି ।

ଏ ରୀତିର ମଧ୍ୟ ଅବସାନ ହେଲା ଯେତେବେଳେ ଗଦ୍ୟ ରଚନା ଆରମ୍ଭ ହେଲା । ଚତୁର ବିନୋଦରେ ବ୍ରଜନାଥ ବଡ଼ଜେନା ଲେଖିଲେ, ପିଉସା ଦେଲେ ମୋ ପିତ୍ତ ବଢ଼ିଲା ପ୍ରବଳେ, ପକାଇଲୁ ତାଙ୍କୁ ପହଡ଼େ ଖରାବେଳେ । ସାହିତ୍ୟରେ ଏ ଭଳି ଭାଷାର ବ୍ୟବହାର ସଂପୂର୍ଣ୍ଣ ନୂଆ କଥା ଥିଲା । ଚଳିତ ଭାଷା ବ୍ୟବହାରର ଆଉ ଗୋଟିଏ ସ୍ରୋତ ଥିଲା ଆମର ଗାଁ ଗହଳିର ଲୋକଗୀତ ଓ ଢଗଢ଼ମାଳି । ଚକା ଚକା ଭଉଁରୀ ଓ ଆ ଜହ୍ନମାମୁ ଶରଦ ଶଶିରେ ଆମର ଖାଣ୍ଟି ଓଡ଼ିଆ ଭାଷା ବଞ୍ଚି ରହିଲା ।

ସଂସ୍କୃତ ଭାଷା ପାଇଁ ଏକ ବିରାଟ ପରିବର୍ତ୍ତନ ଆସିଲା ଇଂରେଜମାନେ ଆମ ଦେଶକୁ ଅଧିକାର କରିବା ପରେ । କହିବାକୁ ଗଲେ ସଂସ୍କୃତର ଏକ ପ୍ରକାର ପୁନର୍ଜନ୍ମ ହେଲା ଏହି ବିଦେଶୀଙ୍କ କୃପାରୁ । ୱାରେନ୍ ହେସ୍‌ଟିଙ୍ଗସ୍( ୧୭୭୨ରେ ବଙ୍ଗଳାର ଛୋଟ ଲାଟ ଓ  ଦୁଇ ବର୍ଷ ପରେ ବଡ଼ଲାଟ) ଆଦେଶ ଦେଲେ ଯେ ନେଟିଭମାନେ ସେମାନଙ୍କର ନିଜର ଆଇନ କାନୁନ ଦ୍ୱାରା ଶାସିତ ହେବେ । ଆରବିକ ଓ ଫାର୍ସି ଜାଣିଥିବା ଉଇଲିଅମ୍ ଜୋନ୍‌ସ୍‌ଙ୍କୁ ଇଷ୍ଟ ଇଣ୍ଡିଆ କମ୍ପାନୀ ଚାକିରି ଦେଇ ୧୭୮୩ରେ ଭାରତକୁ ଆଣିଲେ ଏବଂ ତାଙ୍କୁ ଦାୟିତ୍ୱ ଦିଆଗଲା ହିନ୍ଦୁ ଓ ମୁସଲମାନ ଆଇନର ଇଂରେଜୀ ତର୍ଜମା କରାଇବା । ପଣ୍ଡିତମାନେ ଯେପରି ତାଙ୍କୁ ଠକି ନ ପାରିବେ ସେଥିପାଇଁ ସେ ସଂସ୍କୃତ ମଧ୍ୟ ଶିଖିଲେ । ମନୁ ସଂହିତା ଇତ୍ୟାଦି ଅନୁବାଦ କରିବା ସହ ସେ ସଂସ୍କୃତ ଅଭିଜ୍ଞାନ ଶାକୁନ୍ତଳମ୍ ଓ ହିତୋପଦେଶର ଅନୁବାଦ ମଧ୍ୟ ପ୍ରକାଶ କଲେ । ଶକୁନ୍ତଳାର ଅନୁବାଦ ଇଉରୋପରେ ଆଦୃତ ହେଲା ଏବଂ ବିଭିନ୍ନ ଭାଷାରେ ପ୍ରକାଶ ପାଇଲା । ଅରିଏଣ୍ଟାଲିଷ୍ଟ ବା ପ୍ରାଚ୍ୟବାଦୀମାନେ ଏହାର ପ୍ରଶଂସାରେ ଶତମୁଖ ହେଲେ ।

ଜୋନ୍‌ସ୍ ବର୍ତ୍ତମାନ ସଂସ୍କୃତ ବିଷୟରେ କହିଲେ ଯେ ଏହି ଭାଷା, 'more perfect than Greek, more copious than Latin and more exquisitely refined than either, yet bearing to both of them a stronger affinity, both in the roots of verbs and in the forms of grammar' । ଏ ଭଳି ଭାବରେ ସଂସ୍କୃତ ଏକ ଇଣ୍ଡୋ-ଇଉରୋପୀୟ ଭାଷା ବୋଲି ପ୍ରଚାରିତ ହେବାରୁ ଇଉରୋପୀୟ ଓ ଭାରତୀୟମାନେ ନିଜ ନିଜକୁ ଆର୍ଯ୍ୟ ବୋଲି ମନେ କରି ଗର୍ବ ଅନୁଭବ କଲେ ଏବଂ ଏ ତତ୍ତ୍ୱ ପରବର୍ତ୍ତୀ ସମୟରେ ହିଟଲରଙ୍କ କାମରେ ଲାଗିଲା ।

ଭାରତକୁ ଏ ଭଳି ଏକ ସଂସ୍କୃତ ବୋକଚାରେ ବାନ୍ଧି ଇଉରୋପ ଆଗରେ ଉପସ୍ଥାପିତ କରିବା ବେଳେ ଜୋନ୍‌ସ୍ ଓ ତାଙ୍କ ଭଳି ଇଣ୍ଡୋଲଜିଷ୍ଟ ବା ଭାରତବିଦ୍‌ମାନେ ଅନ୍ୟ ଭାଷାରେ ଲେଖାଥିବା ସାହିତ୍ୟକୁ ପୂରାପୂରି ଅଣଦେଖା କରିଦେଲେ । ଏଥିରୁ ମନେ ହେବା ସ୍ୱାଭାବିକ ଯେ ସେମାନଙ୍କ ମତରେ ଅନ୍ୟ ଭାଷାର ସାହିତ୍ୟ ସଂସ୍କୃତ ସାହିତ୍ୟଠାରୁ ଅନୁନ୍ନତ ଓ ନିକୃଷ୍ଟ ଥିଲା । ପରବର୍ତ୍ତୀ ସମୟରେ ଜର୍ମାନ ବିଦ୍ୱାନ୍ ଊିଣ୍ଟରନିଜ ଯେଉଁ ଭାରତୀୟ ସାହିତ୍ୟର ଇତିହାସ ଲେଖିଲେ, ସେଥିରେ କେବଳ ସଂସ୍କୃତ ସାହିତ୍ୟ ଓ ବୌଦ୍ଧ ଜୈନ ପାଠ ରହିଲା । ଏଥିରେ ଅନ୍ୟ କୌଣସି ଭାଷାର ସାହିତ୍ୟ ରହିଲା ନାହିଁ, ଏପରିକି ଖ୍ରୀଷ୍ଟଙ୍କ ପୂର୍ବରୁ ବ୍ୟବହୃତ ତାମିଲ ମଧ ନୁହେଁ ।

ସଂସ୍କୃତ ନିଶ୍ଚୟ ଏକ ଉନ୍ନତ ଭାଷା ଏଥିରେ ଦ୍ୱିମତ ନାହିଁ । ଆମର ଭାଷାମାନେ ସଂସ୍କୃତରୁ ଅନେକ ଶବ୍ଦ ଓ ବ୍ୟବହାର ଆହରଣ କରିଛନ୍ତି । ଆମ ଓଡ଼ିଆ ଶବ୍ଦକୋଷ ତତ୍‌ସମ ଓ ତଦ୍‌ଭବ ଶବ୍ଦରେ ଭରପୂର । ଏହା ଦ୍ୱାରା ଓଡ଼ିଆ ଭାଷା ନିଶ୍ଚିତ ଭାବେ ଅଧିକ ସମୃଦ୍ଧ ହୋଇଛି । ସଂସ୍କୃତ ଶବ୍ଦର ବିନା ବ୍ୟବହାରରେ ଓଡ଼ିଆ ଭାଷା କି ପ୍ରକାର ରୂପ ନେଇଥାନ୍ତା ବର୍ତ୍ତମାନ ସେ କଥା କହିବା ସମ୍ଭବ ବା ଆବଶ୍ୟକ ନୁହେଁ । ଫାର୍ସି ରାଜଭାଷା ଥିବା ସମୟରେ ଆମେ ସେଥିରୁ ଶବ୍ଦ ନେଇଛୁ ଏବଂ ପରେ ଇଂରେଜୀ ଶବ୍ଦକୁ ମଧ ଆପଣାର କରିଛୁ । ଫାର୍ସି ଓ ଇଂରେଜୀ ଯେପରି ଶାସକ ଓ ଉପର ବର୍ଗର ଲୋକଙ୍କ ଭାଷା ଥିଲା, ଆମ ସଂସ୍କୃତ ମଧ ସେହିପରି ଥିଲା । ସେଥିପାଇଁ ବୋଧହୁଏ ଖାଣ୍ଟି ଓଡ଼ିଆକୁ ନିମ୍ନଚକ୍ଷୁରେ ଦେଖାଯାଇଛି । ଏ ବିଷୟରେ ସଂସ୍କୃତଜ୍ଞ ଏବଂ ଶବ୍ଦତତ୍ତ୍ୱବୋଧ ଅଭିଧାନର ପ୍ରଣେତା ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କର ନିମ୍ନ ଉକ୍ତିଟି ପ୍ରାସଙ୍ଗିକ : ଅଦ୍ୟାପି ମାତୃ ସାହିତ୍ୟରେ ଅନଭିଜ୍ଞ କେତେକ ସଂସ୍କୃତିଆ ଶୁଆପଠିଆ ପଣ୍ଡିତ ଦେଶୀୟ ଭାଷା କବିତାକୁ ଘୃଣା ଚକ୍ଷୁରେ ଦେଖନ୍ତି । ( ଶ୍ରୀ ଭାରତ ଦର୍ପଣ, ୧୯୬୪)

ଦେଶୀୟ ଭାଷାକୁ ସଂସ୍କୃତରୁ ମୁକ୍ତ କରିବା ପାଇଁ ଆଗରୁ ଉଦ୍ୟମ ହୋଇଛି । ଫକୀରମୋହନ ତାଙ୍କ ଉପନ୍ୟାସମାନଙ୍କରେ ନିରୋଳା ଓଡ଼ିଆକୁ ପ୍ରାଧାନ୍ୟ ଦେଲେ । ମାଇକେଲ ମଧୁସୂଦନ ଦତ୍ତ ବଙ୍ଗଳାରେ ସଂସ୍କୃତର 'ଦାସ ସୁଲଭ ନକଲ'କୁ ଲୋପ କରିବା ପାଇଁ ଉଦ୍ୟମ କଲେ । ବଙ୍କିମ ଚନ୍ଦ୍ର ସଂସ୍କୃତ ସାହିତ୍ୟ ତତ୍ତ୍ୱକୁ ପ୍ରତ୍ୟାଖ୍ୟାନ କଲେ ଓ ନିଜେ ହିନ୍ଦୁ ରାଷ୍ଟ୍ରବାଦରେ ବିଶ୍ୱାସ କରୁଥିଲେ ମଧ ଶେକ୍ସପିଅରଙ୍କୁ ସହଜରେ

କାଳିଦାସଙ୍କ ଉପରେ ସ୍ଥାନ ଦେଲେ । ଆମର ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ସଂସ୍କୃତ ଭାଷା ପ୍ରଭାବିତ ଓଡ଼ିଆ ଭାଷା ପରିବର୍ତ୍ତେ ପ୍ରାକୃତ ଉପରେ ପ୍ରତିଷ୍ଠିତ ଓଡ଼ିଆକୁ ଗୁରୁତ୍ୱ ଦେବା ସପକ୍ଷରେ ଥିଲେ ।(**ଓଡ଼ିଆ ଭାଷାତତ୍ତ୍ୱ**, ୧୯୨୭) ।

ସ୍ୱାଧୀନତା ପରେ ଯେତେବେଳେ ଭାରତର ସମ୍ବିଧାନ ତିଆରି ହେଲା, ସେତେବେଳେ ମଧ୍ୟ ସଂସ୍କୃତକୁ ପ୍ରାଧାନ୍ୟ ଦିଆଗଲା । ଇଂରେଜୀ ବଦଳରେ ହିନ୍ଦୀ ପ୍ରବର୍ତ୍ତନ କରିବାର ମହାନ ଉଦ୍ଦେଶ୍ୟ ସହିତ ହିନ୍ଦୀକୁ କିପରି ଉନ୍ନତ କରିବାକୁ ହେବ, ସେ ବିଷୟରେ ମଧ୍ୟ ସମ୍ବିଧାନରେ ନିର୍ଦ୍ଦେଶ ରହିଲା । ସମ୍ବିଧାନର ଅନୁଚ୍ଛେଦ ୩୫୧ ଅନୁସାରେ ହିନ୍ଦୀକୁ ସମୃଦ୍ଧ କରିବାର ପାଇଁ 'ଅଷ୍ଟମ ଅନୁସୂଚୀରେ ବିନିର୍ଦ୍ଦିଷ୍ଟ ଭାରତର ଅନ୍ୟ ଭାଷାମାନଙ୍କରେ ପ୍ରଯୁକ୍ତ ରୂପ, ଶୈଳୀ ଓ ପଦମାନଙ୍କୁ ଆତ୍ମସାତ୍ କରି ଏବଂ ଯେଉଁଠାରେ ଆବଶ୍ୟକ ବା ବାଞ୍ଛନୀୟ ସେଠାରେ ନିଜର ଶବ୍ଦଭଣ୍ଡାର **ମୁଖ୍ୟତଃ ସଂସ୍କୃତରୁ** ଓ ଗୌଣତଃ ଅନ୍ୟ ଭାଷାମାନଙ୍କରୁ ଶବ୍ଦ ଗ୍ରହଣ କରିବେ ।'

ଉପରେ ଦିଆଯାଇଥିବା ଭାଷା ସମ୍ବିଧାନର ହିନ୍ଦୀ ସଂସ୍କରଣରୁ ନିଆଯାଇଛି ଏବଂ ଇଂରେଜୀରୁ ଅନୁବାଦ କଲାବେଳେ ନିଜର ନିୟମକୁ ମାନି ଶବ୍ଦମାନ ସଂସ୍କୃତରୁ ନିଆଯାଇଛି, ଯାହା ଫଳରେ ଲେଖାଟି କିମ୍ଭୂତ କିମାକାର ରୂପ ନେଇଛି । ଏ ଭଳି ମୁଖ୍ୟତଃ ସଂସ୍କୃତରୁ ନିଆଯାଇଥିବା ଶବ୍ଦ ପ୍ରୟୋଗ ଯୋଗୁ ସରକାରୀ ରେଡିଓରେ ପ୍ରସାରିତ ସମ୍ବାଦ ଅଧିକାଂଶ ସମୟରେ ହସର ଖୋରାକ ଯୋଗାଉଥିଲା ଏବଂ ଲୋକପ୍ରିୟ ହୋଇ ନ ଥିଲା ।

ଏ ଭିତରେ ସଂସ୍କୃତ ପାଇଁ ଆହୁରି କିଛି ସୁଖବର ଆସିଛି । ଗତ ବର୍ଷ କେନ୍ଦ୍ର ସରକାର ନିଷ୍ପତ୍ତି ନେଇଛନ୍ତି ଯେ କେନ୍ଦ୍ରୀୟ ବିଦ୍ୟାଳୟମାନଙ୍କରେ ଜର୍ମାନ ଭାଷା ବଦଳରେ ସଂସ୍କୃତ ପଢ଼ା ହେବ ତୃତୀୟ ଭାଷା ଭାବରେ, ଇଂରେଜୀ ଓ ହିନ୍ଦୀ ପରେ । ପିଲାମାନେ ସଂସ୍କୃତ ଭାଷା ବଦଳରେ ଅନ୍ୟ କୌଣସି ଭାରତୀୟ ଭାଷା ନେଇପାରିବେ, ଜର୍ମାନ ନୁହେଁ । ଏହା ନିଶ୍ଚୟ ଏକ ଉପଯୁକ୍ତ ନିଷ୍ପତ୍ତି ।

ଆଜିକାଲି ସୋସିଆଲ ମିଡିଆରେ ବହୁ ପ୍ରସାରିତ ହେଉଛି ସଂସ୍କୃତର ଗୁଣଗାନ ଏବଂ ଏଥିରେ କୁହାଯାଉଛି ଯେ ସଂସ୍କୃତ ହେଉଛି କଂପ୍ୟୁଟରକୁ ସବୁଠାରୁ ବେଶି ସୁହାଇବା ଭଳି ଭାଷା ଏବଂ ଆମେରିକାରେ ଯେଉଁ ଷଷ୍ଠ ଓ ସପ୍ତମ ପୀଢ଼ୀର କଂପ୍ୟୁଟର ତିଆରି ହେବାକୁ ଯାଉଛି, ତା ହେବ ସଂସ୍କୃତଭିତ୍ତିକ । ଏହା ଯେପରି

ଦୁଇଶହ ବର୍ଷ ତଳେ ଜୋନସ୍ କହିଥିବା କଥାର ଇଲେକ୍‌ଟ୍ରନିକ୍ ପ୍ରୟୋଗ । ଦୁଃଖର ବିଷୟ ଯେ କିଛି ମୌଳବାଦୀ ଆଉ ପାଦେ ଆଗେଇ ଯାଇ ସଂସ୍କୃତକୁ ଯୋଗ ଓ ବୈଦିକ ଗଣିତ ସହିତ ମିଶାଇ ଭାରତୀୟତାର ମାନଦଣ୍ଡ କରିବାକୁ ଚାହାନ୍ତି ।

ବର୍ତ୍ତମାନ ଆମେ ଦେଖିବା ସଂସ୍କୃତ ପରିପ୍ରେକ୍ଷୀରେ ଆମ ଭାଷା କେଉଁଠି ଅଛି । କ୍ଲାସିକାଲ ମଂଜୁରୀ ପାଇବା ପାଇଁ ଆମର ଯୁକ୍ତି ଥିଲା ଯେ ଓଡ଼ିଆ କାହାରି ଉପରେ ଭରା ନ ଦେଇ ହଜାର ହଜାର ବର୍ଷ ଧରି ସ୍ୱତନ୍ତ୍ର ଭାବେ ପ୍ରଚଳିତ ଅଛି । କାଳକ୍ରମେ ସଂସ୍କୃତରୁ ଓଡ଼ିଆକୁ ଅନେକ ତତ୍‌ସମ ଓ ତଦ୍‌ଭବ ଶବ୍ଦ ଆସି ଯାଇଛନ୍ତି ଏବଂ ଆମର ପ୍ରାଚୀନ ଖାଣ୍ଟି ଓଡ଼ିଆ ଶବ୍ଦ ଭଣ୍ଡାର ସେହି ଅନୁପାତରେ ହ୍ରାସ ପାଇଛି । ସାହିତ୍ୟର ଭାଷା ମଧ୍ୟ ସେହିଭଳି ହୋଇଯାଇଛି ଅଧିକରୁ ଅଧିକ ସଂସ୍କୃତ ନିର୍ଭର । ଆମର ଶବ୍ଦ ସମ୍ଭାର, ବ୍ୟାକରଣ ଏବଂ ବନାନ ମଧ୍ୟ ହୋଇଯାଇଛି ସଂସ୍କୃତ କେନ୍ଦ୍ରିକ । ଆମ ରାଜ୍ୟ ସଂଗୀତ 'ବନ୍ଦେ ଉତ୍କଳ ଜନନୀ' ଶତପ୍ରତିଶତ ସଂସ୍କୃତ ।

ଆମର ଅଧିକାଂଶ ପୁରୁଣା ଲେଖକ ସହରବାସୀ ଓ ବିଶେଷରେ ରାଜଧାନୀବାସୀ ହୋଇଥିବାରୁ ଗାଁ ଗହଳର ଭାଷା କ୍ରମେ କ୍ରମେ ସାହିତ୍ୟରୁ ଉଭେଇଗଲାଣି । ଅନେକ ସମୟରେ ନିଜର ଲେଖାକୁ ଓଜନ ଦେବା ପାଇଁ ଲେଖକମାନେ ସଂସ୍କୃତର ଆଶ୍ରୟ ନିଅନ୍ତି । ଆମକୁ କିନ୍ତୁ ଭାବିବାକୁ ହେବ କିପରି ସଂସ୍କୃତର ଆଣ୍ଠାବାଡ଼ି ନ ଧରି ଆମେ ଆଗକୁ ଯାଇପାରିବା । ଏକ ସମୟରେ ଓଡ଼ିଶାର ସବୁ ଲେଖକ କଟକ ସହରର ରେଭେନ୍‌ଶା କଲେଜ ହତାରୁ ବାହାରୁଥିଲେ । ସେ ସମୟ ଆଉ ନାହିଁ । ଉପକୂଳରୁ ସାହିତ୍ୟ ବର୍ତ୍ତମାନ ଚାଲିଗଲାଣି ଉପାନ୍ତ ଅଞ୍ଚଳକୁ । ଓଡ଼ିଆ ପାଠକ ଓ ଲେଖକ ଆଉ କଟକ ପୁରୀ ବାଲେଶ୍ୱରର ସହର ଅଞ୍ଚଳରେ ଆବଦ୍ଧ ନୁହନ୍ତି । ଆମର ଯୁବ ଲେଖକ ଆସୁଛନ୍ତି କଳାହାଣ୍ଡି କୋରାପୁଟ ଫୁଲବାଣୀ ସୁନ୍ଦରଗଡ଼ର ଛୋଟ ଛୋଟ ଜାଗାରୁ । ସେହିସବୁ ଜାଗାରେ ହିଁ ଅଛନ୍ତି ବେଶି ସହୃଦୟ ଓ ସଚେତନ ପାଠକ । ଏହା ଏକ ଭଲ ଲକ୍ଷଣ । ବର୍ତ୍ତମାନର ଯୁବ ଲେଖକମାନେ ଓଡ଼ିଆ ଭାଷାକୁ ନୂଆ ବିନ୍ୟାସ ଦେବାକୁ ଆରମ୍ଭ କଲେଣି । ମୋର ବିଶ୍ୱାସ ଯେ ସେମାନଙ୍କ ହାତରେ ଆମର ଭାଷା ନିରାପଦ ଏବଂ ସେମାନେ ଓଡ଼ିଆକୁ ପୁନର୍ଜନ୍ମ ଦେବେ ।

*ଅକ୍ଟୋବର, ୨୦୧୫*

# ଲେଖକର ଅବସର ବୟସ

ଲେଖାଲେଖି ପ୍ରାୟ ବନ୍ଦ କରିଦେଇଥିବା ବୟସ୍କ ଲେଖକକୁ ଯଦି 'ଆପଣ ଲେଖୁନାହାନ୍ତି କାହିଁକି' ବୋଲି ପଚରାଯାଏ, ତାକୁ ନିଶ୍ଚୟ କଷ୍ଟ ହୁଏ । କିନ୍ତୁ ଯଦି କିଏ ପଚାରେ 'ଆପଣ ଲେଖୁଛନ୍ତି କାହିଁକି' ତାକୁ ଆହୁରି ବେଶି କଷ୍ଟ ହୁଏ, କାରଣ ଏଥିରେ ଉହ୍ୟ ରହିଲା ଯେ ବର୍ତ୍ତମାନ ସେ ଯାହାସବୁ ଲେଖୁଛି ତା ନିମ୍ନମାନର ।

ବିଭିନ୍ନ ପ୍ରକାରର ପେଶାରେ ପ୍ରବେଶ ଓ ଅବସର ବୟସର ସୀମା ଥିବା ବେଳେ ଲେଖକ ପାଇଁ ଏ ଭଳି କୌଣସି ନିୟମ ନାହିଁ । ସାହିତ୍ୟରେ ଆଗ୍ରହ ରଖୁଥିବା ପିଲାମାନେ ନିଜର ସ୍କୁଲ ଦିନରୁ ହିଁ କବିତା(ଗପ ନୁହେଁ) ଲେଖିବା ଆରମ୍ଭ କରିଦିଅନ୍ତି । ଏ ସବୁ କିନ୍ତୁ କେବଳ ନିଜର ଆତ୍ମସନ୍ତୋଷ ପାଇଁ ଲେଖା, କଳ୍ପନାରେ ପ୍ରେମ କରୁଥିବା ଝିଅ ବା ପୁଅଟି ପାଇଁ ଅଥବା ନିଜର ଆଶା ନିରାଶାକୁ ନେଇ । ଏ ସବୁ ଲେଖା ବାକ୍ସରେ ବନ୍ଦ ହୋଇ ରହନ୍ତି ଓ କାଳକ୍ରମେ ହଜିଯାନ୍ତି ।

ଏହି ପିଲାଟି ଯଦି ପରବର୍ତ୍ତୀ ସମୟରେ ଜଣାଶୁଣା ଲେଖକ ହୋଇଯାଏ, ତାର ପ୍ରାଥମିକ ଲେଖା ସବୁ ଖୋଜା ଲୋଡ଼ା ହୁଏ । ଏହି ପ୍ରକାର କିଶୋର ରଚନା ପାଇଁ ଇଂରେଜୀରେ ଶବ୍ଦ ଅଛି ଜୁଭେନିଲିଆ । ଲେଖକମାନେ ଏହି ପିଲାଳିଆ ଲେଖାସବୁକୁ ଲୁଚାଇ ରଖନ୍ତି, କିନ୍ତୁ ପରବର୍ତ୍ତୀ ସମୟରେ କୁଶଳ ଗବେଷକମାନେ ତାକୁ ଖୋଜି ବାହାର କରି ସର୍ବସମକ୍ଷକୁ ଆଣନ୍ତି । ଇଂରେଜୀ କବି ଇଲିଅଟ ୧୬ରୁ ୨୨ ବର୍ଷ ଭିତରେ ଯେଉଁ ସବୁ କବିତା ଲେଖିଥିଲେ ଏବଂ ଯାହାକୁ ସେ ନିଜ ଜୀବନକାଳରେ ବହିରେ ପ୍ରକାଶ କରି ନ ଥିଲେ, ତାଙ୍କ ମୃତ୍ୟୁ ପରେ ସେ ସବୁ ସଂକଳିତ ହେଲା Poems Written in Early Youth ନାଁରେ । ଏବଂ କିଛି ସମୀକ୍ଷକ ଏ କଥା ମଧ କହିଲେ ଯେ ଏ କବିତାମାନ ତାଙ୍କର ପରବର୍ତ୍ତୀ କବିତାଠାରୁ କୌଣସି ଭାବେ ନ୍ୟୂନ ନୁହନ୍ତି ।

କବିମାନେ ପ୍ରାୟ କିଶୋର ବୟସର କବିତାକୁ ନିଜର କବିତା ସଂକଳନରେ ରଖନ୍ତି ନାହିଁ । ଏ କଥାର ମଧ ବ୍ୟତିକ୍ରମ ଅଛି । ରବୀନ୍ଦ୍ର ନାଥ ଠାକୁର ୧୬ ବର୍ଷ ବୟସରେ ଛଦ୍ମନାମରେ ଲେଖିଥିବା **ଭାନୁସିଂହେର ପଦାବଳୀ** ସବୁ ସମୟରେ ତାଙ୍କର କୃତି ମଧ୍ୟରେ ସ୍ଥାନ ପାଇଛି । ଏହି ବହିଟି ପ୍ରକାଶ ହେବା ପରେ ପରେ କୁଆଡ଼େ ଜଣେ ଗବେଷକ ଏହି ବହି ସମେତ ବୈଷ୍ଣବ କବିତା ଉପରେ ଗବେଷଣା କରି ଜର୍ମାନୀରୁ ପିଏଚ୍.ଡି ପାଇଥିଲେ । ଭାନୁସିଂହ ପଦାବଳୀ ରବୀନ୍ଦ୍ରନାଥ ଗ୍ରନ୍ଥାବଳୀରେ ସମ୍ମାନର ସ୍ଥାନ ପାଇଥାଏ ।

ଅନ୍ୟ କେତେକ ଲେଖକ ପରବର୍ତ୍ତୀ ଜୀବନରେ ନିଜର ପୂରୁଣା ଲେଖା ଖୋଜୁଥିବାର ଉଦାହରଣ ମଧ ଅଛି । ହେମିଙ୍ଗୱେଙ୍କର ପିଲାଦିନଟ ଲେଖା ହଜି ଯାଇଥିବାରୁ ସେ ଏଜରା ପାଉଣ୍ଡଙ୍କୁ ଦୁଃଖ କରି ଜଣାଇଥିଲେ । ଉତ୍ତରରେ ପାଉଣ୍ଡ ଲେଖିଲେ, ଏହା ଈଶ୍ୱରଙ୍କ ଇଚ୍ଛା । ପିଲାଳିଆ ଲେଖା ହଜିଯିବାରେ କେବେ କାହାରି ବିଶେଷ କ୍ଷତି ହୋଇନାହିଁ ।

କିଛି ଲେଖକ ନିଜର ଅଳ୍ପ ବୟସର ଲେଖାରେ ହିଁ ନାଁ କରିଥାନ୍ତି । ଏଡ୍‌ଗାର ଆଲାନ୍ ପୋ ୧୪ ବର୍ଷ ବୟସରେ ଲେଖିଥିବା 'ହେଲେନ' କବିତାକୁ ଆମେରିକା ସାହିତ୍ୟର ଏକ ଶ୍ରେଷ୍ଠ ଗୀତି କବିତା ବୋଲି କୁହାଯାଏ । ଫରାସୀ କବିତାର ଗତିଧାରା ବଦଳାଇ ଦେଇଥିବା କବି ର୍ାଁବୋ ନିଜର ସବୁ କବିତା ଲେଖି ସାରିଥିଲେ ୧୯ ବର୍ଷ ପୂରିବା ଆଗରୁ; ତା ପରେ ସେ କବିତା ଲେଖିବା ଛାଡ଼ି ଦେଲେ । ଡିଲାନ୍ ଟମାସ୍ ୧୮ରୁ ୨୦ ବର୍ଷ ଭିତରେ ତାଙ୍କର ଅଧାଅଧି କବିତା ଲେଖିସାରିଥିଲେ । ପ୍ରୁଫ୍‌ରକ ଲେଖିଲା ବେଳକୁ ଇଲିଅଟଙ୍କର ବୟସ ଥିଲା ୨୩ । ମେରି ଶେଲି Frankenstein ଲେଖିଥିଲେ ୨୧ ବର୍ଷ ବୟସରେ । ବଙ୍ଗଳାର ବିପ୍ଳବୀ କବି ସୁକାନ୍ତ ଭଟ୍ଟାଚାର୍ଯ୍ୟ ମାତ୍ର ୨୧ ବର୍ଷ ବଞ୍ଚିଥିଲେ ।

ଏହାର ବିପରୀତ କିଛି ଲେଖକ ଡେରିରେ ଲେଖା ଆରମ୍ଭ କରନ୍ତି । ୱାଲେସ ଷ୍ଟିଭେନ୍ସଙ୍କର ପ୍ରଥମ ବହି ବାହାରିଲା ତାଙ୍କୁ ଯେତେବେଳେ ୪୩ ବର୍ଷ, ରବର୍ଟ ଫ୍ରଷ୍ଟଙ୍କର ବାହାରିଲା ୩୯ ବର୍ଷରେ । ଆମର ଫକୀର ମୋହନ ତାଙ୍କର ପ୍ରଥମ ଉପନ୍ୟାସ ଲେଖିଲେ ୫୪ ବର୍ଷ ବୟସରେ । ଜୟନ୍ତ ମହାପାତ୍ର ପ୍ରଥମ କବିତା ଲେଖିଲେ ୪୨ ବର୍ଷ ବୟସରେ ।

ବର୍ତ୍ତମାନ ଦେଖାଯାଉ ଲେଖକମାନେ କେଉଁ ବୟସରେ ଲେଖାରୁ ଅବସର ନେଇଛନ୍ତି । ୩୭ ବର୍ଷ ବୟସରେ କବି ୱ୍ୱର୍ଡସୱର୍ଥ ଲେଖା ଛାଡ଼ିଦେଲେ; ଏହାପରେ ସେ ଆହୁରି ୪୩ ବର୍ଷ ବଞ୍ଚିଥିଲେ ଏବଂ କିଛି ବାଜେ କବିତା ଲେଖିଥିଲେ । ଇଲିଅଟ ସାହିତ୍ୟିକ ଜୀବନରୁ ଅବ୍ୟାହତି ନେଲେ ୫୪ ବର୍ଷ ବୟସରେ; ଏହାପରେ ସେ ଆହୁରି ୨୩ ବର୍ଷ ବଞ୍ଚିଥିଲେ । Moby Dickର ଲେଖକ ମେଲଭିଲ୍ ଜୀବନର ଶେଷ ୩୪ ବର୍ଷ କିଛି ବି ଲେଖି ନଥିଲେ । ଆମର ବାମପନ୍ଥୀ କବି ରଘୁନାଥ ଦାସ(ଜଟାୟୁ) ଅଧା ବୟସରେ ଲେଖାଲେଖି ସଂପୂର୍ଣ୍ଣ ଛାଡ଼ି ଦେଇଥିଲେ । ସେହିଭଳି ବଙ୍ଗଳାର ବାମପନ୍ଥୀ କବି ସମର ସେନ ୩୦ ବର୍ଷ ବୟସରେ କବିତା ଲେଖା ଛାଡ଼ି ଦେଇ ସାମ୍ବାଦିକତାରେ ମନ ଦେଲେ । ଏପରି ଏକ ହିସାବ କରି ଦେଖାଯାଇଛି ଯେ ବିଶିଷ୍ଟ ଲେଖକମାନେ ପ୍ରାୟ ୪୯ ବର୍ଷ ବୟସରେ ଲେଖାରୁ ସନ୍ନ୍ୟାସ ନେଇଛନ୍ତି ।

ଏହାର ଓଲଟା ହେଉଛନ୍ତି ଦାନ୍ତେ, ଚସର୍, ଗେଟେ, ଟଲଷ୍ଟୟ, ଜେମ୍ସ୍ ଜୟେସ୍ ଓ ରବୀନ୍ଦ୍ରନାଥ ଠାକୁର ପ୍ରମୁଖ । ବର୍ନାର୍ଡ ଶ' ତାଙ୍କର ପ୍ରଥମ ନାଟକ ଲେଖିଥିଲେ ୩୬ ବର୍ଷ ବୟସରେ ଓ ଶେଷ ନାଟକ ୯୪ ବର୍ଷ ବୟସରେ, ମୃତ୍ୟୁର କିଛି ମାସ ପୂର୍ବରୁ । ଟେନିସନଙ୍କର ଲେଖକ ଜୀବନ ଥିଲା ୬୫ବର୍ଷ; ପ୍ରଥମ କବିତା ୧୮ ବର୍ଷ ବୟସରେ ଓ ଶେଷ ୮୩ ବର୍ଷ ବୟସରେ । ରବୀନ୍ଦ୍ରନାଥ ଦୀର୍ଘକାଳ ଧରି ଲେଖିବାର ଉଦାହରଣ । ସେ ମୃତ୍ୟୁର ଦଶଦିନ ପୂର୍ବରୁ ୮୦ବର୍ଷ ବୟସରେ ଗୋଟିଏ ୩୩ଟି ଶବ୍ଦର ସଂପୂର୍ଣ୍ଣ କବିତା ଲେଖିଥିଲେ ।

ଆଉ କିଛି ଲେଖକ ପୁଣି ମଝି ଜୀବନରେ ତାଙ୍କ ଲେଖାର ଗତି ବଦଳାଇ ଦେଇଥିବାର ଉଦାହରଣ ଅଛି । ଫଷ୍ଟର୍ ତାଙ୍କର A Passage to India ଲେଖିଥିଲେ ୪୫ବର୍ଷ ବୟସରେ; ସେ ୯୧ ବର୍ଷ ବୟସ ପର୍ଯ୍ୟନ୍ତ ବଞ୍ଚିଥିଲେ ମଧ୍ୟ ଆଉ ଉପନ୍ୟାସ ଲେଖି ନଥିଲେ । ଯଦିଓ ଅଧିକାଂଶ ଲେଖକ ପ୍ରଥମେ କବିତା ଲେଖି ପରବର୍ତ୍ତୀ ସମୟରେ ଗଦ୍ୟକୁ ଯାଇଥାନ୍ତି, ଟମାସ ହାର୍ଡି ୩୦ ବର୍ଷ ଗଦ୍ୟ(ଉପନ୍ୟାସ) ଲେଖିବା ପରେ ଆହୁରି ୩୦ବର୍ଷରେ ୧୦୦୦ଟି କବିତା ଲେଖିଥିଲେ । ଆଉ କିଛି ଲେଖକ ଦୀର୍ଘ ସମୟ ଲେଖା ଛାଡ଼ି ଦେଇ ପୁଣି ଲେଖାକୁ ଫେରି ଆସିଛନ୍ତି । ଫରାସୀ କବି ପଲ୍ ଭ୍ୟାଲେରି ୨୦ ବର୍ଷ ଲେଖା ଛାଡ଼ିବା ପରେ ସାହିତ୍ୟକୁ ଫେରିଥିଲେ ।

ମୁଁ ଜାଣୁଛି ଯେ ଏହି ଲେଖାଟି ବର୍ତ୍ତମାନ ଉଦାହରଣ ଓ ପରିସଂଖ୍ୟାନରେ ଭାରାକ୍ରାନ୍ତ ଓ କ୍ଳାନ୍ତିକର ହୋଇଯାଇଛି । ତେବେ ଏହି ବିବରଣୀରୁ ଜାଣି ହେବ କିପରି ଲେଖକ ଜୀବନର କୌଣସି ବୟସ ସୀମା ଓ ନିୟମିତତା ନାହିଁ । ଲେଖକ ଯେଉଁ ବୟସରେ ଲେଖା ଆରମ୍ଭ କରିବ ଓ କେଉଁ ବୟସରେ ଅବସର ନେବ ତାର ନୀତିନିୟମ ନାହିଁ । ଆହୁରି ଗୋଟିଏ ଲକ୍ଷ୍ୟ କରିବାର କଥା ଯେ ଉଦାହରଣମାନ ବିଶେଷରେ ପାଶ୍ଚାତ୍ୟ ଦେଶର ଲେଖକମାନଙ୍କ ବିଷୟରେ । ଏହାର କାରଣ ସେମାନଙ୍କ ବିଷୟରେ ଆମେ ସହଜରେ ଯେତେ ବ୍ୟକ୍ତିଗତ ତଥ୍ୟ ପାଉ ଆମ ଦେଶର ଲେଖକମାନଙ୍କ କ୍ଷେତ୍ରରେ ତାହା ଉପଲବ୍ଧ ନୁହେଁ । ଆମ ଓଡ଼ିଆ ଲେଖକମାନଙ୍କ ବିଷୟରେ ଏହି ତଥ୍ୟ ଆହୁରି କମ୍ । ତେବେ ଯେଉଁମାନେ ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଲେଖକମାନଙ୍କ ବିଷୟରେ ଅବଗତ ଓ ସଚେତନ, ସେମାନେ ବୋଧହୁଏ ଆମର ବୟସ୍କ ଓ ପ୍ରସିଦ୍ଧ ଲେଖକମାନଙ୍କୁ ବିଭିନ୍ନ ଖୋପରେ ଖଂଜି ଦେଇପାରିବେ ।

ଉପର ଉଦାହରଣମାନଙ୍କରୁ ଦେଖାଗଲା ଯେ କୈଶୋରାବସ୍ଥାରୁ ପ୍ରୌଢ଼ାବସ୍ଥା ପର୍ଯ୍ୟନ୍ତ ଯେ କୌଣସି ସମୟରେ ଲେଖକ ଜୀବନ ଆରମ୍ଭ କରାଯାଇପାରେ । ଗୁରୁତର ପ୍ରଶ୍ନଟି ହେଲା ଲେଖକ ତାକୁ ଶେଷ କରିବ କେତେବେଳେ । ପ୍ରତ୍ୟେକ ଲେଖକକୁ ନିଜର ନିର୍ଣ୍ଣୟ ନେବାକୁ ହେବ ସେ କେତେବେଳେ ସନ୍ନ୍ୟାସ ନେବ । ବୟସ ବଢ଼ିବା ସଙ୍ଗେ ଅଧିକାଂଶ ଲୋକଙ୍କର ଶାରୀରିକ ସ୍ୱାସ୍ଥ୍ୟର ଅବନତି ଘଟିବା ସହ ଚିନ୍ତା, ମନନ ଓ ସୃଜନ ଶକ୍ତିର ମଧ୍ୟ ଅବନତି ଘଟେ । ଲେଖାର ଗୁଣବତ୍ତା ଉପରେ ଏହାର ପ୍ରଭାବ ପଡ଼େ । ଲେଖାରେ ଚମକ ଓ ସ୍ଫୂର୍ତ୍ତି କମିଯାଏ ଏବଂ କାଳକ୍ରମେ ଲେଖକ ନିଜର କଙ୍କାଳ ଓ କାର୍ଟୁନ ହୋଇ ରହିଯାଏ ।

ନିଜର ଲେଖାର ମାନ ବିଷୟରେ ଲେଖକ ନିଜେ ନିର୍ଣ୍ଣାୟକ ହେବା ଉଚିତ । କିନ୍ତୁ ଦୁଃଖର ବିଷୟ ଯେ ପ୍ରସିଦ୍ଧି ପାଇବା ପରେ କିଛି ଲେଖକଙ୍କୁ ଇନ୍ଦ୍ର ଚନ୍ଦ୍ର ଦେଖାଯାନ୍ତି ନାହିଁ ଓ ସେମାନେ ମିଥ୍ୟା ଅଭିମାନରେ ନିଜ ଲେଖାର ଏକ ଅତିରଂଜିତ ଆକଳନ କରନ୍ତି । ସେମାନେ ଭାବନ୍ତି ଯେ ସେମାନେ ଯାହା ବି ଲେଖୁଛନ୍ତି, ସବୁ ପ୍ରଥମ ଶ୍ରେଣୀର ଓ ସର୍ବୋତ୍ତମ ଏବଂ ପାଠକମାନେ ତାକୁ ପିଇଯିବେ । ଏହି ଭ୍ରମାତ୍ମକ ଧାରଣା ନେଇ ସେମାନେ କୁଢ଼ କୁଢ଼ ଅପାଠ୍ୟ ଅସାହିତ୍ୟ ତିଆରି କରି ପାଠକଙ୍କ ଉପରେ ଲଦି ଦିଅନ୍ତି । କହିବା ବାହୁଲ୍ୟ ଯେ ପାଠକମାନେ ଏ ସବୁ ଲେଖାରୁ ମୁହଁ ବୁଲାଇ ଥୁ କରିଦିଅନ୍ତି । ଶାନ୍ତନୁ କୁମାର ଆଚାର୍ଯ୍ୟ ଏହି କଥାକୁ

ସାମାନ୍ୟ ଭିନ୍ନ ଭାବରେ ଦେଖିଛନ୍ତି ଏବଂ ଲେଖିଛନ୍ତି:

"ଗୋଟିଏ ନିର୍ଦ୍ଦିଷ୍ଟ ସମୟ ପରେ ସବୁ ଲେଖକଙ୍କୁ ଲାଗେ ସେମାନେ ଯାହା ଲେଖୁଛନ୍ତି ତାହା ଅନ୍ୟଥା ପୁନର୍କଥନ । ଏପରି ଚିନ୍ତା ନ କରି ଯେଉଁମାନେ ମାଟି କାମୁଡ଼ିବା ଯାଏ ଲେଖି ଚାଲନ୍ତି, ସେମାନେ ଶେଷକୁ ଗୁଡ଼ାଏ repetition କରନ୍ତି ।"(ଚେର, ଜୁଲାଇ ୨୦୧୫ସଂଖ୍ୟା)

ଏ ଭଳି ଲେଖକମାନେ ଅନେକ ସମୟରେ ସ୍ପଷ୍ଟୀକରଣ ଦେଇଥାନ୍ତି ଯେ ସାହିତ୍ୟ ପତ୍ରିକାର ସଂପାଦକମାନଙ୍କର ବାରମ୍ବାର ଅନୁରୋଧ, ଉପରୋଧ ଓ ତାଗିଦା ଏଡ଼ାଇ ନ ପାରି ସେମାନେ ବାଧ ହୋଇ ଲେଖୁଛନ୍ତି । ଅବଶ୍ୟ ଏଥିପାଇଁ ସଂପାଦକମାନେ ବଂଧୁକ ବ୍ୟବହାର କରୁଥିବା ଶୁଣାନାହିଁ । ସାହିତ୍ୟ ପତ୍ରିକାରେ ଲେଖାପାଇଁ ଟଙ୍କା ଦିଆଯାଏ ନାହିଁ, କିନ୍ତୁ ସଂପାଦକଙ୍କ ହାତରେ ଆଉ ଗୋଟିଏ ଅସ୍ତ୍ର ବା ଥୋପ ଅଛି । ସେଇଟି ହେଲା ମୃତପ୍ରାୟ ଲେଖକକୁ ଆଉ କିଛି ଦିନ ଜୀବନ୍ତ କରି ରଖିବାର ପ୍ରଲୋଭନ ।

ଆମ ସାହିତ୍ୟ ପତ୍ରିକାର ସଂପାଦକମାନେ ଲେଖକମାନଙ୍କର ଏକ ଶ୍ରେଣୀ ବିଭାଗ କରି ସୂଚୀପତ୍ରରେ ସେମାନଙ୍କର ତୁଳନାତ୍ମକ ସ୍ଥାନ ନିର୍ଦ୍ଧାରଣ କରନ୍ତି ଓ ସେମାନଙ୍କୁ କ୍ରମାନୁକ୍ରମିକ ଭାବେ ଅବସ୍ଥାପିତ କରନ୍ତି । ଏହି ସୂଚୀପତ୍ରରେ କିଏ କେତେ ନମ୍ବରରେ ରହିଲା ତା ଲେଖକର ପ୍ରତିଷ୍ଠାକୁ ସୂଚାଏ ଏବଂ ଏହି ଆପେକ୍ଷିକ ସ୍ଥାନ ନିରୂପଣ ଅନେକ ସମୟରେ ବାଦ ବିସମ୍ବାଦ, ମାନ ଅଭିମାନ, ରାଗ ରୋଷ ଓ ଶତ୍ରୁତାର କାରଣ ହୋଇଥାଏ । ସୂଚୀପତ୍ର ତାଲିକାର ଉପରେ ରହିଲେ, ତାର ଲେଖା ଯେତେ ନିମ୍ନମାନର ହୋଇଥାଉ ପଛେ, ଲେଖକ ନିଶ୍ଚିନ୍ତ ରହେ ଯେ ସିନିଅରିଟି ଲିଷ୍ଟରେ ତାର ସ୍ଥାନ ନିରାପଦ ଅଛି । ସେଥିପାଇଁ ସେ ଆଉ ଅବସର ନେବା କଥା ଭାବେ ନାହିଁ । ଆଶ୍ୱାସନାର ବିଷୟ ଯେ ଏହି ସୂଚୀପତ୍ରର ଛକାପଂଝା ତଥାକଥିତ ପ୍ରତିଷ୍ଠିତ ଲେଖକମାନଙ୍କରେ ସୀମିତ; ଏ ବିଷ ଅନ୍ୟ ଲେଖକଙ୍କ ଭିତରେ ଚରିଯାଇନାହିଁ ।

ଆମ ଦେଶରେ ବୟସର ମର୍ଯ୍ୟାଦା ଥିବାରୁ ବୃଦ୍ଧ (ଯାହାଙ୍କୁ ସାହିତ୍ୟିକ ଭାଷାରେ ବରିଷ୍ଠ କୁହାଯାଇଥାଏ) ଲେଖକମାନଙ୍କୁ ସବୁ ସମୟରେ ସମ୍ମାନ ଦିଆଯାଇଥାଏ । ସଭା ସମିତିରେ ସେମାନେ ମଞ୍ଚ ଉପରେ, ନ ହେଲେ ଅତି କମ୍‌ରେ ସଭାଘରର ଆଗଧାଡ଼ିରେ ବସନ୍ତି । ସାହିତ୍ୟ ସଭାମାନଙ୍କରେ ସଭାପତି, ମୁଖ୍ୟ ଅତିଥି, ପ୍ରଧାନ ବକ୍ତା, ଉଦ୍‌ଘାଟକ ଓ ପୁସ୍ତକ ଉନ୍ମୋଚକ ହେବା ପାଇଁ ସେହିମାନଙ୍କୁ ହିଁ ଡକା

ଯାଇଥାଏ । ଏହି ସବୁ ସମାଦରରୁ ସେମାନଙ୍କର ଧାରଣା ହୁଏ ଯେ ସେମାନଙ୍କର ସାହିତ୍ୟିକ ଜୀବନର ଆହୁରି ଭବିଷ୍ୟତ ଅଛି । ଶେଷ ଜୀବନର ଏହି ଶୋଚନୀୟ ଅବସ୍ଥାରେ ଲେଖକ କଣ କରନ୍ତି, ସେ କଥା ଗୋପୀନାଥ ମହାନ୍ତି ନିମ୍ନମତେ ବର୍ଣ୍ଣନା କରିଛନ୍ତି:

କବି ଜୀବନର ଶେଷ ଦୃଶ୍ୟରେ ଯେତେବେଳେ ବନ୍ଧ୍ୟାତ୍ୱ ଆସେ... ବନ୍ଧା ଗତରେ ଛୁଞ୍ଚି ମାଛି ପରଖ ଦେଖାଇ ତରୁଣ ଦଳ ସଂଗେ ଆକ୍ରୋଶ ରଖି ଯୁଝିବାକୁ ପ୍ରବୃତ୍ତ ହୁଅନ୍ତି । ଧୂପ ଆଣ, ଅର୍ଘ୍ୟ ଆଣ, ମୋତେ ପୂଜା କର ଏପରି ଅବସ୍ଥା ମଧ ଆସେ । ଲୋଭ ହୁଏ ସିଂହାସନ ବଜାୟ ରଖିବା ଲାଗି । ସିଂହାସନ ଚାଲିଗଲେ ସୁଦ୍ଧା ଉଇ ହୁଙ୍କାରେ ଶିଆଳ ରାଜା ହୋଇ ଥାଟ ଦେଖାଇବାକୁ ଇଚ୍ଛା ହୁଏ । (କଳାଶକ୍ତି, ଓଡ଼ିଆ ସାହିତ୍ୟ ଚିନ୍ତା, ୨୦୧୨)

ଆମ ଦେଶରେ ଶାଳୀନତାର ସହିତ ଅବସର ନେବାର ପ୍ରଥା ନାହିଁ । ଔଷଧ ବୋତଲରେ ଶେଷ ହେବାର ତାରିଖ ଲେଖା ହୋଇଥିବା ଭଳି ସରକାରୀ କର୍ମଚାରୀ ଚାକିରି ଆରମ୍ଭ କରିବା ବେଳୁ ଜାଣିଥାନ୍ତି କେଉଁ ନିର୍ଦ୍ଦିଷ୍ଟ ଦିନ ତା ଶେଷ ହେବ । କିନ୍ତୁ ସେ ଦିନଟି ଆସିଲେ ସେମାନେ କନ୍ଦାକଟା କରନ୍ତି ଓ ଆହୁରି ଚାକିରି ଖୋଜନ୍ତି । କ୍ରିକେଟ ଖେଳାଳୀର ଖେଳରେ ଅଧୋଗତି ହେଉଥିଲେ ମ୍ଧ ସେ ଯେତେଦିନ ସମ୍ଭବ ଦଳରେ ଲାଖି ରହେ । ଫିଲ୍ମଷ୍ଟାର୍ ବୟସ ବଢ଼ିବା ସତ୍ତ୍ୱେ ହିରୋ ହୋଇ ରହିବାକୁ ଚାହେଁ ଦର୍ଶକ ତାକୁ ବକ୍ସ ଅଫିସ୍ ବାହାରକୁ ଫିଙ୍ଗି ଦେବା ପର୍ଯ୍ୟନ୍ତ । ପରିବାରର ମୁରବୀ ଆହୁରି ଆହୁରି ବୁଢ଼ା ହୋଇଯାଉଥିବା ବେଳେ ନିଜର ବୟସ୍କ ପିଲାମାନଙ୍କୁ ଶାସନରେ ରଖିବାର ସ୍ପର୍ଦ୍ଧା କରେ ।

ଅବସର ବୟସ ପୂର୍ବରୁ ସରକାରୀ ଚାକିରିଆଙ୍କୁ ବିଦାୟ କରିବାର ବ୍ୟବସ୍ଥା ଅଛି । ପଚାଶ ବର୍ଷ ହେବା ପରେ ସରକାର କାମର ମୂଲ୍ୟାଙ୍କନ କରି ଅଯୋଗ୍ୟ କର୍ମୀଙ୍କୁ ବାଧ୍ୟତାମୂଳକ ଅବସର ଦେଇପାରନ୍ତି । ଅଯୋଗ୍ୟ ଲେଖକଙ୍କୁ ଏ ଭଳି ବାଧ କରିବାର କୌଣସି ନିୟମ ନାହିଁ । ତେବେ ଖରାପ ଲେଖୁଥିବା କବିଙ୍କ ପାଇଁ ଶେକ୍ସପିଅର ତାଙ୍କର ଜୁଲିଅସ୍ ସିଜାର ନାଟକରେ ଏ ଭଳି ଏକ ଦୃଶ୍ୟ ରଖିଛନ୍ତି:

ତୃତୀୟ ନାଗରିକ- ସତ କହ, ତମର ନାଁ କ'ଣ ?

ସିନ୍ନା- ସତ କହୁଚି, ମୋ ନାଁ ସିନ୍ନା ।

ପ୍ରଥମ ନାଗରିକ- ତାକୁ ମାରି ଖଣ୍ଡ ଖଣ୍ଡ କରିଦିଅ । ସେ ଷଡ଼ଯନ୍ତକାରୀ ।

ସିନ୍ନା- ମୁଁ କବି ସିନ୍ନା । ମୁଁ କବି ସିନ୍ନା ।

ଚତୁର୍ଥ ନାଗରିକ- ଖରାପ କବିତା ଲେଖୁଥିବାରୁ ତାକୁ ଖଣ୍ଡ ଖଣ୍ଡ କରିଦିଅ ।

ଆମର ଅନେକ ବୟସ୍କ କବି ଖରାପ କବିତା ଲେଖିବା ସହିତ ସାହିତ୍ୟରେ ଷଡ଼ଯନ୍ତ୍ରକାରୀ ମଧ୍ୟ । ସେମାନେ ସାହିତ୍ୟରେ ଗୋଷ୍ଠୀ ତିଆରି କରନ୍ତି, ଅନୁଷ୍ଠାନମାନଙ୍କୁ ନିୟନ୍ତ୍ରଣ କରନ୍ତି ଓ ଯୁବ ଲେଖକମାନଙ୍କ ଲେଖା ଉପରେ ନିନ୍ଦା ବା ପ୍ରଶଂସାର ମୋହର ଦିଅନ୍ତି । ନିଜେ ସବୁ ସମ୍ମାନ ଓ ପୁରସ୍କାର ଗୁଣ୍ଡାଇ ନେବା ପରେ ବଳକାତକ ନିଜ ଲୋକଙ୍କୁ ଦେଇ ଏକ ସମର୍ଥକ ଦଙ୍ଗଲ ତିଆରି କରନ୍ତି । ଫତୁରାନନ୍ଦ ଏ ସବୁକୁ ନେଇ ତାଙ୍କର ଆତ୍ମଜୀବନୀରେ ଗୋଟିଏ ପରିଚ୍ଛେଦ ରଖିଛନ୍ତି ଯାହାର ନାଁ 'ଓଡ଼ିଆ ସାହିତ୍ୟରେ ଧସ୍ତାଧସ୍ତି' ।

ଆମ ଦେଶରେ ସବୁ ବୟସ୍କ ଲୋକ(ଲେଖକମାନଙ୍କ ସମେତ) ଯୁବକମାନଙ୍କ ଶ୍ରଦ୍ଧାର ଅପମାନ କରନ୍ତି ସେମାନଙ୍କ ପାଇଁ ଜାଗା ଖାଲି ନକରି । ଆମର ସମାଜ, ଆମର ସମ୍ବାଦପତ୍ର ଓ ପତ୍ରପତ୍ରିକାମାନେ ଏହି ବ୍ୟବସ୍ଥାକୁ କେବଳ ମାନି ନିଅନ୍ତି ନାହିଁ, ସମର୍ଥନ କରନ୍ତି । ଏହାକୁ କିପରି ବଦଳାଇବାକୁ ହେବ ଓ ବୟସ୍କମାନଙ୍କୁ କିପରି ଅବସର ନେବାକୁ ବାଧ୍ୟ କରାଯିବ, ସେ କଥା ସେହି ବୟସ୍କମାନଙ୍କ ଉପରେ ଛାଡ଼ି ନ ଦେଇ ତାକୁ ଯୁବକମାନେ ନିଜ ହାତକୁ ନେଇ ନିଅନ୍ତୁ ।

*ନଭେମ୍ବର ୨୦୧୫*

# ପ୍ରସାର ଓ ପ୍ରସିଦ୍ଧିର ପରିସୀମା

ପ୍ରସିଦ୍ଧି ଓ ମହତ୍ତ୍ୱ ଅଲଗା ଜିନିଷ । ପ୍ରସିଦ୍ଧି ହେଉଛି ଖ୍ୟାତି(ବା ଅପଖ୍ୟାତି), ବ୍ୟାପକ ପରିଚିତି, ବେଶି ଜଣାଶୁଣା ହୋଇଥିବା । ମହତ୍ତ୍ୱ ହେଉଛି ଉତ୍କର୍ଷ, ଶ୍ରେଷ୍ଠତ୍ୱ । କିଏ କେତେ ପ୍ରସିଦ୍ଧ ତା ସର୍ଭେ କରି ଜାଣି ହେବ; ମହାନତାକୁ ଆକଳନ କରିବାର ଏ ଭଳି କୌଣସି ସହଜ ସୂତ୍ର ନାହିଁ । ହିଟଲର ନିଶ୍ଚୟ ପ୍ରସିଦ୍ଧ ଲୋକ ଥିଲେ; ଗାନ୍ଧୀ ଥିଲେ ମହାନ ।

ଲୋକମାନଙ୍କର ରୁଚି ବଦଳୁଥିବାରୁ ବିଭିନ୍ନ ସମୟରେ କରାଯାଇଥିବା ସର୍ବେକ୍ଷଣରେ ପ୍ରସିଦ୍ଧ ଲୋକମାନଙ୍କର ତାଲିକା ଓ ସେଥିରେ ନିର୍ଦ୍ଧାରିତ ସ୍ଥାନ ବଦଳିବାରେ ଲାଗିଥାଏ । ୧୮୯୮ରେ ଆମେରିକାର ଏକ ସର୍ଭେରେ ଲୋକପ୍ରିୟତାର ଶୀର୍ଷରେ ଥିଲେ ଜର୍ଜ ୱାଶିଂଟନ ଓ ହେଲେନ କେଲେରଙ୍କର ଶିକ୍ଷୟିତ୍ରୀ ଆନ୍ ସଲିଭାନ୍ । ୧୯୫୦ରେ ସେ ସ୍ଥାନକୁ ଆସିଲେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପ୍ରଖ୍ୟାତ ଜେନେରାଲ ଡଗ୍‌ଲାସ୍ ମାକ୍‌ଆର୍ଥର୍ ଓ ଫ୍ଲରେନ୍ସ ନାଇଟିଙ୍ଗେଲ । ୧୯୯୮ରେ ଆସିଲେ ଖେଳାଳି ମାଇକେଲ୍ ଜର୍ଡାନ ଓ ଅଭିନେତ୍ରୀ ଜେନିଫର ଲଭ୍ ହିଓ୍ବିଟ୍ । ଆମ ଦେଶରେ ୨୦୦୦ରେ ହୋଇଥିବା ଏକ ସର୍ଭେରେ ଅଟଳ ବିହାରୀ ବାଜପେୟୀ ଓ ଲତା ମଙ୍ଗେଶକର ସବା ଉପରେ ଥିବାବେଳେ ଅବଦୁଲ କଲାମ ଥିଲେ ଅଷ୍ଟମ ଓ ଅମର୍ତ୍ତ୍ୟ ସେନ ଦଶମ ।

ଏ ଭଳି ପ୍ରସିଦ୍ଧ ଲୋକଙ୍କ ତାଲିକାରେ ସାଧାରଣତଃ ଲେଖକମାନେ ସ୍ଥାନ ପାଆନ୍ତି ନାହିଁ । ଥରେ ଓଡ଼ିଶାର ଏକ ଟିଭି ଚ୍ୟାନେଲର 'ପ୍ରିୟ ଓଡ଼ିଆ' କାର୍ଯ୍ୟକ୍ରମରେ ଦଶଜଣଙ୍କ ଭିତରେ ବିଭୂତି ପଟ୍ଟନାୟକ ଓ ମନୋଜ ଦାସଙ୍କର ନାଁ ଥିଲା । ପ୍ରାରମ୍ଭିକ ପର୍ଯ୍ୟାୟରେ ଦୁହିଁଙ୍କର ନାଁ ସର୍ଭେରୁ କଟିଗଲା । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା ।

ଲେଖକମାନଙ୍କର ପ୍ରସିଦ୍ଧି ବିଷୟରେ କହିବା ବେଳେ ସେହିପରି ଭାବେ ତାଙ୍କର ଲେଖାର ଗୁଣବତ୍ତା ବିଷୟରେ ନୁହେଁ ତାଙ୍କର ଖ୍ୟାତି ହିଁ ଆଲୋଚନାକୁ ଆସିବ । ତାର ଅର୍ଥ ହେଲା ମପାଯିବ ସେ କେତେ ବହି ଲେଖିଛନ୍ତି, କି କି ସମ୍ମାନ ପାଇଛନ୍ତି ଓ ତାଙ୍କୁ କେତେକାଳ ଯାଏ ଲୋକେ ମନେ ରଖିବେ ବୋଲି ଆଶା କରାଯାଏ ।

ଲେଖକଙ୍କର ପ୍ରସିଦ୍ଧି ମୂଳରେ ହେଉଛି ତାଙ୍କ ବହିର ପ୍ରସାର । ନେତା, ଅଭିନେତା, ଖେଳାଳି, ନର୍ତ୍ତକୀ ଓ ସଂଗୀତଜ୍ଞଙ୍କ ପ୍ରସାର ପାଇଁ ବିଭିନ୍ନ ପ୍ରକାରର ମାଧ୍ୟମ ଅଛି, ଯଥା, ଖବରକାଗଜ, ରଂଗମଂଚ, ଫିଲ୍ମ, ରେଡିଓ, ଟିଭି, ସୋସାଲ ମିଡିଆ ଇତ୍ୟାଦି । ଲେଖକଙ୍କର ପ୍ରସିଦ୍ଧି କିନ୍ତୁ ଛପା (ବା ବର୍ତ୍ତମାନ ଡିଜିଟାଲ) ବହି ଉପରେ ନିର୍ଭରଶୀଳ । ଅବଶ୍ୟ ଦିନ ଥିଲା ଯେତେବେଳେ ଛପା ହେବା ତ ଦୂରର କଥା, ପାଠ କେବଳ ଶ୍ରୁତିରେ ଥିଲା, ଲେଖାରେ ନୁହେଁ । ସେ ସମୟରେ ସାହିତ୍ୟ ସମେତ ସବୁ ଜ୍ଞାନ ଶ୍ରୁତିନିର୍ଭର ଥିଲା । ଶୁଣି ଶୁଣି ହିଁ ପୀଢ଼ୀ ପରେ ପୀଢ଼ୀର ଲୋକ ଜ୍ଞାନ ପାଉଥିଲେ । ଏପରିକି ଆମର ସବୁଠାରୁ ପୁରୁଣା ପାଠ ବେଦର ପ୍ରସାର ମାଧ୍ୟମ ମୁଖନିଃସୃତ ଥିଲା ଏବଂ ସେଥିପାଇଁ ଏହାର ଅନ୍ୟନାମ ଥିଲା ଶ୍ରୁତି । ଇଉରୋପରେ ମଧ୍ୟ ହୋମରଙ୍କ ସମୟରେ ଶ୍ରୁତିର ହିଁ ପ୍ରାଧାନ୍ୟ ଥିଲା । ଏପରିକି ଯେତେବେଳେ ପାଠକୁ ଲିପିବଦ୍ଧ କରାଗଲା ପ୍ଲେଟୋ ତାର ବିରୋଧ କରିଥିଲେ । ଏହି କାରଣରୁ ପାଠର ପ୍ରସାର ଅତି ସୀମିତ ଥିଲା ।

ଯେତେବେଳେ ଲେଖା ଆରମ୍ଭ ହେଲା, ବହି ସଂଖ୍ୟା ଅତି କମ ଥିଲା, କାରଣ ହାତଲେଖାରେ ବହିକୁ ବହିରୁ ଉତାରିବାକୁ ହେଉଥିଲା । ଲେଖନକାର ବା ଲିପିକାରମାନେ ଭୂର୍ଜପତ୍ର, କାଗଜ ଓ ତାଳପତ୍ର ଉପରେ ପାଠକୁ ନକଲ କରୁଥିଲେ । ଏଥିପାଇଁ ଆମ ଦେଶରେ, ଏବଂ ବିଶେଷରେ ଓଡ଼ିଶାରେ, ତାଳପତ୍ର ହିଁ ବ୍ୟବହୃତ ହେଉଥିଲା । ଇଉରୋପରେ ଧର୍ମଗ୍ରନ୍ଥ ନକଲ କରିବା ପାଇଁ ଖ୍ରୀଷ୍ଟିଆନ ମଠର ସନ୍ନ୍ୟାସୀ ନିଯୁକ୍ତ ହେଉଥିଲେ । ଲେଖିଲେଖି ଥକି ଯାଇଥିବା ସନ୍ନ୍ୟାସୀ ସେ ସମୟରେ ଏ ଭଳି ଲେଖିଥିଲେ : ପାଣିଚିଆ ସ୍ୟାହି, ଖରାପ କାଗଜ, କଠିନ ପାଠ । ଥ୍ୟାଙ୍କ୍ ଗଡ୍, ଏବେ ଅନ୍ଧାର ହେବାକୁ ଯାଉଛି; ମୁଁ ଲେଖା ପୂରା କରଦେଲି । ଖ୍ରୀଷ୍ଟଙ୍କ ଦ୍ୱାହି, ଏବେ ମତେ ଗୋଟିଏ ଡ୍ରିଙ୍କ୍ ଦିଅ । ସମାନ ପରିସ୍ଥିତିରେ ଓଡ଼ିଶାରେ ତାଳପତ୍ର ଉପରେ ଲୁହା ଲେଖନୀରେ ପାଠ ଉତାରୁଥିବା ଆମର କରଣ ଲିପିକାର ଲେଖିଛନ୍ତି : ଭଗ୍ନ ପୃଷ୍ଠ କଟୀ ଗ୍ରୀବା ତୁଲ୍ୟ ଦୃଷ୍ଟି ଅଧୋମୁଖମ, ଦୁଃଖେନ ଲିଖିତ ଗ୍ରନ୍ଥ ପୁତ୍ରବତ୍ ପରିପାଳୟେତ ।

ଶ୍ରୁତି ଓ ହାତ ଲେଖା ପରେ ପଞ୍ଚଦଶ ଶତାବ୍ଦୀରେ ଆସିଲା ଗୁଟେନବର୍ଗଙ୍କ ଟାଇପ ଓ ଛପାର ଯୁଗ । ହାତ ଲେଖା ପୋଥିର ସଂଖ୍ୟା ସବୁବେଳେ କମ ଥିଲା ଏବଂ ଏହାକୁ କେବଳ ଧନୀ ଲୋକମାନେ ହିଁ କିଣି ପାରୁଥିଲେ । ଗୁଟେନବର୍ଗଙ୍କ ପୂର୍ବରୁ ଇଉରୋପରେ ମାତ୍ର ୩୦,୦୦୦ ବହି ଥିଲା । ପଚାଶ ବର୍ଷ ଭିତରେ ଛପା ବହିର ସଂଖ୍ୟା ହୋଇଗଲା ପ୍ରାୟ ନବେ ଲକ୍ଷ । ଏହି ଜ୍ଞାନର ବିସ୍ଫୋରଣ ହିଁ ଇଉରୋପକୁ ଆଣି ଦେଲା ରେନେସାଁ । ଆମ ଓଡ଼ିଶାରେ କିନ୍ତୁ ଜଗନ୍ନାଥ ଦାସଙ୍କ ଭାଗବତର ଲୋକପ୍ରିୟତା ଦୃଷ୍ଟିରୁ ଏହା ତାଳପତ୍ର ପୋଥିରେ ବହୁଳ ଭାବରେ ନକଲ କରା ହେଉଥିଲା ଏବଂ ବହୁ ସଂଖ୍ୟାରେ ଉପଲବ୍‌ଧ ଥିଲା । ଏହି ପୋଥି ମାଧ୍ୟମରେ ହିଁ ଆମ ଗାଁ'ର ଝିଅମାନେ ପଢ଼ିବା ଶିଖୁଥିଲେ ଏବଂ ଗାଁ ଗହଳରେ ସାକ୍ଷରତା ବ୍ୟାପିଥିଲା । ଓଡ଼ିଆରେ ଛପା ବହିର ପ୍ରଚଳନ ହେଲା ଅନେକ ଡେରିରେ; ବିଂଶ ଶତାବ୍ଦୀ ପ୍ରଥମ ଦୁଇ ଦଶକ ପର୍ଯ୍ୟନ୍ତ ତାଳପତ୍ର ପୋଥିରେ ହିଁ ଆମର ଜ୍ଞାନ, ପଠନ ଓ ଶିକ୍ଷା ସୀମାବଦ୍ଧ ଥିଲା ।

ବର୍ତ୍ତମାନ ପ୍ରସାରର ଆଉ ଗୋଟିଏ ଯୁଗ ଆସିଛି ଡିଜିଟାଲ ବ୍ୟବସ୍ଥା । ଏହା ଲିଖିତ ପାଠକୁ ଆହୁରି ସହଜରେ ଓ ଆହୁରି ଶସ୍ତାରେ ଅଗଣିତ ପାଠକଙ୍କ ପାଖରେ ପହଞ୍ଚାଇ ଦେଇପାରିବ । ଓଡ଼ିଆ ସାହିତ୍ୟ କେତେ ଶୀଘ୍ର ଏଥିରେ ସାମିଲ ହେବ, ଦେଖିବାର କଥା ।

ଛପା ବହି ମିଳିବା ପରେ ଲେଖକର ପ୍ରସିଦ୍ଧି ମାପିବାର ଗୋଟିଏ ମାନକ ହେଲା ଲେଖକ କେତେ ବହି ଲେଖିଛନ୍ତି ଓ ତାହା କେତେ ସଂଖ୍ୟାରେ ବିକ୍ରି ହୋଇଛି । ଆମ ଦେଶରେ ବେଶି ବହି ଲେଖିଥିବା ବିଷୟରେ ପଡ଼ୋଶୀ ବଙ୍ଗଳାର ଲେଖକମାନେ ବିଶେଷ ଜଣାଶୁଣା । ଆଶାପୂର୍ଣ୍ଣା ଦେବୀ ଷାଠିଏ ଦଶକର ଦଶ ବର୍ଷରେ ୬୨ଟି ଉପନ୍ୟାସ ଲେଖିଥିଲେ; ସୁନୀଲ ଗଙ୍ଗୋପାଧ୍ୟାୟ ୧୯୬୬ରେ ତାଙ୍କର ପ୍ରଥମ ଉପନ୍ୟାସ ଲେଖିବାର ଦଶବର୍ଷ ଭିତରେ ୪୧ଟି ଉପନ୍ୟାସ ଲେଖିଥିଲେ । ଓଡ଼ିଆ ସାହିତ୍ୟରେ ଏ ଭଳି ପ୍ରଜନନଦକ୍ଷତା ବିଷୟରେ କୌଣସି ତଥ୍ୟ ସହଜରେ ଉପଲବ୍‌ଧ ନୁହେଁ । ବୋଧହୁଏ ଓଡ଼ିଆରେ ସବୁଠାରୁ ବେଶି ବହି ଲେଖିଥିବାର ଶ୍ରେୟ ଯିବ ବିଭୂତି ପଟ୍ଟନାୟକଙ୍କୁ । ସେ ଥରେ କହୁଥିଲେ ଯେ ସେ ନିଜେ ହିସାବ ରଖିପାରିନାହାନ୍ତି ସେ କେତୋଟି ବହିର ଲେଖକ ।

ଇଂରେଜୀ ସାହିତ୍ୟରେ ଶହଶହ ବହି ଲେଖିଥିବା ଲେଖକଙ୍କ ସଂଖ୍ୟା ଅନେକ ।

ଇଲିଅଟ କହିଥିଲେ ଯେ ଜଣେ ଲେଖକ ଦୁଇ ପ୍ରକାର ଭାବେ ପ୍ରସିଦ୍ଧ ହୋଇପାରେ, ଅନେକ ବେଶି ଲେଖି କିମ୍ବା ଖୁବ କମ ଲେଖି । ସେ ନିଜେ ଦ୍ୱିତୀୟ ଶ୍ରେଣୀର ଉଦାହରଣ । ତାଙ୍କର ମୋଟ କବିତା ସଂଖ୍ୟା ୫୪ । ଏହାର ଅନ୍ୟ ଦିଗରେ ଅଛନ୍ତି ୱାର୍ଡସୱାର୍ଥ ଯେ କି ଏକ ହଜାରରୁ ଅଧିକ କବିତା ଲେଖିଥିଲେ । ଆମର ଗୁରୁପ୍ରସାଦ ମହାନ୍ତି ପ୍ରସିଦ୍ଧି ପାଇଛନ୍ତି ଅଳ୍ପ ସଂଖ୍ୟକ କବିତା ଲେଖି । ହିନ୍ଦୀ ସାହିତ୍ୟରେ ଚନ୍ଦ୍ରଧର ଶର୍ମା ଗୁଲେରୀ ପ୍ରସିଦ୍ଧ ତାଙ୍କର ଗୋଟିଏ ଗଳ୍ପ 'ଉସନେ କହା ଥା' ପାଇଁ । ବୁକର ବିଜୟିନୀ ଅରୁନ୍ଧତୀ ରାୟଙ୍କର ସାହିତ୍ୟିକ କୃତୀ ମାତ୍ର ଗୋଟିଏ ଉପନ୍ୟାସ ।

ସେହିଭଳି ଜଣେ ଲେଖକ ବେଶି ଲେଖୁଥିଲେ ମଧ୍ୟ ପ୍ରସିଦ୍ଧ ହୋଇଥାଏ ଅଳ୍ପ କିଛି ଲେଖା ପାଇଁ । ପ୍ରେମଚନ୍ଦ ପ୍ରାୟ ୭୦୦ ଗଳ୍ପ ଲେଖିଥିଲେ ହେଁ ଦଶ ପନ୍ଦରଟି ଶ୍ରେଷ୍ଠ ଗଳ୍ପ ପାଇଁ ମନେ ରହିବେ । ଫକୀରମୋହନ ଜଣାଶୁଣା ଆଠ ଦଶଟି ଗଳ୍ପ ପାଇଁ । ସଚ୍ଚି ରାଉତରାୟଙ୍କ ଗଳ୍ପ ସଂଖ୍ୟା କମ ହୋଇଥିଲେ ମଧ୍ୟ ସେଥିରୁ କେତୋଟି ନିଶ୍ଚୟ ସ୍ମରଣୀୟ ।

ବିକ୍ରି ସଂଖ୍ୟା ହିସାବ କଲା ବେଳେ ଓଡ଼ିଆ ବହି କଥା ନ କହିବା ଭଲ । ଇଂରେଜୀ ପଢୁଥିବା ପାଠକ ବିଶ୍ୱବ୍ୟାପୀ ହୋଇଥିବାରୁ ସେ ଭାଷାର ବେଷ୍ଟସେଲର୍ ଲକ୍ଷ ଲକ୍ଷ ସଂଖ୍ୟାରେ ବିକ୍ରି ହୁଏ । ଆମ ଦେଶର ବିଭିନ୍ନ ଭାଷାଭାଷୀଙ୍କ ସଂଖ୍ୟାକୁ ନେଇ ସେ ଭାଷାର ବହି କେତେ ବିକ୍ରି ହୁଏ ତାର କୌଣସି ତୁଳନାତ୍ମକ ପରିସଂଖ୍ୟାନ କରାଯାଇ ନାହିଁ । ତେବେ ଏ କଥା ଜଣାଶୁଣା ଯେ ଓଡ଼ିଆ ବହି କିଣିବା ଲୋକ ସବୁ ସମୟରେ ଅଳ୍ପ ସଂଖ୍ୟକ । ଗୋଟିଏ ବହି କିଛି ଶହ ବିକ୍ରି ହେଲେ ବୋଧହୁଏ ତାକୁ ଆମର ବେଷ୍ଟ୍ ସେଲର୍ ତାଲିକାରେ ରଖାଯାଇପାରିବ ।

ଏଠାରେ ଗୋଟିଏ ସତର୍କବାଣୀ ଦେବା ଉଚିତ ହେବ । ଅଧିକ ସଂଖ୍ୟକ ବହି ବିକ୍ରି ହେବା ଲେଖକକୁ ଜନପ୍ରିୟ କରି ଦେଇପାରେ ଓ ତା ପାଇଁ ଆର୍ଥିକ ସଫଳତା ଆଣି ଦେଇପାରେ, କିନ୍ତୁ ଏହା ଅନେକ ସମୟରେ ତାର ସାହିତ୍ୟିକ ପ୍ରତିଷ୍ଠା ପାଇଁ ବାଧକ ହୁଏ । ଏପରି ଏକ ଧାରଣା ଅଛି ଯେ ବହୁ ସଂଖ୍ୟାରେ ବିକ୍ରି ହେଉଥିବା ବହି ଭଲ ସାହିତ୍ୟ ହୋଇ ନପାରେ ଏବଂ ତାର ଲେଖକ ଉଚ୍ଚମାନର ସାହିତ୍ୟକାର ନୁହନ୍ତି । କୁହାଯାଇଥାଏ ଯେ ବଙ୍ଗଳାର ବହୁପଠିତ ଲେଖକ ବିମଳ ମିତ୍ରଙ୍କୁ ସମାଲୋଚକମାନେ ଅଣଦେଖା କରିଦେଲେ ଏହି କାରଣରୁ । ଲୋକପ୍ରିୟ ଲେଖକ କେବେ କେବେ ସାହିତ୍ୟିକ ପ୍ରତିଷ୍ଠା ମଧ୍ୟ ପାଇଥାନ୍ତି । ଏ ବିଷୟରେ ହଠାତ ମନକୁ

ଆସନ୍ତି ଚାର୍ଲସ୍ ଡିକେନ୍ସ ଯେ କି ବହୁ ପଠିତ ଓ ସମ୍ମାନିତ ସାହିତ୍ୟକାର ଥିଲେ । ଅନ୍ୟ ପକ୍ଷରେ ବିଂଶ ଶତାବ୍ଦୀର ଶ୍ରେଷ୍ଠ ଉପନ୍ୟାସ ବୋଲି କୁହାଯାଉଥିବା ଜେମ୍ସ୍ ଜୟେସ୍‌ଙ୍କର ୟୁଲିସସର ପ୍ରକୃତ ପାଠକ ସଂଖ୍ୟା ଖୁବ୍ ବେଶି ନୁହେଁ, ଯଦିଓ ବହିଟିକୁ ଅନେକ ଲୋକ କିଣିଥିବେ ଲୋକଦେଖାଣିଆ କାରଣରୁ ।

ଲେଖକକୁ ପ୍ରସିଦ୍ଧ କରିବାର ଅନ୍ୟ ଏକ ମାଧ୍ୟମ ହେଲା ପୁରସ୍କାର । ଅଧିକାଂଶ ସାହିତ୍ୟିକ ପୁରସ୍କାର ନିର୍ଦ୍ଦିଷ୍ଟ ବହି ପାଇଁ ଦିଆଯାଇଥାଏ ।(ନୋବେଲ ପୁରସ୍କାର ଏହାର ବ୍ୟତିକ୍ରମ) । ଆନ୍ତର୍ଜାତିକ ପୁରସ୍କାର ପାଇବା ପରେ ପୁରସ୍କୃତ ବହି ଓ ସେ ବହିର ଲେଖକର ଅନ୍ୟ ବହିର ଚାହିଦା ବଢ଼ିଯାଏ, ଏବଂ ଅଜଣା ଲେଖକ ହଠାତ୍ ପ୍ରସିଦ୍ଧ ହୋଇଯାଏ । ବହି ନ ପଢ଼ିଲେ ମଧ୍ୟ ଲୋକେ ସେହି ଲେଖକର ନାଁ ସହିତ ପରିଚିତ ହୋଇଯାନ୍ତି । ତେବେ ପୁରସ୍କାର ସବୁବେଳେ ସାହିତ୍ୟିକ ଉତ୍କର୍ଷର ପ୍ରମାଣ ନୁହେଁ । ଟଲଷ୍ଟୟ, ଜେମ୍ସ୍ ଜୟେସ୍‌ଙ୍କ ଭଳି ଲେଖକ ନୋବେଲ ପାଇ ନଥିଲେ, ଏବଂ ଏପରି କିଛି ଲେଖକ ଏ ପୁରସ୍କାର ପାଇଛନ୍ତି ଯାହାଙ୍କୁ କେହି ମନେ ରଖି ନାହାନ୍ତି ।

ଓଡ଼ିଆରେ ପୁରସ୍କାରର କୌଣସି ପ୍ରଭାବ ପଡ଼େ ନାହିଁ ବହିର ବିକ୍ରି ଉପରେ । ମୁଁ ଭାବୁଛି ଏହା ଆମର ଲେଖକଙ୍କ ପ୍ରସିଦ୍ଧି ପାଇଁ ମଧ୍ୟ କିଛି କରେ ନାହିଁ । ପୁରସ୍କାର ପାଇଁ ଏକ ପ୍ରକାର ଜ୍ୟେଷ୍ଠତ୍ୱ ନିୟମ ପାଳନ କରାଯାଇଥାଏ ଏବଂ ଏହା ପ୍ରସିଦ୍ଧି ପାଇସାରିଥିବା ଲେଖକଙ୍କୁ ହିଁ ଦିଆଯାଏ । କେହି ପ୍ରତିଷ୍ଠିତ ହୋଇ ନ ଥିବା ଲେଖକ ପୁରସ୍କାର ପାଇଲେ ତାର ସମାଲୋଚନା ହୁଏ । ଯଦିଓ ପୁରସ୍କାର ବହି ପାଇଁ ଉଦ୍ଦିଷ୍ଟ, ଅମୁକ ବରିଷ୍ଠ ଲେଖକ ପାଇନାହାନ୍ତି ବୋଲି କୁହାଯାଏ; କେହି କହନ୍ତି ନାହିଁ ଅମୁକ ଭଲ ବହିଟି ପାଇବା ଉଚିତ ଥିଲା ।  ଓଡ଼ିଆ ବହିର ପାଠକ ଓ ବିକ୍ରି ସଂଖ୍ୟା କମି ଯାଉଥିବାରୁ ଦୁଃଖ ପ୍ରକାଶ ପାଉଥିବା ବେଳେ ଦେଖାଯାଉଛି ଯେ ସାହିତ୍ୟ ପୁରସ୍କାର ସଂଖ୍ୟା ବଢ଼ିଚାଲିଛି । ପ୍ରତିଟି ପୁରସ୍କାର ପରେ ତାକୁ ନେଇ ବାଦବିବାଦ ମଧ୍ୟ ସାଧାରଣ କଥା ହୋଇ ଯାଇଛି । ଏହା ଫଳରେ ପୁରସ୍କାର ଆଉ ଲେଖକ ବା ତାର ସାହିତ୍ୟର ଉତ୍କର୍ଷ ପରିମାପର ମାନକ ହୋଇ ରହିନାହିଁ ।

ଆଉ ରହିଲା ଲେଖାର ଅବଧି କଥା । ଲେଖକମାନେ ନିଜ ଲେଖାର ଏକ ସୁଦୀର୍ଘ ଭବିଷ୍ୟତ କଳ୍ପନା କରିଥାନ୍ତି । ଗ୍ରୀକ କବୟିତ୍ରୀ ସାଫୋ(ଆନୁମାନିକ ୬୧୦-୫୮୦ ଖ୍ରୀଷ୍ଟପୂର୍ବ) ଲେଖିଥିଲେ, ମୁଁ ଯେଉଁ ଶବ୍ଦମାନଙ୍କୁ ଡାକି ଆଣିଛି, ସେମାନେ

ଅମର । କବି ପିଣ୍ଡାର ( ୫୨୨-୪୪୦ ଖ୍ରୀ.ପୂ) ଦାବୀ କଲେ, ଯେଉଁ ନଗରୀ ମତେ କବିତାଟି ଲେଖିବା ପାଇଁ ନିୟୋଜିତ କରିଥିଲା, ସେହି ନଗରୀ ମରି ହଜି ଯିବା ପରେ ବି ଲୋକେ ମୋର ଗୀତକୁ ଗାଇବେ । ଶେକ୍ସପିଅର ତାଙ୍କର ୫୫ ନମ୍ବର ସନେଟରେ ଲେଖିଲେ, ରାଜାଙ୍କର ଶଂଖ ମର୍ମର ଓ ସ୍ୱର୍ଣ୍ଣ ନିର୍ମିତ ସ୍ମାରକ ଏହି କବିତାଠାରୁ ବେଶିଦିନ ତିଷ୍ଠିବେ ନାହିଁ ।

ଭାରତୀୟ କବିମାନେ କିନ୍ତୁ ଏତେ ଆଶାବାଦୀ ନୁହନ୍ତି । ତଥାପି ଭବଭୂତି (ସପ୍ତମ-ଅଷ୍ଟମ ଶତାବ୍ଦୀ) ଆଶା କରିଥିଲେ ଯେ ଯଦିଓ ତାଙ୍କ ସମୟର ପାଠକ ତାଙ୍କ ଲେଖାକୁ ତାଚ୍ଛଲ୍ୟ କରୁଛନ୍ତି, କେବେ କେଉଁଠି 'ମମକୋଽପି ସମାନଧର୍ମା' ଜନ୍ମ ନେବେ କାରଣ କାଳ ନିରବଧି ଓ ପୃଥିବୀ ବିପୁଳା । ରବୀନ୍ଦ୍ର ନାଥ ଠାକୁର ମାତ୍ର ଗୋଟିଏ ଶତକର କଥା ଭାବିଥିଲେ ଓ ଲେଖିଥିଲେ, 'ଆଜି ହତେ ଶତବର୍ଷ ପରେ, କେ ତୁମି ପଡ଼ିଛ ବସି ଆମାର କବିତା ଖାନି କୌତୁହଲ ଭରେ' । ଏ କବିତା ଲେଖା ହେବାର ଶହେ ବର୍ଷ ପୂରି ଗଲାଣି, କିନ୍ତୁ ନିଶ୍ଚୟ ଆଶା କରାଯିବ ଯେ ଅନ୍ତତଃ ଆହୁରି ଶହେ ବର୍ଷ ପରେ ମଧ କବିତାଟିକୁ କିଏ ବସି କୌତୁହଳ ଭରି ପଢୁଥିବ । କେତେକ ଲେଖକଙ୍କ ବିଷୟରେ ନିଶ୍ଚିତ ଭାବେ କହିହେବ ଯେ ତାଙ୍କର ଲେଖା ଦୀର୍ଘ କାଳ ଜୀବିତ ରହବ । ଶେକ୍ସପିଅରଙ୍କ ବିଷୟରେ ବେନ୍ ଜନସନ୍ କହିଥିଲେ, ସେ ଗୋଟିଏ ସମୟର ନୁହନ୍ତି, ସେ କାଳ କାଳ ପାଇଁ । ( ଏ କଥାକୁ ଉପହାସ କରି ବର୍ଣ୍ଣାର୍ଡ ଶ' କହିଥିଲେ, ଶେକ୍ସପିଅର ମାତ୍ର ଗୋଟିଏ ଅପରାହ୍ନ ପାଇଁ !)

ଭବିଷ୍ୟତରେ କଣ ହେବ ନ ହେବ ସେ କଥା କିଏ କହିପାରିବ ? କାଳିଦାସ କଣ କଳ୍ପନା କରିଥିବେ ଯେ କୌଣସି ସମୟରେ ଗୋରା ଲୋକ ଆମ ଦେଶକୁ ଆସିବେ ଏବଂ ତାଙ୍କ ଜରିଆରେ ଶକୁନ୍ତଳା ଇଉରୋପରେ ପହଞ୍ଚିବ ? ଫକୀରମୋହନ କଣ ସ୍ୱପ୍ନରେ ସୁଦ୍ଧା ଭାବିଥିଲେ ଯେ ଛମାଣ ଆଠଗୁଣ୍ଠ କେବଳ ସାରା ଭାରତରେ ନୁହେଁ ବିଦେଶରେ ମଧ ପଢ଼ା ହେବ ଓ ଆଲୋଚିତ ହେବ ? ଗୋଟିଏ ବହିର କିପରି ଅଦ୍‌ଭୁତ ପୁନର୍ଜନ୍ମ ହୋଇପାରେ ତାର ଏକ ଚରମ ଉଦାହରଣ ନିମ୍ନମତେ:

ହେନ୍‌ରି ରଥ୍ ନାମକ ଜଣେ ଅନାମଧେୟ ଲେଖକଙ୍କର କଲ୍ ଇଟ୍ ସ୍ଲୀପ୍ ନାମକ ଉପନ୍ୟାସ ବାହାରିଲା ୧୯୩୪ରେ । ଏଇଟିକୁ କେହି ପଚାରିଲେ ନାହିଁ ଏବଂ ବହିର ପ୍ରକାଶକ ବି ଦେବାଳିଆ ହୋଇଗଲେ । ୧୯୬୪ରେ ଏକ ଜଣାଶୁଣା ପ୍ରକାଶନ ସଂସ୍ଥା ଏହାର ଏକ ପେପର ବ୍ୟାକ ସଂସ୍କରଣ ବାହାର କଲେ । ନିଉୟର୍କ

ଟାଇମ୍‌ସ୍‌ରେ ଏହାର ଏକ ଅତି ପ୍ରଶଂସାର ଆଲୋଚନା ବାହାରିବା ପରେ ବହିଟି ଦଶଲକ୍ଷରୁ ବେଶି ବିକ୍ରି ହେଲା । ହସ୍‌ପିଟାଲ ପରିଚାରକ, ରାସ୍ତାକରର ବୁଲା ବିକାଳୀ କାମ କରି ଚଳୁଥିବା ଲେଖକ ନିଜର ଆର୍ଥିକ ଅନଟନରୁ ମୁକ୍ତି ପାଇଲେ ।

କ୍ୱଚିତ ଲେଖକଙ୍କ ଭାଗ୍ୟରେ ଏ ଭଳି ବିରଳ ଘଟଣା ଘଟିବ । ତେବେ ସବୁ ଲେଖକ ଚାହାନ୍ତି ଯେ ଜୀବନ କାଳରେ ସଫଳତା ଓ ପ୍ରସିଦ୍ଧି ସହିତ ଭବିଷ୍ୟତରେ ମଧ ତାଙ୍କର ପ୍ରସିଦ୍ଧି ଅବ୍ୟାହତ ରହୁ । ସେଥିପାଇଁ ପ୍ରଥମ ଆବଶ୍ୟକତା ହେଲା ଭବିଷ୍ୟତରେ ଲେଖକର ବହି ଉପଲବ୍ଧ ହେବା । ତାଳପତ୍ର ପୋଥିର ବୟସ ପ୍ରାୟ ଶହେ ବର୍ଷ ଗଣନା କରି ଏକ ବ୍ୟବସ୍ଥା କରାଯାଇଥିଲା ଯେ ଶହେ ବର୍ଷ ପୁରୁଣା ପୋଥିକୁ ନକଲ କରିବା ପରେ ସେ ପୋଥିକୁ ନଈରେ ଭସାଇ ଦିଆଯିବ । କାଗଜର ଛପା ବହି ପୁନର୍ମୁଦିତ  ହେଉଥିବା ପର୍ଯ୍ୟନ୍ତ ପାଠକଙ୍କ ପାଇଁ ବଜାରରେ ମିଳେ । ବହିର ଚାହିଦା କମିଗଲେ ବହିଟି ଆଉ ଛପା ହୁଏ ନାହିଁ ଓ ଆଗ୍ରହୀ ପାଠକକୁ ଲାଇବ୍ରେରିରେ ଖୋଜିବାକୁ ପଡ଼େ । ବର୍ତ୍ତମାନ ଡିଜିଟାଲ ସଂସ୍କରଣ ସମ୍ଭବ ହେଉଥିବାରୁ ବହିର ଜୀବନକାଳ ଆହୁରି ବଢ଼ି ଯାଇଛି ।

ନିଜର ଜୀବନକାଳରେ ଲେଖକକୁ ଜଣା ନାହିଁ ତା'ର ବହିର ଭାଗ୍ୟ କ'ଣ ହେବାକୁ ଯାଉଛି; ତେଣୁ ଭବିଷ୍ୟତ କଥା ଭାବିବା ନିରର୍ଥକ । ଲେଖା ପାଇଁ ଯେତିକି ସ୍ୱୀକୃତି, ସମ୍ବର୍ଦ୍ଧନା ଓ ସମ୍ମାନ ମିଳୁଛି, ତାକୁ ଖୁସିରେ ଗ୍ରହଣ କରି ସନ୍ତୁଷ୍ଟ ରହିବା ଉଚିତ । ଉଦ୍ୟମ ଫଳରେ ଯେଉଁ ପୁରସ୍କାର, ପ୍ରଶଂସା ଓ ପ୍ରସିଦ୍ଧି ମିଳେ ତା କ୍ଷଣସ୍ଥାୟୀ ଏବଂ କେହି ତାକୁ ବିଶ୍ୱାସ କରନ୍ତି ନାହିଁ । ତେଣୁ ଲେଖକର କର୍ତ୍ତବ୍ୟ ଓ ଧର୍ମ ହେବା ଉଚିତ ନିଜ ପ୍ରତି ସଚ୍ଚୋଟ ରହି ସାଧ୍ୟମତେ ଉତ୍ତମରୁ ଉତ୍ତମ ଲେଖା ଲେଖିବା । ଏବଂ ଯେତେ ସମ୍ଭବ ଦୃଷ୍ଟି ରଖିବା କିପରି ତା'ର ଲେଖା ପାଠକଙ୍କ ପାଖରେ ଉପଲବ୍ଧ ହେବ । କିଛି ବି ଲାଭ ନାହିଁ ବିପୁଳା ପୃଥ୍ୱୀ ଓ ନିରବଧି କାଳ କଥା ଭାବି ।

*ନଭେମ୍ବର ୨୦୧୫*

# ଅସହିଷ୍ଣୁତାର ଆତଙ୍କ

-୧-

କିଛି ବର୍ଷ ହେଲା ଆମ ଦେଶରେ ଅସହିଷ୍ଣୁତାର ଆତଙ୍କ ଦେଖା ଦେଇଛି, ଏବଂ କେତେକଙ୍କ ମତରେ ଏହାର ପ୍ରାବଲ୍ୟ ହୋଇଛି କେନ୍ଦ୍ରରେ ବିଜେପି ସରକାର ଆସିବା ପରେ । ଏହି ଅସହିଷ୍ଣୁତାର ପ୍ରଥମ ପର୍ବରେ ଶରବ୍ୟ ହୋଇଥିଲେ ରାଶନାଲିଷ୍ଟ ବା ବୁଦ୍ଧିଜୀବୀ : ୨୦ ଅଗଷ୍ଟ ୨୦୧୩ରେ ନରେନ୍ଦ୍ର ଦାଭୋଲକରଙ୍କୁ ଗୁଳି କରାଗଲା; ଫେସବୁକ୍‌ରେ ଶିବାଜୀ ଓ ଠାକରେଙ୍କ କାର୍ଟୁନ ଦେଇଥିବାରୁ ୪ ଜୁନ ୨୦୧୪ରେ ମହମ୍ମଦ ସିଦ୍ଦିକ୍ଵି ଶେଖଙ୍କୁ ପିଟି ପିଟି ହତ୍ୟା କରାଗଲା; ୨୦ ଫେବୃଆରି ୨୦୧୫ରେ ଦାଭୋଲକରଙ୍କ ଅନୁଗାମୀ ଗୋବିନ୍ଦ ପାନସାରେଙ୍କୁ ଓ ୩୦ ଅଗଷ୍ଟ ୨୦୧୫ରେ ଏମ୍.ଏମ୍. କୁଲବର୍ଗୀଙ୍କୁ ମାରି ଦିଆଗଲା । ଏ ସବୁ ହତ୍ୟା ମୂଳରେ ଉଗ୍ର ହିନ୍ଦୁତ୍ୱବାଦୀଙ୍କର ହାତ ଥିଲା ବୋଲି କୁହାଯାଉଛି ।

ତା ପରେ ଆସିଲା ଗୋମାଂସ ବିବାଦରେ ଦାଦ୍ରିରେ ଜଣେ ମୁସଲମାନଙ୍କୁ ହତ୍ୟା, ଅସହିଷ୍ଣୁତାର ପ୍ରତିବାଦରେ ପୁରସ୍କାର ଫେରାଇବାର ପର୍ବ ଏବଂ ନିକଟରେ ଜେଏନୟୁରେ ଛାତ୍ର ବିକ୍ଷୋଭ । ଏ ଘଟଣାମାନ ଆମ ଦେଶ ଓ ସମାଜରେ ଏକ ଉତ୍ତେଜନାପୂର୍ଣ୍ଣ ବାତାବରଣ ସୃଷ୍ଟି କରିଛି ।

ଆମ ଓଡ଼ିଶାରେ ଏ ବିଷୟରେ ବିଶେଷ ପ୍ରତିକ୍ରିୟା ସୃଷ୍ଟି ହୋଇଛି ନିକଟରେ ଆମର କବି ଜୟନ୍ତ ମହାପାତ୍ର ସରକାରଙ୍କୁ ପଦ୍ମଶ୍ରୀ ପୁରସ୍କାର ଫେରାଇ ଦେବାକୁ ଚାହାନ୍ତି ବୋଲି ଦେଇଥିବା ଚିଠିକୁ ନେଇ । ହିନ୍ଦୁ ଖବରକାଗଜକୁ ଦେଇଥିବା ସାକ୍ଷାତ୍‌କାରରେ ଜୟନ୍ତ କହିଛନ୍ତି, ଗୋଟିଏ ସଂଖ୍ୟାଲଘୁ ସଂପ୍ରଦାୟର ହୋଇଥିବାରୁ ଏବଂ ଏକ ସଂଖ୍ୟା ଗରିଷ୍ଠ ସଂପ୍ରଦାୟ ଭିତରେ ରହୁଥିବା ଯୋଗୁ ମୁଁ ମୋ ଲେଖା ପ୍ରତି ଧ୍ୟାନ ଦେଇପାରୁନାହିଁ, କାରଣ ମୁଁ ଭୟ କରୁଛି ମୋ ଲେଖା ପଢ଼ି ମୋର

ସାଇ ପଡ଼ିଶାଙ୍କର ପ୍ରତିକ୍ରିୟା ହେବ । ପାୟୋନିୟର କାଗଜକୁ ଦେଇଥିବା ଅନ୍ୟ ଏକ ସାକ୍ଷାତ୍‌କାରରେ ସେ ଆହୁରି କହିଛନ୍ତି, ମୁଁ ଭୟରେ ଅଛି । ମୁଁ ଓ ମୋର ବନ୍ଧୁମାନେ ଆମ ନିଜ ପସନ୍ଦର ପ୍ରାର୍ଥନା ସ୍ଥଳୀକୁ ଯିବାକୁ ଭୟ କରୁଛୁ ।

ଜୟନ୍ତ ମହାପାତ୍ର ଯେ ଖ୍ରୀଷ୍ଟିଆନ ତା ବୋଧହୁଏ ଅଧିକାଂଶ ଲୋକଙ୍କୁ ଅଜଣା ଥିଲା । ମୁଁ ଭାବୁଛି ଜୟନ୍ତଙ୍କର ଭୟ ଅମୂଳକ, କିନ୍ତୁ ସେ ଯେ ଏଭଳି ଆଶଙ୍କା ଅନୁଭବ କରୁଛନ୍ତି, ସେ କଥାଟି ଗୁରୁତ୍ୱପୂର୍ଣ୍ଣ । ଷ୍ଟେନ୍‌ସ୍ ହତ୍ୟା କଥା ଏ ପର୍ଯ୍ୟନ୍ତ ଆମର ସ୍ମରଣରେ ଅଛି ଏବଂ ଏ ଭଳି ସନ୍ଦେହ ଓ ଅବିଶ୍ୱାସର ବାତାବରଣରେ କେତେବେଳେ କଣ ହେବ ସେ କଥା କହି ହେବନାହିଁ । ଜୟନ୍ତଙ୍କର ମନ୍ତବ୍ୟ ପଡ଼ୋଶୀମାନଙ୍କ ଉପରେ ନକାରାତ୍ମକ ପ୍ରଭାବ ପକାଇପାରେ ଏବଂ ପାରସ୍ପରିକ ସୌହାର୍ଦ୍ଦ୍ୟରେ ଆଞ୍ଚ ଆଣିପାରେ । ଏକ ଅସ୍ଥିର ସମୟରେ କିଛି ବି ସମ୍ଭବ ।

ଜୟନ୍ତ ରହୁଥିବା କଟକ ସହର ମଧ୍ୟ ବିଦ୍ୱେଷରୁ ମୁକ୍ତ ନୁହେଁ । ୧୯୬୪ ଓ ତା ପରବର୍ତ୍ତୀ ହିନ୍ଦୁ-ମୁସଲମାନ କନ୍ଦଳ କଥା ଏବେ ବି କାହାରି କାହାରି ମନେ ଥିବ । ଆହୁରି ଶହେ ବର୍ଷରୁ ବେଶି ପଛକୁ ଫେରିଗଲେ ଆମେ ଏପରି ଗୋଟିଏ ବିବରଣୀ ଦେଖିପାରିବା : କେତେକ ସଂପ୍ରଦାୟର ପ୍ରାୟ ଜ୨୦୦ଣ ଲୋକ ଏକତ୍ରିତ ହୋଇ କମ୍ପ ବଜାର ବାଟେ ଗମନ କରୁଥିଲେ । ଉକ୍ତ ବଜାରର ମସ୍‌ଜିଦ ନିକଟରେ ହେବା ସମୟରେ କେତେକ ମୁସଲମାନ ଏମାନଙ୍କୁ ବାଜା ବଜାଇବା ବନ୍ଦ କରିବାକୁ କହିଲେ । କିନ୍ତୁ ଏତେ ବଡ଼ ଗୋଳମାଳରେ ସମସ୍ତଙ୍କର ଶୁଣିବା ଅସମ୍ଭବ । ସୁତରାଂ କୀର୍ତ୍ତନ ବନ୍ଦ ନୋହିବାରୁ ଚାରି ପାଞ୍ଚଜଣ ମୁସଲମାନ ଏମାନଙ୍କ ପ୍ରତି ଦଙ୍ଗା ଆରମ୍ଭ କଲେ । କେହି କେହି ଆଘାତ ପ୍ରାପ୍ତ ହୋଇ ଅଛନ୍ତି ।(ଉତ୍କଳ ଦୀପିକା ଜୁନ୍ ୩, ୧୮୯୩) । ଦୀପିକାଙ୍କ ମତରେ କଟକରେ ଏ ଭଳି ଘଟଣା ଆଗରୁ ଘଟିନଥିଲା ।

ଧର୍ମଭିତ୍ତିକ ଦ୍ୱନ୍ଦ୍ୱ ଓ ହିଂସା ଓଡ଼ିଶାରେ ନୂଆ କଥା ନୁହେଁ । ଶହ ଶହ ବର୍ଷ ପୁରୁଣା ମାଦଳା ପାଞ୍ଜିରେ ବ୍ରାହ୍ମଣ ଓ ବୌଦ୍ଧମାନଙ୍କର ବିବାଦ ବିଷୟରେ ଏକ ରୋଚକ ବର୍ଣ୍ଣନା ଅଛି, ଯାହା ଚୁଡ଼ଗଙ୍ଗ ଦେବଙ୍କ ବଂଶଧର ମଦନ ମହାଦେବଙ୍କ ସମୟର ବୋଲି କୁହାଯାଇଛି । କାହାଣୀଟି ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଥିବାରୁ ଏଠାରେ ତାକୁ ସଂପୂର୍ଣ୍ଣ ଉଦ୍ଧାର କରାଯାଉଛି :

ପର୍ବତ କନ୍ଦରାମାନଙ୍କରେ ଚୌରାଅସି ଗୁମ୍ଫାମାନ କରି ସିଦ୍ଧ ବୌଦ୍ଧମାନେ ରହିଅଛନ୍ତି । ଏମାନେ ସର୍ବଜ୍ଞ । ଏକଦିନକରେ ରାଜାଙ୍କ ରାଣୀମାନେ ବୋଇଲେ

ବୌଦ୍ଧ ବଡ଼ ସର୍ବଜ୍ଞ । ଇଥିକି ରାଜା ବୋଇଲେ ବୌଦ୍ଧେ କି ସର୍ବଜ୍ଞ, ବ୍ରାହ୍ମଣମାନେ ବଡ଼ । ଏଥକୁ ରାଣୀଏ ବୋଇଲେ ବୌଦ୍ଧମାନଙ୍କୁ ବ୍ରାହ୍ମଣମାନଙ୍କୁ ପରୀକ୍ଷା କର, କିଏ ସର୍ବଜ୍ଞ, କାହାର ବଚନ ପ୍ରମାଣ । ଏଥକୁ କେହି ନ ଜାଣନ୍ତି । ହାଣ୍ଡି ଗୋଟିକେ ସର୍ପ ଗୋଟାଏ ପୁରାଇ ମୁଦାଇ ବୌଦ୍ଧମାନଙ୍କୁ ବ୍ରାହ୍ମଣମାନଙ୍କୁ ରାଜା ହକରାଇ ଅଣାଇଁ ଆଗେ ବୌଦ୍ଧମାନଙ୍କୁ ପଚାରିଲେ- ଏ ହାଣ୍ଡିରେ କି ଅଛି କହ । ଏଥକୁ ବୌଦ୍ଧମାନେ କହିଲେ ମହାରାଜା, ଏ ହାଣ୍ଡିରେ ସର୍ପ ଗୋଟିଏ ଅଛି । ଏହା ଶୁଣି ରାଜାଙ୍କୁ ରାଣୀ ତୁନି କରି କହିଲେ, ରାଜା ହାରିଲେ । ଏଥକୁ ରାଜା ଲାଜ ପାଇଲେ । ବ୍ରାହ୍ମଣମାନଙ୍କୁ ପଚାରିଲେ । ବ୍ରାହ୍ମଣମାନେ ବିଚାରିଲେ ଏମାନେ ସେବିଜ୍ଞ, ଏହାଙ୍କ ବଚନ ମିଥ୍ୟା ନୋହଇ । ଆମ୍ଭେମାନେ କି କହିବା ଏମନ୍ତ ବିଚାରି କହିଲେ ମହାରାଜା, ଏ ହାଣ୍ଡିରେ ଭସ୍ମ ଗୁଡ଼ିଏ ଅଛି । ଏମନ୍ତକୁ ରାଜା ହାଣ୍ଡି ଫେଡାଇ ଦେଖିଲା ବେଳକୁ ସର୍ପ ନାହିଁ ପାଉଁସ ଗୁଡାଏ ଅଛି । ଏହା ଦେଖି ରାଜା ରାଣୀଙ୍କି ବୋଇଲେ, ବୋଲୁଥିଲ ବୌଦ୍ଧ ବଡ଼ ବୋଲି, ଦେଖ ବ୍ରାହ୍ମଣମାନଙ୍କ ବଚନ । ଏମନ୍ତ ବୋଲି ବୌଦ୍ଧମାନଙ୍କର ରାଜା ମୁଣ୍ଡ ଛେଚାଇବା ବେଳକୁ ବୌଦ୍ଧମାନେ ରାଜାଙ୍କୁ ଶାପ୍ୟ ଦେଇ ପର୍ବତ ଗୁମ୍ଫାମାନଙ୍କରୁ ବାହାର ହୋଇ ଅରଣ୍ୟକୁ ଗଲେ ।

ସେହି ମାଦଳାପାଂଜିରେ ପ୍ରତାପରୁଦ୍ର ଦେବଙ୍କ ବିଷୟରେ ମଧ୍ୟ ଏକା ଭଳି କାହାଣୀ ଅଛି : 'ରାଣୀ କହିଲେ ବ୍ରାହ୍ମଣ ବଡ଼... ବଉଧେ କହିଲେ ଏଥିରେ ସର୍ପ ଅଛି... ବ୍ରାହ୍ମଣେ କହିଲେ ଭସ୍ମ ଅଛି... ମାଠିଆ ଫେଡ଼ି ଦେଲା ବେଳକୁ ତହିଁ ଭସ୍ମ ବାହାର ହୋଇଲା । ଏ ସକାଶୁ ବଉଦଙ୍କୁ ରାଜା ବାହାର କରିଦେଲେ ।' ପ୍ରତାପରୁଦ୍ର ନିଶ୍ଚୟ ଦୟାଳୁ ଥିଲେ କାରଣ ସେ ବୌଦ୍ଧମାନଙ୍କର ମୁଣ୍ଡ ଛେଚାଇବା ପାଇଁ ଆଦେଶ ଦେଇ ନ ଥିଲେ ।

ମାଦଳାପାଞ୍ଜିର ବିବରଣୀମାନ ଇତିହାସସିଦ୍ଧ ନୁହେଁ ଓ ତାର ଅନେକାଂଶ କଳ୍ପନା ପ୍ରସୂତ । ତେବେ ଭାରତର ଇତିହାସରେ ବ୍ରାହ୍ମଣମାନଙ୍କ ଦ୍ୱାରା ବୌଦ୍ଧମାନଙ୍କର ଦମନ ବିଷୟରେ କୌଣସି ସନ୍ଦେହ ନାହିଁ । ଏକ ସମୟରେ ବ୍ରାହ୍ମଣ-ବୌଦ୍ଧ ବିବାଦ ସଂସ୍କୃତ-ପାଲି ବିବାଦରେ ପରିଣତ ହୋଇଥିଲା କାରଣ ବୌଦ୍ଧ ଧର୍ମଗ୍ରନ୍ଥମାନ ପାଲି ଭାଷାରେ ଥିଲା । ଶେଷରେ ଗୁପ୍ତ ବଂଶର ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ସମୟରେ ପାଲି ବଦଳରେ ସଂସ୍କୃତକୁ ରାଜାଭାଷା କରାଗଲା । ବୌଦ୍ଧ ଧର୍ମାବଲମ୍ବୀ ମୌର୍ଯ୍ୟ ସାମ୍ରାଜ୍ୟର ପତନ ପରେ ପୁଷ୍ୟମିତ୍ର ସୁଙ୍ଗ କ୍ଷମତାକୁ

ଆସି ବୌଦ୍ଧ ସଂହାର ନୀତି ଗ୍ରହଣ କଲେ ଓ ପ୍ରତିଟି ବୌଦ୍ଧ ଶ୍ରମଣର ମସ୍ତକ ଛେଦନ ପାଇଁ ଶହେ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଘୋଷଣା କଲେ ।

କହ୍ଲଣଙ୍କର ରାଜତରଙ୍ଗିଣୀ ଅନୁସାରେ ଷଷ୍ଠ ଶତାବ୍ଦୀରେ ହୁନ ଶାସକ ବ୍ରାହ୍ମଣରେ ଧର୍ମାନ୍ତରୀତ ହୋଇ ପଂଜାବ ଓ କାଶ୍ମୀରର ବୌଦ୍ଧ ବିହାରମାନଙ୍କୁ ଧ୍ୱଂସ କଲେ । ହୁଏନ ସାଂଙ୍କ ବିବରଣୀରେ(ସପ୍ତମ ଶତାବ୍ଦୀ) ଅଛି ଯେ ଦକ୍ଷିଣ ଭାରତର ଜଣେ ବ୍ରାହ୍ମଣ ରାଣୀ ସ୍ୱାମୀଙ୍କୁ କହି ହଜାର ହଜାର ବୌଦ୍ଧଙ୍କୁ ହତ୍ୟା କରାଇଥିଲେ, ମଦୁରାଇର ୮୦୦୦ ବୌଦ୍ଧଙ୍କ ସମେତ । ଏ ସବୁ ଫଳରେ ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ବୌଦ୍ଧ ଧର୍ମର ପ୍ରାଧାନ୍ୟ ଥିବା ବେଳେ ତା ପରେ ଏହା ପ୍ରାୟ ଲୋପ ପାଇଯାଇଥିଲା ।

ଆମ ଓଡ଼ିଶାରେ ସେ ସମୟରେ ଶୈବ ଧର୍ମର ଆଧିପତ୍ୟ ଥିଲା । ଏକାମ୍ର ପୁରାଣରେ ଭୁବନେଶ୍ୱର ବର୍ଣ୍ଣନା ବେଳେ କୁହାଯାଇଛି ଯେ ଶିବ ଦେବତାଙ୍କୁ ସାହାଯ୍ୟ କରି ଅସୁରଙ୍କୁ ପରାସ୍ତ କରିଥିଲେ । ତାଙ୍କର ଅନୁଗତ ଶୈବମାନେ ସେହି ଭଳି ବୌଦ୍ଧ ଧର୍ମାବଲମ୍ବୀମାନଙ୍କୁ ପଦାନତ କରିଥିଲେ । ଏପରିକି ସେମାନେ ଅଶୋକ ସ୍ତମ୍ଭକୁ କାଟି ତାକୁ ଶିବଲିଙ୍ଗ ରୂପ ଦେଇଥିଲେ ଏବଂ ତାକୁ ନେଇ ଭାସ୍କରେଶ୍ୱର ମନ୍ଦିରରେ ସ୍ଥାପନ କରିଥିଲେ ଯାହା ଏ ପର୍ଯ୍ୟନ୍ତ ସେଠାରେ ଅଛି । ମାଦଳା ପାଞ୍ଜିର କାହାଣୀକୁ ଏହି ପରିପ୍ରେକ୍ଷୀରେ ପଢ଼ାଯାଇପାରେ ।

-୨-

ଆମେ ହିନ୍ଦୁମାନେ ଗର୍ବ କରୁ ଯେ ଆମର ଧର୍ମ ଉଦାର ଏବଂ ଆମର କାହାରି ପ୍ରତି କୌଣସି ବିଦ୍ୱେଷ ନାହିଁ । ମୁସଲମାନ ଓ ଖ୍ରୀଷ୍ଟିଆନ୍‌ମାନେ ମଧ୍ୟ ଏ ଭଳି ଦାବୀ କରନ୍ତି । ପ୍ରକୃତରେ କହିବାକୁ ଗଲେ ହିନ୍ଦୁ ଧର୍ମ ଅନ୍ୟ ଧର୍ମମାନଙ୍କ ଭଳି ନୁହେଁ । ଆମେ ଭାରତୀୟମାନେ କେବେ ହେଲେ ନିଜକୁ ହିନ୍ଦୁ ବୋଲି ପରିଚୟ ଦେଉ ନ ଥିଲୁ, ଏହା ହେଉଛି ଆମକୁ ଇଉରୋପୀୟମାନଙ୍କର ଅବଦାନ । ଭାରତବର୍ଷରେ ସବୁକାଳେ ବିଭିନ୍ନ ପ୍ରକାରର ମତାବଲମ୍ବୀ ଥିଲେ ଓ ବିଭିନ୍ନ 'ଧର୍ମ'ରେ ବିଶ୍ୱାସ କରୁଥିଲେ ଏବଂ ଏମାନଙ୍କ ଭିତରେ କିଛି ବି ବିଶ୍ୱାସ କରୁ ନ ଥିବା ନାସ୍ତିକ ମଧ୍ୟ ଥିଲେ । ଇଉରୋପୀୟମାନେ ସମସ୍ତଙ୍କୁ ଏକାଠି କରି ହିନ୍ଦୁ ଧର୍ମର ନାଁ ଦେଲେ ଯାହା ବର୍ତ୍ତମାନ ସର୍ବ ପ୍ରଚଳିତ ।

ଇସଲାମ ଓ ଖ୍ରୀଷ୍ଟ ଧର୍ମର ମୂଳ ହେଲା ଜଣେ ଈଶ୍ୱର, ଜଣେ ପ୍ରଫେଟ ବା ଈଶ୍ୱର ଦୂତ, ଗୋଟିଏ ଈଶ୍ୱର ଦତ୍ତ ପବିତ୍ର ଗ୍ରନ୍ଥ, ଗୋଟିଏ ଧାର୍ମିକ ସଂଘ, ଧର୍ମ ବିରୋଧ ବିଷୟରେ ନୀତି ନିୟମ ଓ ଧର୍ମାନ୍ତରୀକରଣ ବ୍ୟବସ୍ଥା । ହିନ୍ଦୁଧର୍ମରେ ଏ ସବୁ ନାହିଁ । ବରଂ ଏଥିରେ ଅଛି ବହୁ ଦେବ ଦେବୀ, ବିଭିନ୍ନ ମତ ଓ ସିଦ୍ଧାନ୍ତ ଓ ଏକାଧିକ ପ୍ରକାରର ପୂଜା ପଦ୍ଧତି ।

ପରିତାପର ବିଷୟ ଯେ ବିଭିନ୍ନ ସମୟରେ ଏ ଭଳି ହିନ୍ଦୁ ଧର୍ମକୁ ସଂକୁଚିତ କରିବାକୁ ଉଦ୍ୟମ କରାଗଲା । ଆର୍ଯ୍ୟ ସମାଜ ବେଦକୁ ପ୍ରାଥମିକ ଧର୍ମଗ୍ରନ୍ଥର ମର୍ଯ୍ୟାଦା ଦେଲେ ଓ ଧର୍ମାନ୍ତରୀକରଣର ବ୍ୟବସ୍ଥା କଲେ । ଏହିପରି ଭାବରେ ହିନ୍ଦୁଧର୍ମକୁ ଇସଲାମ ବା ଖ୍ରୀଷ୍ଟଧର୍ମ ଭଳି ଏକ 'ସେମିଟିକ' ଧର୍ମରେ ପରିବର୍ତ୍ତନ କରିବାର ପ୍ରକ୍ରିୟାକୁ ଆରମ୍ଭ କରାଗଲା । ଏହାର ଉତ୍କଟ ରୂପ ଦେଖାଗଲା ଗତ ଶତାବ୍ଦୀର ଅଣି ଦଶକଠାରୁ । ଐତିହାସିକ Hobsbawmଙ୍କ ମତରେ ଏହି ସମୟଠାରୁ Hindu fundamentalists are trying to reduce the multiplicity of Hinduism to a single, exclusive and intolerant orthodoxy.

ଅବଶ୍ୟ ଅନ୍ୟ ଧର୍ମମାନଙ୍କ ଭଳି ଆମର ଋକ୍‌ବେଦରେ ମଧ୍ୟ ବିଧର୍ମୀମାନଙ୍କୁ ପଦଦଳିତ ଓ ଧ୍ୱଂସ କରିବା ପାଇଁ କୁହାଯାଇଛି, ଏବଂ ମନୁସ୍ମୃତି ଅନୁସାରେ ବିଧର୍ମୀମାନେ ରାକ୍ଷସ ଓ ଦସ୍ୟୁ ଯେଉଁମାନଙ୍କୁ ନିପାତ କରାଯାଇପାରେ । ଅନ୍ୟ ଧର୍ମରେ ଏହାଠାରୁ ଆହୁରି କଠୋର ନିର୍ଦ୍ଦେଶମାନ ଅଛି । କୋରାନ୍‌ର ଅନ୍ତତଃ ୧୦୯ଟି ପଦରେ ମୁସଲମାନଙ୍କୁ କାଫିରମାନଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ କୁହାଯାଇଛି ଏବଂ ଏଥିରୁ କେତେକରେ ସେମାନଙ୍କୁ ହତ୍ୟା କରିବାର ଅନୁମତି ଅଛି । ହିବ୍ରୁ ବାଇବଲର ପଞ୍ଚମ ବହିରେ କୁହାଯାଇଛି ଯେ ଯେଉଁମାନେ ଅନ୍ୟ ଈଶ୍ୱରଙ୍କୁ ପୂଜା କରନ୍ତି ସେମାନଙ୍କୁ ପଥର ମାରି ହତ୍ୟା କରାଯିବ । ଯୀଶୁଖ୍ରୀଷ୍ଟ ମଧ୍ୟ କହିଲେ ଯେ ମୋର ଯେଉଁ ଶତ୍ରୁମାନେ ମୋତେ ସେମାନଙ୍କର ରାଜା ହେବାକୁ ଦେଲେ ନାହିଁ, ସେମାନଙ୍କୁ ଏଠାକୁ ଆଣ ଓ ମୋ ଆଗରେ ସେମାନଙ୍କୁ ହତ୍ୟା କର (ଲୁକ ୧୯:୨୭) ।

ସେହି ସମୟରୁ ଧର୍ମ ନାଁରେ ହତ୍ୟା ଲୁଣ୍ଠନ ସଂଘାତ ଓ ଯୁଦ୍ଧ ଲାଗି ରହିଛି । ବିଶ୍ୱ ଇତିହାସରେ ଏଥିରୁ କେତୋଟି ଲୋମହର୍ଷକ ଘଟଣା ହେଲା  ମଧ୍ୟଯୁଗୀୟ ଇଉରୋପରେ କ୍ରୁସେଡ ଓ ଇନକ୍ୱିଜିଶନ, ସପ୍ତଦଶ ଶତାବ୍ଦୀରେ ପ୍ରଟେଷ୍ଟାଣ୍ଟ ଓ କ୍ୟାଥଲିକଙ୍କ ଭିତରେ ଯୁଦ୍ଧ, ଶିଆ ଓ ସୁନ୍ନି ମୁସଲମାନଙ୍କ ଭିତରେ ରହିଥିବା ଆବହମାନ

କନ୍ଦଳ, ହିଟଲରର ଜାହୁଦୀ ସଂହାର ଓ ନିକଟ ଅତୀତରେ ସର୍ବୋକ୍ରୋଶିଆ ଓ ଚେଚ୍‌ନିୟାରେ ଖ୍ରୀଷ୍ଟିଆନ-ମୁସଲମାନ ଯୁଦ୍ଧ । ଆମ ଦେଶର କିଛି ଉଦାହରଣ ହେଲା : ୧୯୮୪ରେ ଶିଖ ହତ୍ୟାକାଣ୍ଡ, ୧୯୯୨ରେ ବାବ୍ରି ମସ୍‌ଜିଦ୍ ଧ୍ୱଂସ ଓ ତାର ପରବର୍ତ୍ତୀ ଦଙ୍ଗା ଏବଂ ଆମ ଓଡ଼ିଶାରେ ୨୦୦୭-୮ର କନ୍ଧମାଳ ହିଂସାକାଣ୍ଡ । ଆହୁରି ପଛକୁ ଗଲେ ଉନବିଂଶ ଶତାବ୍ଦୀରେ ମହିମାଧର୍ମାଲମ୍ବୀମାନଙ୍କର ପୁରୀ ମନ୍ଦିର ଆକ୍ରମଣକୁ ମଧରେ ଏଥିରେ ଯୋଡ଼ି ଦିଆଯାଇପାରେ ।

-୩-

ଭାରତବର୍ଷରେ ବିଭିନ୍ନ ଧର୍ମାବଲମ୍ବୀଙ୍କ ଆଗମନ ଓ ସହାବସ୍ଥାନର ଇତିହାସ ଅତି ପୁରୁଣା । ଯୀଶୁଖ୍ରୀଷ୍ଟଙ୍କ ଶିଷ୍ୟ ଟମାସ ପ୍ରଥମ ଶତାବ୍ଦୀରେ ଦକ୍ଷିଣ ଭାରତକୁ ଆସିଥିଲେ ଏବଂ କେରଳର ସିରିଆନ୍ ଖ୍ରୀଷ୍ଟିଆନ୍‌ମାନେ ତାଙ୍କର ବଂଶଧର । ପାର୍ସିମାନେ ଇରାନରୁ ଭାରତକୁ ପଳାଇ ଆସିଥିଲେ ସପ୍ତମ ଶତାବ୍ଦୀରେ । ଆମର ଭକ୍ତି ଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ ଏଠାକୁ ମୁସଲମାନମାନେ ଆସି ସାରିଥିଲେ । ଆମ ସ୍ୱଦେଶୀ ଧର୍ମ ବୌଦ୍ଧ ଜୈନ ଓ ଶିଖ ସହିତ ହିନ୍ଦୁମାନଙ୍କର କଳହ ନଥିଲା । ଆମ ସମ୍ବିଧାନର ଧାରା ୨୫ ଅନୁସାରେ ହିନ୍ଦୁ କହିଲେ ବୌଦ୍ଧ ଜୈନ ଶିଖଙ୍କୁ ମଧ ବୁଝାଯିବ । ଏମାନଙ୍କ ବାହାରେ ଅଛନ୍ତି ପ୍ରତିଷ୍ଠିତ ଧର୍ମମାନଙ୍କ ବାହାରେ ଥିବା ଆମର ଆଦିବାସୀ ଜନ ସମୂହ ଯେଉଁମାନେ ସର୍ବପ୍ରାଣବାଦୀ ପ୍ରକୃତି ପୂଜକ ।

ବୌଦ୍ଧଧର୍ମର ଉତ୍‌ଥାନ ପତନ କଥା ଆଗରୁ କୁହାଯାଇଛି । ପାର୍ସି ଓ ଜୈନମାନଙ୍କୁ ନେଇ କୌଣସି ସମସ୍ୟା ନାହିଁ କାରଣ ସେମାନେ ନିଜର ବେପାର ବଣିଜ ଓ ଜୀବନ ପ୍ରଣାଳୀରେ ବ୍ୟସ୍ତ ଏବଂ କାହାରି ସହିତ କୌଣସି ସମସ୍ୟା ଉପୁଜାନ୍ତି ନାହିଁ । ଶିଖମାନେ ମୋଗଲ ସାମ୍ରାଜ୍ୟ ସମୟରେ ହିନ୍ଦୁମାନଙ୍କ ସହାୟତା କରିଥିଲେ ଏବଂ ଦୁଇ ଗୋଷ୍ଠୀ ମଧରେ କୌଣସି କନ୍ଦଳ ନ ଥିଲା ଖାଲିସ୍ତାନ ଆନ୍ଦୋଳନ ଓ ଇନ୍ଦିରା ଗାନ୍ଧୀଙ୍କ ହତ୍ୟା ପରବର୍ତ୍ତୀ ଗଣହତ୍ୟା ପର୍ଯ୍ୟନ୍ତ । ହିନ୍ଦୁ ମୁସଲମାନ ସଂପର୍କ କିନ୍ତୁ ସବୁ ସମୟରେ ସମସ୍ୟାଶଙ୍କୁଳ ରହି ଆସିଛି । ମୋଗଲ ସାମ୍ରାଜ୍ୟ ସମୟରେ ହିନ୍ଦୁମାନଙ୍କ ଉପରେ ସୁପରିକଳ୍ପିତ ଅତ୍ୟାଚାର କରାଯାଉଥିଲା ମନ୍ଦିର ଭାଙ୍ଗିବା, ଜିଜିୟା କର ଇତ୍ୟାଦି ମାଧମରେ ।

ଆମ ଦେଶକୁ ଖ୍ରୀଷ୍ଟିଆନ ମିଶନାରି ଅନେକ ଦିନରୁ ଆସିଥିଲେ ମଧ ସେମାନଙ୍କର ତତ୍ପରତା ବଢ଼ିଗଲା ଇଂରେଜ ଶାସନ ପରେ । ଧର୍ମାନ୍ତରୀକରଣ ପାଇଁ ସେମାନେ

ବିଶେଷରେ ଆଦିବାସୀ ସଂପ୍ରଦାୟକୁ ଆଖିରେ ରଖିଲେ ଏବଂ ଦେଶର ଅନେକ ଭାଗରେ ସଫଳ ହେଲେ ମଧ୍ୟ । ଯେତେବେଳେ ସେମାନଙ୍କର ଧର୍ମାନ୍ତରୀକରଣ ଉଗ୍ରରୂପ ନେଲା, ଅନେକ ରାଜ୍ୟ ସେମାନଙ୍କୁ ରୋକିବା ପାଇଁ ଆଇନ ପ୍ରଣୟନ କଲେ ।

ପୂର୍ବ ସମୟରେ ହିନ୍ଦୁମାନଙ୍କର ପ୍ରଖର ଧର୍ମାନ୍ଧତା ନଥିଲା ଏବଂ ଏଥିରେ ଧର୍ମାନ୍ତରୀକରଣର ବ୍ୟବସ୍ଥା ନ ଥିବାରୁ ଅନ୍ୟ ଧର୍ମକୁ ନୀଚ ଭାବୁଥିଲେ ମଧ୍ୟ ତା ପ୍ରତି କୌଣସି ଆକ୍ରମଣାତ୍ମକ ମନୋଭାବ ନଥିଲା । ଏପରକି ବ୍ରାହ୍ମ ସମାଜ ପ୍ରତିଷ୍ଠାରେ ହିନ୍ଦୁଧର୍ମ ସହିତ ମତାନ୍ତର ହୋଇଥିଲେ ମଧ୍ୟ କଟୁ ତିକ୍ତତା ଉପୁଜି ନଥିଲା ।

ଏ ଚିନ୍ତାଧାରାରେ ପରିବର୍ତ୍ତନ ଆସିଲା ୧୯୨୫ରେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ସ୍ଥାପିତ ହେବା ପରେ । ସଂଘର ଲକ୍ଷ୍ୟ ହେଲା ଭାରତରେ ଏକ ହିନ୍ଦୁ ରାଷ୍ଟ୍ରର ପ୍ରତିଷ୍ଠା । ସଂଘର ଅନ୍ୟ କାର୍ଯ୍ୟକ୍ରମ ହେଲା ଗୋସଂରକ୍ଷଣ, ଦେବନାଗରୀ ଲିପିର ହିନ୍ଦୀ ଭାଷାକୁ ରାଷ୍ଟ୍ରଭାଷା କରିବା ଇତ୍ୟାଦି । ପରବର୍ତ୍ତୀ ସମୟରେ ମୁସଲମାନଙ୍କୁ ସମର୍ଥନ ଦେଉଥିବାରୁ ସଂଘ ଗାନ୍ଧୀଙ୍କର ବିରୋଧ କଲା ଏବଂ ଶେଷରେ ଗାନ୍ଧୀଙ୍କୁ ହତ୍ୟା କରାଗଲା । ନିଜକୁ ଅଣରାଜନୈତିକ କହୁଥିବା ସଂଘ ପୂର୍ବେ ଜନସଂଘକୁ ଓ ବର୍ତ୍ତମାନ ବିଜେପିକୁ ସହାୟତା ଓ ସମର୍ଥନ ଦେଇଆସୁଛି । ଆଉ ଦୁଇଟି ହିନ୍ଦୁ ସଂସ୍ଥା ବିଶ୍ୱ ହିନ୍ଦୁ ପରିଷଦ ଓ ବଜରଙ୍ଗ ଦଳ ମଧ୍ୟ ଅହିନ୍ଦୁମାନଙ୍କ ବିରୁଦ୍ଧରେ କଠୋର ନୀତି ପ୍ରୟୋଗରେ ବିଶ୍ୱାସ କରନ୍ତି । ଇସଲାମୀ ସନ୍ତ୍ରାସବାଦ ବୃଦ୍ଧି ପାଇବା ପରେ ଏବଂ ବିଜେପି କ୍ଷମତାକୁ ଆସିବା ପରେ ହିନ୍ଦୁ ମୁସଲମାନ ସଂପର୍କ ତିକ୍ତରୁ ତିକ୍ତତର ହେବାରେ ଲାଗିଛି ଏବଂ ଏହାର ଯେ ଉପଶମ ହେବ ତାର କୌଣସି ଲକ୍ଷଣ ଦେଖାଯାଉନାହିଁ ।

ପୂର୍ବରୁ କୁହାଯାଇଛି ଯେ ହିନ୍ଦୁଧର୍ମ ଏକ ଉଦାର ଧର୍ମ ଥିଲା ଏବଂ ଜଣେ କଣ ଖାଇବ, କାହାକୁ କିପରି ପୂଜା କରିବ ବା କରିବ ନାହିଁ ଓ କେଉଁ ନୀତି ଆଚରଣ କରିବ ତା ଉପରେ କୌଣସି ନିୟନ୍ତ୍ରଣ ନଥିଲା । ବର୍ତ୍ତମାନ କିନ୍ତୁ ହିନ୍ଦୁ ମୌଳବାଦୀମାନେ ହିନ୍ଦୁଧର୍ମକୁ ସଂକୁଚିତ କରି ତାକୁ ଇସ୍‌ଲାମ ଓ ଖ୍ରୀଷ୍ଟିଆନ ଭଳି ଗୋଟିଏ ସେମିଟିକ ଧର୍ମରେ ପରିଣତ କରିବାକୁ ଲାଗି ପଡ଼ିଛନ୍ତି । ଏବଂ ହିନ୍ଦୁ ଧର୍ମରୁ ବାହାରି ଯାଇଥିବା ଲୋକମାନଙ୍କୁ କିପରି ଫେରାଇ ଆଣିବେ ସେହି 'ଘର ୱାପସୀ' ନେଇ ତତ୍ପର ।

ଏ ସବୁରେ ତଥାକଥିତ ବୁଦ୍ଧିଜୀବୀମାନଙ୍କର କାର୍ଯ୍ୟକଳାପ ମଧ୍ଯ ବିଶେଷ ଗଠନମୂଳକ ନୁହେଁ । ହିନ୍ଦୁ ମୌଳବାଦୀ ମନ୍ଦିର ଧ୍ୱଂସ କଥା କହିବା ବେଳେ ବାମପନ୍ଥୀ ବୁଦ୍ଧିଜୀବୀମାନେ ପ୍ରମାଣ କରିବାକୁ ଚେଷ୍ଟା କରନ୍ତି କିଭଳି ମୁସଲମାନ ଶାସକମାନେ ମନ୍ଦିରର ରକ୍ଷଣାବେକ୍ଷଣ କରୁଥିଲେ । ଦକ୍ଷିଣପନ୍ଥୀ ବୁଦ୍ଧିଜୀବୀ(ଯେଉଁମାନଙ୍କର ସଂଖ୍ୟା ନଗଣ୍ୟ) ହିନ୍ଦୁ ମୌଳବାଦୀଙ୍କୁ ସମର୍ଥନ ଦେଉଥିବା ବେଳେ ବିଜେପି ସରକାରର ସନ୍ତ୍ରାସ ଦମନ କାର୍ଯ୍ୟକ୍ରମରେ ବାମପନ୍ଥୀମାନେ ହିନ୍ଦୁତ୍ୱବାଦର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଦେଖନ୍ତି । ଏଇ ପରିସ୍ଥିତିରେ ଆମର ନାଗରିକ ସମାଜ ପକ୍ଷନେବାକୁ କିମ୍ବା ଚୁପ ରହିବାକୁ ବାଧ୍ଯ ହୁଏ ।

ବିଭିନ୍ନ ଧର୍ମରେ ଈଶ୍ୱର ଭକ୍ତି ବାହାରେ ଅନେକ ନୀତି ନିୟମ ଅଛି, ଯଥା, କଣ ଖାଇବ ନ ଖାଇବ, କି ପୋଷାକ ପିନ୍ଧିବ, କେଉଁଠାରେ ଓ କିପରି ଭାବରେ ପୂଜା ଅର୍ଚ୍ଚନା କରିବ, କାହାକୁ ବାହା ହେବ ନ ହେବ ଓ କିପରି ଯୌନ ସଂପର୍କ ରଖିବ ଇତ୍ୟାଦି । ଏହା ବାହାରେ ଧର୍ମର ମଧ୍ଯସ୍ଥିମାନେ, ଯଥା ମୁଲ୍ଲା ପାଦ୍ରି ପୁରୋହିତ, ଆହୁରି ବିସ୍ତାର ଭାବରେ ନିର୍ଦ୍ଦେଶ ଯୋଡ଼ି ଦିଅନ୍ତି, ଯଥା, ତାଙ୍କର ଧର୍ମସ୍ଥଳ ଆଗରେ କେତେ ଡେସିବେଲର ବାଦ୍ୟ ସଂଗୀତ ଗ୍ରହଣଯୋଗ୍ୟ, ବିଧର୍ମୀମାନେ ପ୍ରାର୍ଥନା ସ୍ଥଳର କେତେ ନିକଟକୁ ଯାଇପାରିବେ, କେଉଁ ଜନ୍ତୁକୁ ପୂଜା କରାଯିବ ଏବଂ ଅନ୍ୟ କେଉଁ ଜନ୍ତୁ କେତେବେଳେ କେଉଁ ପ୍ରକାରେ ହଣାଯିବ ଓ ତାର ମାଂସ ଭକ୍ଷ୍ୟ କି ନୁହେଁ, ଇତ୍ୟାଦି । ଏ ସବୁ ବିଷୟରେ ଇସଲାମର ହାଡ଼ିଥ୍ ଓ ଆମର ମନୁସ୍ମୃତି ଭଳି ବହି ବିଶେଷ ବ୍ୟବହାରରେ ଆସେ । ମୌଳବାଦୀମାନେ ଧର୍ମରୁ ଆହୁରି ପାଦେ ଆଗକୁ ଯାଇ ବିଭିନ୍ନ ଆଳରେ ଇତିହାସ ବା ଅନ୍ୟ ସ୍ଥାନରେ ହୋଇଥିବା ଅଘଟଣର ଦ୍ୱାହି ଦେଇ ଅନ୍ୟ ଧର୍ମର ଲୋକମାନଙ୍କୁ ଆକ୍ରମଣ କରନ୍ତି ଏବଂ ଏହି ବର୍ବରତା ଶେଷରେ ସାର୍ବଜନୀନ ହତ୍ୟାକାଣ୍ଡରେ ପରିଣତ ହୁଏ ।

ସମାଜରେ ଅନେକ ପ୍ରକାରର ବିଦ୍ୱେଷ ଅଛି, ଯଥା ଜାତିଗତ, ରାଜନୈତିକ, ଭାଷାଭିତ୍ତିକ ଇତ୍ୟାଦି । ଏମାନଙ୍କ ଭିତରୁ ସବୁଠାରୁ ଉତ୍କଟତମ ବିଦ୍ୱେଷ ହେଲା ଧର୍ମ ଜନିତ । ମଣିଷ ମଣିଷକୁ ହତ୍ୟା କରିବାକୁ ଯାଏ ଧର୍ମରେ ଏ କଥାର ସମର୍ଥନ ଅଛି ବୋଲି । ଏଥିପାଇଁ ଆମେ ଯୁଦ୍ଧ ଭଳି ପରିସ୍ଥିତି ଦେଖିବାକୁ ପାଉ ପୃଥିବୀର ବିଭିନ୍ନ ଅଂଚଳରେ : ପାଲେଷ୍ଟାଇନ (ଇହୁଦୀ ଓ ମୁସଲମାନଙ୍କ ଭିତରେ), ଉତ୍ତର ଆୟାରଲ୍ୟାଣ୍ଡ (କ୍ୟାଥୋଲିକ ଓ ପ୍ରଟେଷ୍ଟାଣ୍ଟ), ସୁଡାନ ନାଇଜେରିଆ ଇଥିଓପିଆ

(ମୁସଲମାନ ଓ ଖ୍ରୀଷ୍ଟିଆନ୍), ଶ୍ରୀଲଙ୍କା (ହିନ୍ଦୁ ଓ ବୌଦ୍ଧ), ଇରାନ ଇରାକ (ଶିଆ ଓ ସୁନ୍ନି ମୁସଲମାନ) ଇତ୍ୟାଦି । ଅନେକେ ଭାବନ୍ତି ଯେ ଏ ସବୁ ପରିସ୍ଥିତି ଉପୁଜେ ଦାରିଦ୍ର୍ୟ, ଅଜ୍ଞତା ବା ରାଜନୀତିକ କାରଣରୁ, କିନ୍ତୁ ଏହା ଠିକ ନୁହେଁ । ଆମେରିକା ୯।୧୧ର ସନ୍ତ୍ରାସକାରୀମାନେ ଥିଲେ ଶିକ୍ଷିତ, ମଧ୍ୟବିତ୍ତ ପରିବାରର । ତେବେ ସେମାନେ ମସଜିଦ୍‌ରେ ଦୀକ୍ଷା ନେଇ ବିଶ୍ୱାସ କରୁଥିଲେ ଯେ ଜିହାଦୀ ପାଇଁ ଜନ୍ନତ୍‌ରେ ବାସ୍ତରୀଟି କୁମାରୀ ଅପେକ୍ଷା କରୁଛନ୍ତି ।

ଏ ବିଷୟରେ ଶେଷ କଥା ହେଲା ଯେ ଅନେକ ପ୍ରକାରର ଅସହିଷ୍ଣୁତା ଭିତରେ ଧର୍ମଜନିତ ଅସହିଷ୍ଣୁତା ସବୁଠାରୁ ବେଶି ଉଗ୍ର ଓ ମାରାତ୍ମକ । ପରିତାପର କଥା ଯେ ଯେଉଁ ପର୍ଯ୍ୟନ୍ତ ଧର୍ମ ଅଛି ସେ ପର୍ଯ୍ୟନ୍ତ ଅସହିଷ୍ଣୁତାର ଆତଙ୍କ ମଧ୍ୟ ରହିଥିବ ।

*ଫେବୃଆରି, ୨୦୧୬*

# ସତ ମିଛ ଓ ଅଂଗେ ନିଭାଇବା କଥା

ପୁରୁଣା ଦିନରେ ଆମର କଥାବାଚକ ଗପଟିଏ କହିବା ଆଗରୁ ଶ୍ରୋତାମାନଙ୍କୁ ପଚାରୁଥିଲା, ସତ କହିବି ନା ମିଛ କହିବି ନା ଯାହା ଅଙ୍ଗେ ନିଭେଇଛି ତା କହିବି ? ଏ ପ୍ରଶ୍ନରେ ସ୍ପଷ୍ଟ ଆଭାସ ଥିଲା ଯେ ଗଳ୍ପ ତିନି ପ୍ରକାରର ହୋଇପାରେ । ସତ ଗପ ହେଉଛି ଯାହା ବାସ୍ତବରେ ଘଟିଛି ଏବଂ ଯାହାର ଘଟିଥିବା ବିଷୟରେ କାହାରି କୌଣସି ସନ୍ଦେହ ନାହିଁ । ଏ ପ୍ରକାର ଗପ କାହାଣୀକାର ବା କଥାବାଚକ ସ୍ୱୟଂ ଦେଖିଥାଇପାରେ ବା ପ୍ରାମାଣିକ ସୂତ୍ରରୁ ସେ କଥା ପଢ଼ିଥାଏ ବା ଶୁଣିଥାଇପାରେ । ସେଥିରେ ପୁଣି ପଢ଼ିଥିବା ଓ ଶୁଣିଥିବା ଅପେକ୍ଷା ଦେଖିଥିବା ଘଟଣାର ଗୁରୁତ୍ୱ ବେଶି । କବୀରଙ୍କ ଭାଷାରେ, ତୁ କହତା ହୈ କାଗଜ ଲେଖୀ, ମୈଁ କହତା ହୁଁ ଆଁଖନ ଦେଖୀ ।

ମିଛି କଥା ହେଲା ସଂପୂର୍ଣ୍ଣ କାଳ୍ପନିକ, ବାସ୍ତବ ଜଗତରେ ଯାହାର କୌଣସି ଉଦ୍‌ଗମ ବା ଆଧାର ନାହିଁ ଏବଂ ଯାହା ତିଆରି ହୋଇଥାଏ ଲେଖକର ମନ ଭିତରେ । ପରୀକଥା, ପଶୁପକ୍ଷୀ, ଅସୁର ରାକ୍ଷସ, ସ୍ୱର୍ଗ ପାତାଳକୁ ନେଇ ଲେଖା ଏହି ଶ୍ରେଣୀର । ପାଠକ ଓ ଶ୍ରୋତାଙ୍କୁ ମିଛ ଅପେକ୍ଷା ସତରେ ଘଟିଥିବା କଥା ବେଶି ଆକର୍ଷଣ କରିଥାଏ ।

ଏ ସବୁରୁ ଊର୍ଦ୍ଧ୍ୱରେ ହେଲା ଅଙ୍ଗେ ନିଭାଇବା କଥା ଯାହା ଗଳ୍ପ ଶୁଣାଇବା ଲୋକ ବା ଗଳ୍ପର ଲେଖକ ନିଜ ଜୀବନରେ ନିର୍ବାହ କରିଛି । ଏ ଭଳି କଥାର ଲେଖକ ବା ବର୍ଣ୍ଣନାକାରୀ ନିଜେ ସେ ଗଳ୍ପର ଗୋଟିଏ ଚରିତ୍ର ଏବଂ ଘଟଣାଟି ସେହି ଦୃଷ୍ଟିରୁ ନିତାନ୍ତ ବାସ୍ତବ, ବିଶ୍ୱସନୀୟ ଓ ଜୀବନ୍ତ ବୋଲି ଧରାଯାଇଥାଏ । ରାମାୟଣର ଲେଖକ ବାଲ୍ମିକୀ ସୀତାଙ୍କର ନିର୍ବାସନ ସମୟରେ ତାଙ୍କୁ ନିଜ ଆଶ୍ରମରେ ଆଶ୍ରୟ ଦେଇଥିଲେ । କାଣ୍ଟରବେରି ଟେଲ୍‌ସ୍ (ଚତୁର୍ଦ୍ଦଶ ଶତାବ୍ଦୀ)ରେ ଲେଖକ ଚସର୍ ଯେଉଁ

ଚବିଶ ଜଣ ତୀର୍ଥଯାତ୍ରୀଙ୍କ କାହାଣୀ କହିଛନ୍ତି ସେମାନଙ୍କ ମଧ୍ୟରୁ ସେ ନିଜେ ମଧ୍ୟ ଜଣେ । ଓଡ଼ିଆ ଲୋକକଥା ଶେଷରେ ରାଜା ପୁଅ ବାହାଘର କଥା ବର୍ଣ୍ଣନା କରି କଥାବାଚକ କହେ, ମୁଁ ସେଠିକି ଯାଇଥିଲି, କିନ୍ତୁ କେହି ମୋ ଆଡ଼କୁ ଅନାଇଲେ ନାହିଁ ।

ଆତ୍ମଜୀବନୀ ଓ ଭ୍ରମଣକାହାଣୀ ବହିର ଲେଖକ ନିଜେ ସେ ବହିର ଚରିତ୍ର ହେବାକୁ ବାଧ୍ୟ ଏବଂ ସେହି ଦୃଷ୍ଟିରୁ ତା'ର ବର୍ଣ୍ଣନା ବାସ୍ତବ । ମନଗଢ଼ା କଥା କାହାଣୀ ଗଳ୍ପ ଉପନ୍ୟାସର ଲେଖକ ସବୁବେଳେ ଚେଷ୍ଟା କରିଥାଏ ନିଜର ବିବରଣକୁ ଯଥା ସମ୍ଭବ ବାସ୍ତବବାଦୀ କରିବା ପାଇଁ । ଏହି ଉଦ୍ୟମରେ ଗାଳ୍ପିକ ଓ ଔପନ୍ୟାସିକଙ୍କର ପ୍ରତିଦ୍ୱନ୍ଦ୍ୱୀ ହୁଅନ୍ତି ଐତିହାସିକ, ନୃତତ୍ତ୍ୱବିତ୍, ସମାଜ ବିଜ୍ଞାନୀ ଇତ୍ୟାଦି । ଅନେକ ସମୟରେ ସେମାନଙ୍କର ବର୍ଣ୍ଣନା ସୃଜନଶୀଳ ଲେଖକଙ୍କ ଲେଖାଠାରୁ ଆହୁରି ଚିତ୍ତାକର୍ଷକ ହୋଇଥାଏ । ଉଦାହରଣ ସ୍ୱରୂପ ନୃତତ୍ତ୍ୱବିତ କୌଣସି ଆଦିବାସୀ ସମାଜ ଉପରେ ଗବେଷଣା କଲାବେଳେ ସେମାନଙ୍କ ସହିତ ରହନ୍ତି, ତାଙ୍କର ଚାଲିଚଳନ ସଂସ୍କାର ମେଳା ମଉଛବରେ ଯୋଗ ଦିଅନ୍ତି; ସେମାନଙ୍କୁ କୁହାଯାଏ ପାର୍ଟିସିପାଣ୍ଟ ଅବଜର୍ଭର ବା ଅଂଶଗ୍ରହଣକାରୀ ପର୍ଯ୍ୟବେକ୍ଷକ । ଭେରିଅର ଏଲଓ୍ୱିନ ତାଙ୍କର ଗବେଷଣା ସମୟରେ ଆଦିବାସୀଙ୍କ ସହିତ ରହୁଥିଲେ ଏବଂ ଦୁଇ ଆଦିବାସୀ ମହିଳାଙ୍କୁ ବିବାହ କରିଥିଲେ । ଏ ଭଳି ନୃତତ୍ତ୍ୱବିତ୍‌ଙ୍କ ବହି ସେହି ସଂପ୍ରଦାୟଉପରେ ଲେଖା ହୋଇଥିବା ଉପନ୍ୟାସଠାରୁ ଅଧିକ ଆକର୍ଷକ ହୋଇପାରେ । ଠିକ୍ ସେହିଭଳି ଓଡ଼ିଶା ନଅଙ୍କ ବିଷୟରେ ଦୁର୍ଭିକ୍ଷ କମିଶନଙ୍କ ରିପୋର୍ଟ ଗଳ୍ପ ଉପନ୍ୟାସଠାରୁ ଅଧିକ ମର୍ମସ୍ପର୍ଶୀ ମନେ ହୁଏ ।

କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଘଟଣା, ସମସ୍ୟା, ପରିସ୍ଥିତି ବା କାଳ ବିଷୟରେ ଲେଖିବାକୁ ଯାଉଥିବା ଔପନ୍ୟାସିକ ସେ ବିଷୟରେ ଗଭୀର ଗବେଷଣା କରିଥାନ୍ତି । ଏୟାରପୋର୍ଟ, ହୋଟେଲ, କୋଇଲା ଖଣିକୁ ନେଇ ବେଷ୍ଟସେଲର୍ ଲେଖୁଥିବା ଲେଖକ ଦୀର୍ଘ ସମୟ ଧରି ସେ ଭଳି ସ୍ଥାନରେ ସମୟ କଟାନ୍ତି ଓ ଗବେଷଣା କରନ୍ତି । ଏ ଭଳି ଗବେଷଣା ପ୍ରସୂତ ଏକ ପ୍ରକାରର ଲେଖା ହେଲା ସ୍ଲାଇସ୍ ଅଫ୍ ଲାଇଫ୍ ବା ଚେନାଏ ଜୀବନ ଉପନ୍ୟାସ ଯେଉଁଥିରେ ଡାକ୍ତର, ଖେଳାଳି, ସାମ୍ବାଦିକ ବା ଥିଏଟର କର୍ମୀଙ୍କ ଜୀବନଶୈଳୀର ବିସ୍ତାରରେ ବର୍ଣ୍ଣନା କରାଯାଇଥାଏ । ଆଉ ଗୋଟିଏ ପ୍ରକାରର ଉପନ୍ୟାସ ହେଲା ନନ୍ ଫିକ୍‌ଶନ ନଭେଲ ବା ଅକାଳ୍ପନିକ

ଉପନ୍ୟାସ ଯାହା ସଂପୂର୍ଣ୍ଣ ସତ ଘଟଣା ଉପରେ ଆଧାରିତ । ଏହାର ଗୋଟିଏ ଭଲ ଉଦାହରଣ **ଇନ୍ କୋଲ୍ଡ୍ ବ୍ଲଡ୍**(୧୯୬୫) ଯାହାକୁ ଆମେରିକୀୟ ଲେଖକ ଟ୍ରୁମାନ କାପୋଟି ଗୋଟିଏ ହତ୍ୟାକାଣ୍ଡ ବିଷୟରେ ଲେଖିଥିଲେ ଅପରାଧୀମାନଙ୍କ ସହିତ ଦୀର୍ଘ ସାକ୍ଷାତ୍କାରମାନ କରି ।

ଗବେଷଣା ଓ ବ୍ୟକ୍ତିଗତ ଭାବେ ଅଂଶଗ୍ରହଣ କରି ଲେଖାଯାଇଥିବା କେତୋଟି ବିଶ୍ୱପ୍ରସିଦ୍ଧ ଉପନ୍ୟାସ ବିଷୟରେ ନିମ୍ନରେ ଦିଆଗଲା ।

- ଅପ୍‌ଟନ୍ ସିନ୍‌କ୍ଲେୟାର୍‌ଙ୍କ ଉପନ୍ୟାସ **ଦ ଜଙ୍ଗଲ**(୧୯୦୬) : ଏଇଟି ଲେଖିବା ପାଇଁ ସିନ୍‌କ୍ଲେୟାର ଜଣେ ସାମ୍ବାଦିକ ଭାବେ ନିଜର ପରିଚୟ ଲୁଚାଇ ଶିକାଗୋର ଅପରିଚ୍ଛନ୍ନ ମାଂସ କାରଖାନାମାନଙ୍କରେ ସାତ ସପ୍ତାହ କଟାଇଥିଲେ । ଉପନ୍ୟାସଟି ଏତେ ପ୍ରଭାବଶାଳୀ ଥିଲା ଯେ ଏହା ଯୋଗୁ ଆମେରିକାରେ ଫୁଡ୍ ଏଣ୍ଡ ଡ୍ରଗ୍ ଓ ମିଟ୍ ଇନ୍ସପେକ୍‌ସନ ଆଇନ୍ ପ୍ରଣୀତ ହୋଇଥିଲା ।

- ଜନ୍ ଷ୍ଟାଇନ୍‌ବେକ୍‌ଙ୍କର **ଦ ଗ୍ରେପ୍‌ସ୍ ଅଫ୍ ରାଥ୍**(୧୯୩୯) ; ମରୁଡ଼ି, ଧୂଳିଝଡ଼ ଓ ମେଶିନ ବ୍ୟବହାର ଯୋଗୁ କାମ ହରାଇ ଦୁଃସ୍ଥ ହୋଇଥିବା ଚାଷୀମାନେ ହଜାର ହଜାର ସଂଖ୍ୟାରେ କାମ ସଂଧାନରେ କାଲିଫର୍ନିଆ ଆଡ଼କୁ ମୁହାଁଇଥିଲେ । ଏହି ବିସ୍ଥାପିତ ଦଳେ ଶ୍ରମିକଙ୍କ ସହିତ ଯୋଗ ଦେଇ ଷ୍ଟାଇନବେକ ତାଙ୍କ ସହିତ କିଛି ମାସ କାମ କଲେ ଓ ଅସ୍ଥାୟୀ କ୍ୟାମ୍ପରେ ରହିଲେ । ଫେରିଆସି ସେ ଯେଉଁ ବହିଟି ଲେଖିଲେ ତା ଅତି ଶୀଘ୍ର ବେଷ୍ଟ ସେଲର ତାଲିକାକୁ ଗଲା ଏବଂ ବହିଟିକୁ ଅତୀତରେ ହଲଚଲ ସୃଷ୍ଟି କରିଥିବା ଅଂକଲ ଟମ୍‌ସ କେବିନ ସହିତ ତୁଳନା କରାଗଲା ।

-ଆଇନ୍ ରାଣ୍ଡଙ୍କର **ଦ ଫାଉଣ୍ଟେନ୍‌ହେଡ୍**(୧୯୪୩) ; ଉପନ୍ୟାସଟି ଜଣେ ଆର୍କିଟେକ୍ଟଙ୍କୁ ନେଇ ଏବଂ ସେ ବିଷୟରେ ଜାଣିବା ପାଇଁ ଲେଖିକା ଛମାସ ବିନା ବେତନରେ ନ୍ୟୁୟର୍କର ଏକ ଆର୍କିଟେକ୍ଟ ଅଫିସ୍‌ରେ କାମ କରିଥିଲେ ।

ଉପରଲିଖିତ ଉଦାହରଣମାନ ହେଲା ବହି ଲେଖିବା ପାଇଁ ଭାବିଚିନ୍ତି ଅନୁଭବ ଓ ଅଭିଜ୍ଞତା ଆହରଣ କରିବା କଥା । ମଣିଷ ମାତ୍ରେ ହିଁ ତାର ସ୍ୱାଭାବିକ ଜୀବନରେ ବିଭିନ୍ନ ପ୍ରକାରର ଅନୁଭବ ଓ ଅଭିଜ୍ଞତା ସଂଗ୍ରହ କରୁଥାଏ ଏବଂ ଲେଖକମାନେ ନିଜର ବ୍ୟକ୍ତିଗତ ଅନୁଭୂତି ଓ ଉପଲବ୍ଧିକୁ ଲେଖାରେ ବ୍ୟବହାର କରିଥାନ୍ତି । ଚାର୍ଲସ୍

ଡିକେନ୍ସଙ୍କର ଉପନ୍ୟାସମାନଙ୍କୁ ତାଙ୍କର ଜୀବନର ବିଭିନ୍ନ ପର୍ଯ୍ୟାୟ ସହିତ ଯୋଡ଼ି ଦିଆଯାଇପାରେ । ଫକୀରମୋହନଙ୍କ ଛମାଣ ଆଠଗୁଣ୍ଠ ସେ ଜାଣିଥିବା ଗୋଟିଏ ସତ ଘଟଣା ଉପରେ ପର୍ଯ୍ୟବସିତ ବୋଲି କୁହାଯାଏ । ଗୋପୀନାଥ ମହାନ୍ତି କୋରାପୁଟରେ ସାଢେ ଚାରିବର୍ଷ ଚାକିରି କରିଥିଲେ(୧୯୪୦-୪୪) ଏବଂ ସେଠାରେ ତାଙ୍କର ଆଦିବାସୀ ଜୀବନ ସହିତ ଭଲ ଭାବରେ ପରିଚିତ ହୋଇଥିବାର ଫଳ ଥିଲା **ଦାଦିବୁଢ଼ା**(୧୯୪୫), **ପରଜା**(୧୯୪୫) ଓ **ଅମୃତର ସନ୍ତାନ**(୧୯୪୭) । ସେ ନିଜେ ଲେଖିଛନ୍ତି କିପରି **ପରଜା**ର କାହାଣୀ ସେ ଲକ୍ଷ୍ମୀପୁରର ଜଣେ ସବ୍‌ଇନ୍ସପେକ୍ଟରଙ୍କ ପାଖରୁ ଶୁଣିଥିଲେ ଏବଂ ତାକୁ ଉପନ୍ୟାସର ରୂପ ଦେଇଥିଲେ । ଅନ୍ୟତ୍ର ସେ କହିଛନ୍ତି ଯେ ୩୧ ବର୍ଷ ସରକାରୀ ଚାକିରିର ଅନୁଭୂତି ବିନା ତାଙ୍କର ଦାନାପାଣି ଉପନ୍ୟାସ ସମ୍ଭବ ହୋଇ ନଥାନ୍ତା ।

ଏଠାରେ ଗୋଟିଏ ପ୍ରଶ୍ନ ଉଠୁଛି ଅନୁଭବ ହିଁ ଯଥେଷ୍ଟ ନା ଲେଖିବା ପାଇଁ ସେଥିରେ କଳ୍ପନାର ମଧ୍ୟ ସଂଯୋଜନା ଦରକାର । ଏବଂ ତା ହେଲେ କାହାର ପରିମାଣ କେତେ ରହିବ । ଏମିଲ ଜୋଲା, ଡିକେନ୍ସ, ବାଲଜାକ ଯେଉଁ ବିଷୟରେ ଲେଖୁଥିଲେ ସେ ବିଷୟରେ ଗଭୀର ଅନୁଧ୍ୟାନ କରୁଥିଲେ, କିନ୍ତୁ ସେମାନଙ୍କର ଲେଖନ ଶୈଳୀ, କଳ୍ପନାର ଉପଯୁକ୍ତ ପ୍ରୟୋଗ ଓ ବାସ୍ତବବାଦୀ ଚରିତ୍ର ଚିତ୍ରଣ ଯୋଗୁ ଗବେଷଣାର ତଥ୍ୟ ପଶ୍ଚାଦ୍ଦେଶରେ ରହୁଥିଲା ଏବଂ ପାଠକଙ୍କୁ ଭାରାକ୍ରାନ୍ତ କରୁନଥିଲା । ଗବେଷଣାଲବ୍ଧ ଜ୍ଞାନକୁ ବିସ୍ତାର ଭାବରେ ବର୍ଣ୍ଣନା କଲେ ବହିଟି ଉପନ୍ୟାସ ଅପେକ୍ଷା ବେଶି ରିପୋର୍ଟ ହୋଇଯିବାର ସମ୍ଭାବନା ରହିଛି । କେତେ ଓ କିପରି ଭାବରେ ଗବେଷଣା କରିବ ସେ ବିଷୟରେ ମଧ୍ୟ ବିଭିନ୍ନ ଦୃଷ୍ଟିକୋଣ ଅଛି । ଲେଖିକା ଜର୍ଜ ଇଲିଅଟ ଏ ବିଷୟରେ ଗୋଟିଏ ସନ୍ତୁଳିତ ମତ ଦେଇଥିଲେ ଯେ କାରଖାନା ଭିତରକୁ ଯାଇ ଲେଖକକୁ ସବୁ କିଛି ଅନୁଭବ କରିବାର ଆବଶ୍ୟକତା ନାହିଁ, ତା ପାଇଁ ଖୋଲା ଦରଜା ହିଁ ଯଥେଷ୍ଟ ।

ଏ କଥା ମଧ୍ୟ ସତ ଯେ ଲେଖକର ବ୍ୟକ୍ତିଗତ ଜୀବନର ଅନୁଭୂତି ତାର ଲେଖାରେ କେଉଁଠି ନା କେଉଁଠି ଓ କିପରି ନା କିପରି ପ୍ରତିଫଳିତ ହୋଇଥାଏ । ନିଜେ ଭେଟିଥିବା ଦୁଇ ତିନିଟି ଚରିତ୍ରକୁ ମିଶାଇ ସେ ଗୋଟିଏ ଚରିତ୍ର ତିଆରି କରିପାରେ, ବିଭିନ୍ନ ଘଟଣାକୁ ସଜାଇ ସେ ଗୋଟିଏ ନୂଆ ଆଖ୍ୟାନ ଗଢ଼ିପାରେ । ସେହି ଦୃଷ୍ଟିରୁ ଦେଖିଲେ ଲେଖକର କୌଣସି କାହାଣୀ ବି ସଂପୂର୍ଣ୍ଣ କାଳ୍ପନିକ ହୋଇନପାରେ ।

ବର୍ତ୍ତମାନ ଏକ ତର୍କ ଉଠୁଛି ଯେ ନୀଚ ବର୍ଗର ଲୋକଙ୍କ ବିଷୟରେ ସେହି ବର୍ଗର ଲୋକ ହିଁ ନିଷ୍ଠାପର ଭାବରେ ଲେଖିପାରିବେ, କାରଣ ସେ ବିଷୟରେ କେବଳ ସେହିମାନଙ୍କର ହିଁ ବ୍ୟକ୍ତିଗତ ଅନୁଭୂତି ଅଛି । ଦଳିତ ବୁଦ୍ଧିଜୀବୀ କହୁଛନ୍ତି କେବଳ ଦଳିତମାନେ ନିଜେ ଯାହା ଲେଖୁଛନ୍ତି ତାହା ହିଁ ଦଳିତ ସାହିତ୍ୟ, ସବର୍ଣ୍ଣ ଲେଖକ ଦଳିତମାନଙ୍କ ବିଷୟରେ ଯାହା ଲେଖିଛନ୍ତି, ତା ଦଳିତ ସାହିତ୍ୟର ଅନ୍ତର୍ଭୁକ୍ତ ନୁହେଁ । ପ୍ରେମଚନ୍ଦଙ୍କର ଅନେକ ଲେଖାରେ ଦଳିତ ଚରିତ୍ର ଅଛନ୍ତି; ତାଙ୍କର **ରଂଗଭୂମି** ଉପନ୍ୟାସର ପ୍ରଧାନ ଚରିତ୍ର ଜଣେ ଦରିଦ୍ର ଅଶିକ୍ଷିତ ଦଳିତ । ମୁଲକ୍‌ରାଜ ଆନନ୍ଦଙ୍କ **ଅନ୍‌ଟଚେବ୍‌ଲ୍**( ୧୯୩୫ )ରେ ଏକ ଭଙ୍ଗୀ ଯୁବକର କଥା ଅଛି ଯେପରି ଅଛି ଗୋପୀନାଥ ମହାନ୍ତିଙ୍କ **ହରିଜନ**( ୧୯୪୮ )ରେ ମେହେନ୍ତରଙ୍କ କାହାଣୀ । କୁହାଯାଉଛି ଯେ ଏ ସବୁକୁ ଦଳିତ ସାହିତ୍ୟର ମର୍ଯ୍ୟାଦା ଦିଆଯାଇ ନପାରେ କାରଣ ଏଥିରେ ଲେଖକଙ୍କର ନିଜର ଅନୁଭବ ନାହିଁ । ସେମାନଙ୍କର ସହାନୁଭୂତି ଥାଇପାରେ କିନ୍ତୁ ସେମାନଙ୍କର ସ୍ୱାନୁଭୂତି ବା ସ୍ୱ-ଅନୁଭୂତି ନାହିଁ ।

ଆମେରିକାରେ ମଧ୍ୟ କଳାଲୋକମାନଙ୍କ ବିଷୟରେ ଲେଖିବା ନେଇ ଠିକ ଏକା ଭଳି ମତ ପ୍ରକାଶ ପାଇଛି । ୱିଲିଅମ ଷ୍ଟାଇରନଙ୍କର **ଦ କନଫେସନ୍ସ ଅଫ୍ ନ୍ୟାଟ୍ ଟର୍ନର**( ୧୯୬୮ ) ବହିରେ ଅଛି ୧୯୩୧ ମସିହାରେ ହୋଇଥିବା ଦାସମାନଙ୍କ ବିଦ୍ରୋହର କାହାଣୀ । ଏହି ବହି ବିରୁଦ୍ଧରେ ଆଫ୍ରିକାନ୍-ଆମେରିକାନ୍ ବୁଦ୍ଧିଜୀବୀ ଗୋଟିଏ ବହି ବାହାର କଲେ, ଟେନ୍ ବ୍ଲାକ୍ ରାଇଟର୍ସ ରେସ୍‌ପଣ୍ଡ । ସେମାନଙ୍କର ମତ ଥିଲା ଯେ ଜଣେ ଗୋରା ଲୋକ ଏ ବିଷୟରେ ବିଶ୍ୱସ୍ତ ବହି ଲେଖି ନପାରେ । ଏହା ଠିକ୍ ଆମର ଦଳିତ ବୁଦ୍ଧିଜୀବୀମାନଙ୍କର ଯୁକ୍ତି ଭଳି ଥିଲା ।

ଜଣେ ନିଜର ବ୍ୟକ୍ତିଗତ ଅନୁଭୂତି ବିନା ସେ ବିଷୟରେ ଲେଖିପାରିବ କି ନା ଏ ସମ୍ବନ୍ଧରେ ନାଟ୍ୟ ଜଗତରୁ ଏକ ଉଦାହରଣ ନିଆଯାଇପାରେ । ମଞ୍ଚ କଳାକାରମାନଙ୍କର ଅଭିନୟ ପାଇଁ ଦୁଇ ପ୍ରକାରର ପ୍ରଣାଳୀ ଅଛି : ଷ୍ଟାନିସ୍ଲାଭସ୍କିଙ୍କର ପ୍ରବର୍ତ୍ତିତ ମେଥଡ ସ୍କୁଲ ଏବଂ ଅନ୍ୟଟି ଟେକ୍‌ନିକ୍ ସ୍କୁଲ । ପ୍ରଥମ ପ୍ରଣାଳୀରେ ଅଭିନେତାକୁ ନିଜର ବ୍ୟକ୍ତିଗତ ଅଭିଜ୍ଞତା ଦେଇ ଚରିତ୍ରକୁ ଫୁଟାଇବାକୁ ହେବ, ଅର୍ଥାତ୍ ଗୋଟିଏ ଚରମ ଉଦାହରଣ ନେଲେ, ମଦ ପିଇଲେ ମାତାଲର ସଠିକ ଅଭିନୟ କରିପାରିବ । ଅନ୍ୟ ପକ୍ଷରେ ଟେକନିକ୍ ସ୍କୁଲର ଅଭିନେତା ନିଜର ଅଭିନୟ କଳା କୌଶଳରେ ହିଁ ମଦ୍ୟପ ଚରିତ୍ରକୁ ମଞ୍ଚ ଉପରେ ଜୀବନ୍ତ କରିବ ।

ଏ ବିଷୟରେ ଗୋଟିଏ ମଜାର କଥା ଅଛି । ହଲିଉଡ୍ ଚଳଚ୍ଚିତ୍ର ଦ ମାରାଥନ ମ୍ୟାନ ତିଆରି ବେଳେ ଏକ ଦୃଶ୍ୟରେ ଥିଲା ନାୟକ ଡସ୍‌ଟିନ୍ ହଫ୍‌ମ୍ୟାନ( ଯେ କି ମେଥଡ ସ୍କୁଲରେ ବିଶ୍ୱାସ କରୁଥିଲେ) ତିନି ରାତି ଶୋଇ ନଥିବାର ଦୃଶ୍ୟ । ଏଥିପାଇଁ ସେ ତିନି ରାତି ଅନିଦ୍ରା ରହିଥିଲେ । ସକାଳେ ତାଙ୍କ ସହିତ ସେହି ଦୃଶ୍ୟରେ ଅଭିନୟ କରୁଥିବା ଲରେନ୍ସ ଅଲିଭିଏର(ଯେ କି ଟେକନିକ ସ୍କୁଲରେ ବିଶ୍ୱାସ କରୁଥିଲେ) ଏ କଥା ଶୁଣି କହିଲେ, ଏତେ କଷ୍ଟ ନ କରି ସିଧାସଳଖ ଅଭିନୟ କରିଥିଲେ ଚଳି ନ ଥାନ୍ତା ?

ହୁଏତ ଟେକନିକ ସ୍କୁଲର ଅଭିନେତା ଭଳି ଜଣେ ଲେଖକ ମଧ୍ୟ ଅନୁଭବ ନ ଥାଇ ନିଜର ପଢାଶୁଣା ଜ୍ଞାନରୁ ଗଳ୍ପ ଉପନ୍ୟାସ ଲେଖିପାରିବ । କିନ୍ତୁ ସେଥିରେ କିଛି ଘଟଣା କଞ୍ଚା ରହିଯିବାର ସମ୍ଭାବନା ଅଛି । କୁହାଯାଇଥାଏ ଯେ ପ୍ରେମଚନ୍ଦଙ୍କ ଉପନ୍ୟାସରେ ଗାଁର ବର୍ଣ୍ଣନା ଯେପରି ଜୀବନ୍ତ, ଯୁକ୍ତିଯୁକ୍ତ ଓ ବିଶ୍ୱାସଯୋଗ୍ୟ, ତା ତାଙ୍କର ସହର ବର୍ଣ୍ଣନାରେ ନାହିଁ, କାରଣ ତାଙ୍କର ସେ ଭଳି ଜୀବନ ସହିତ ଘନିଷ୍ଠ ସଂପର୍କ ନଥିଲା ।

ପ୍ରକୃତ ସମସ୍ୟା ଉପୁଜେ ଯେତେବେଳେ ଲେଖକ କୌଣସି ଗୋଷ୍ଠୀର ପ୍ରତିନିଧିତ୍ୱ କରିବାର ଦାବୀ କରେ ନିଜେ ତାର ସଭ୍ୟ ନଥାଇ ବା ସେ ଗୋଷ୍ଠୀର ଭଲମନ୍ଦରେ ଭାଗ ନ ନେଇ । ଏହାର ଉଦାହରଣ କବିତାରୁ ନିଆଯାଉ । ଅବଶ୍ୟ କବିତାରେ ସତ ମିଛ ଅଙ୍ଗେ ନିଭା କଥା ଖୋଜିବା ଦୁଷ୍କର ବ୍ୟାପାର କାରଣ କବିତା ଭିନ୍ନ ଆକାଶର ପକ୍ଷୀ । କବିତାରେ ସତ ମିଛ ନଥାଏ, ଥାଏ କବିତା । କବିତା ପୁଣି ସତ ମିଛ ଓ ଅଙ୍ଗେ ଲିଭେଇବା କଥାରୁ ହିଁ ତିଆରି ହୁଏ । କବି ଯେ ସତ ମିଛ କରି କହନ୍ତି, କବିତା ଚାତୁରୀରେ ମନ ମୋହନ୍ତି । ନ କବେ ବର୍ଣ୍ଣନମ୍ ମିଥ୍ୟା । ରବୀନ୍ଦ୍ରନାଥ ଠାକୁରଙ୍କ ଭାଷା ଓ ଛନ୍ଦ କବିତାରେ ନାରଦ ବାଲ୍ମୀକିଙ୍କୁ କହୁଛନ୍ତି, ସେଇ ସତ୍ୟ ଯା ରଚିବେ ତୁମି; ଘଟେ ଯା ତା ସତ୍ୟ ନହେ ।

ପୂର୍ବ ବର୍ଣ୍ଣିତ ଦଳିତ ସାହିତ୍ୟର ସହାନୁଭୂତି ଓ ସ୍ୱାନୁଭୂତି ପରିପ୍ରେକ୍ଷୀରେ କବିତାକୁ ଦେଖା ଯାଉ । କବିମାନେ ମଧ୍ୟ ଦାବି କରନ୍ତି ନିମ୍ନ ବର୍ଗର ଲୋକମାନଙ୍କ ପ୍ରତିନିଧିତ୍ୱ କରିବାର । ସଚି ରାଉତରା ନିଜକୁ ମାଟିର ଧରା ଆଉ ଆକାଶର କବି କହୁଥିବା ବେଳେ ବଙ୍ଗାଳି କବି ପ୍ରେମେନ୍ଦ୍ର ମିତ୍ର କହନ୍ତି, ଆମି କବି ଯତ କାମାରେର ଆର୍ କାଁସାରୀର ଆର୍ ଛୁତୋରେର, ମୁଟେ ମଜୁରେର; ଆମି କବି ଯତ ଇତରେର ।

ଇତର ଲୋକ କହିବ ଏଇଟି ମିଛ ଦାବୀ । ଏ ବିଷୟରେ ବୋଧହୁଏ ସବୁଠାରୁ ନିଷ୍ପାପର କଥା କହିଛନ୍ତି ରବୀନ୍ଦ୍ରନାଥ ଠାକୁର ନିଜର ମୃତ୍ୟୁର କିଛି ମାସ ପୂର୍ବରୁ ଲେଖିଥିବା ଐକତାନ କବିତାରେ । ତାଙ୍କର ବର୍ଣ୍ଣନାରେ ଚାଷୀ କ୍ଷେତ୍ରରେ ହଳ କରୁଛି, ତନ୍ତୀ ଲୁଗା ବୁଣୁଛି, କେଉଟ ମାଛ ଧରୁଛି, ଏମାନଙ୍କର ବିଚିତ୍ର କର୍ମଭାର ବହୁଦୂର ପ୍ରସାରିତ । ତାହାରି ଉପରେ ଭାରା ଦେଇ ସମସ୍ତ ସଂସାର ଚାଲିଛି । ଏବଂ

ଅତି କ୍ଷୁଦ୍ର ଅଙ୍ଗେ ତାର ସମ୍ମାନେର ଚିର ନିର୍ବାସନେ
ସମାଜେର ଉଚ୍ଚ ମଞ୍ଚେ ବସେଛି ସଂକୀର୍ଣ୍ଣ ବାତାୟନେ ।
ମାଝେ ମାଝେ ଗେଛି ଆମି ଓ ପାଡ଼ାର ପ୍ରାଙ୍ଗଣେର ଧାରେ,
ଭିତରେ ପ୍ରବେଶ କରି ସେ ଶକ୍ତି ଛିଲ ନା ଏକେବାରେ ।

ରବୀନ୍ଦ୍ରନାଥ ନିଜେ ଏଇ ତଥାକଥିତ ନୀଚ ସମାଜ ଭିତରକୁ ପ୍ରବେଶ କରି ପାରିନଥିଲେ । ତେବେ ଯେଉଁମାନେ ଉଚ୍ଚାସନରେ ବସି ନିଜକୁ ସେମାନଙ୍କର ପ୍ରତିନିଧି ବୋଲି ଦାବୀ କରନ୍ତି, ସେମାନଙ୍କ ପାଇଁ ରବୀନ୍ଦ୍ରନାଥ ସେହି କବିତାରେ କହିଛନ୍ତି, ସତ୍ୟ ମୂଲ୍ୟ ନା ଦିୟେ ଇ ସାହିତ୍ୟେର ଖ୍ୟାତି କରା ଚୁରି, ଭାଲୋ ନୟ ଭାଲୋ ନୟ ନକଲ୍ ସେ ଶୌଖୀନ ମଜଦୁରି ।

ତାହା ହିଁ ସତ ମିଛ ଓ ଅଙ୍ଗେ ନିଭେଇବା ପ୍ରସଙ୍ଗର ଶେଷ କଥା ହେଉ ।

*ଏପ୍ରିଲ ୨୦୧୬*

# ଆପଣ ବର୍ତ୍ତମାନ ଓଡ଼ିଶାରେ : ଏଠାରେ ହସିବା ମନା

'' ଭୁବନେଶ୍ୱର ୨।୩ (ଇମିସ) ଆଜିକାଲି ହସିବା ବିରଳ ହୋଇ ଯାଇଛି । ଖୁବ୍ କମ ଲୋକଙ୍କୁ ହସିବାର ଦେଖିବାକୁ ମିଳୁଛି । ଓଡ଼ିଶାରେ ରାଜନେତାଙ୍କଠାରୁ ଆରମ୍ଭ କରି ସାହିତ୍ୟିକ ଓ ବୁଦ୍ଧିଜୀବୀ ଗୋଷ୍ଠୀ ସାମାନ୍ୟ ବ୍ୟଙ୍ଗ ସହିବା ଅବସ୍ଥାରେ ନାହାନ୍ତି । ଅତି ସାମାନ୍ୟ ବିଦ୍ରୂପ ପ୍ରକାଶ ପାଇଲେ ସେମାନେ ଯୁଦ୍ଧ କରିବା ପରିସ୍ଥିତି ସୃଷ୍ଟି କରି ଦିଅନ୍ତି ।''

ଫତୁରାନନ୍ଦ ଶତବାର୍ଷିକୀ ଉତ୍ସବରେ ପ୍ରଧାନ ଅତିଥି ସୌମ୍ୟରଂଜନ ପଟ୍ଟନାୟକ

(ସଂବାଦ ୩ ମାର୍ଚ୍ଚ, ୨୦୧୫)

ଅନେକ ଦିନ ତଳେ ଏ ସମ୍ବାଦଟି ପଢିବା ପରେ ମୋର ମନେ ହୋଇଥିଲା ଯେ ଆମ ସାହିତ୍ୟର ଅବସ୍ଥା ମଧ୍ୟ ଏକା ଭଳି । ଏଥିରେ ମଧ୍ୟ ହସ ବିରଳ । ସାହିତ୍ୟରେ ଆମେମାନେ ସବୁବେଳେ ଗମ୍ଭୀର ବିଷୟକୁ ସମ୍ମାନ ଦେଉ ଓ କାନ୍ଦ ସହିତ ଆମର ଆତ୍ମୀୟତା ଅଛି । ଓଡ଼ିଆରେ 'କେମା ଦେଇ କାନ୍ଦ' ଭଳି ବହି ଅଛି, 'କେମାଦେଇ ହସ' ବହି ନାହିଁ । କାନ୍ଦଣା ଗୋଟିଏ ସାହିତ୍ୟିକ ବିଭାଗ ଯେଉଁଥିରେ ଆମେମାନେ ପାରଙ୍ଗମ । ଉତ୍କଳ ଜନନୀଙ୍କ କ୍ରନ୍ଦନ, କଳିଙ୍ଗ ଭାରତୀଙ୍କ ରୋଦନ, ପୁତ୍ର ବିୟୋଗରେ ମାତାଙ୍କ ବିଳାପ ଆମ ସାହିତ୍ୟର ଏକ ବଳିଷ୍ଠ ପରମ୍ପରା । ଏ ସବୁ ପଢ଼ିଲେ ମନେ ହେବ ଯେପରିକି ଆମର ସବୁ ସମୟ ଯାଉଥିଲା ଛାତି ପିଟିବାରେ, ଝୁରିବାରେ, ସକେଇବାରେ, ବାହୁନିବାରେ ଏବଂ କାନ୍ଦ ବୋବାଳିରେ । ମୋର ଭୟ ହେଉଛି ହୁଏତ କେତେବେଳେ ଏୟାରପୋର୍ଟ ଓ ଷ୍ଟେସନରୁ ବାହାରିବା ବେଳେ ଆଖିରେ ସାଇନବୋର୍ଡ ପଡ଼ିବ : ''ଆପଣ ବର୍ତ୍ତମାନ ଓଡ଼ିଶାରେ : ଏଠାରେ ହସିବା ମନା ।''

ମୁଁ ଯେତେବେଳେ ମୋର ନନ୍‌ସେନ୍‌ସ୍ କବିତା ବହି ଆଲୁକୁଚି ମାଲୁକୁଚି ଛପାଇବା ପାଇଁ ପଠାଇଲି, ଜଣେ ଲେଖିକା ମତେ କହିଥିଲେ, ଏ ବହି ବାହାରିବା ପରେ କେହି ଆପଣଙ୍କ ଲେଖାକୁ ଗମ୍ଭୀରତାର ସହିତ ନେବେ ନାହିଁ । (ଅବଶ୍ୟ ଆଗରୁ ଯେ ମତେ ପାଠକମାନେ ଗମ୍ଭୀରତାର ସହିତ ନେଉଥିଲେ, ତା ମଧ ମତେ ଜଣା ନ ଥିଲା । ) ତାଙ୍କ କଥାର ମର୍ମ ଥିଲା ଯେ ଓଡ଼ିଶାରେ ହାଲୁକା ହାସ୍ୟରସାତ୍ମକ ଲେଖାର ଆଦର ନାହିଁ ଏବଂ ହାସ୍ୟରସର ଲେଖକ ସମ୍ମାନର ଯୋଗ୍ୟ ନୁହେଁ । ମୋର ବହିଟି ପ୍ରକାଶିତ ହେବା ପରେ ତାର କୌଣସି ଆଲୋଚନା ହୋଇ ନ ଥିଲା, ତେବେ ଗୋଟିଏ ଲିଟ୍‌ଲ୍ ମ୍ୟାଗାଜିନ (ଶ୍ରୀ ହରିବୋଲ ନଭେମ୍ବର-ଡିସେମ୍ବର ୨୦୦୫) ଏହି ବହିର ଉଲ୍ଲେଖ କରି ଏ ଭଳି ମନ୍ତବ୍ୟ କରିଥିଲେ : ଓଡ଼ିଶାର ମହାନ ଲେଖକମାନଙ୍କ ବିନୋଦ ବୃତ୍ତି ଉପରେ ପାଠକଙ୍କର ଘୋର ସନ୍ଦେହ । ହସିଦେଲେ କାଳେ ପାଠକ ଖୁସି ହୋଇଯିବେ, ଫଳରେ ତାଙ୍କର ପ୍ରେଷ୍ଟିଜ ଚାଲିଯିବ, ହୁଏତ ଏ ଭଳି ଭୟ ତାଙ୍କୁ ହାସ୍ୟ ରଚନାରୁ ନିବୃତ୍ତ କରି ରଖିଛି ।... ଏଇ ଲେଖକମାନଙ୍କ ପାରିବାରିକ ଜୀବନ ସୁଖମୟ ହେଉ, ଚାକିରିରେ ପ୍ରମୋଶନ ମିଳୁଥାଉ ଓ ସେମାନେ ଅନ୍ୟୁନ ଖଣ୍ଡିଏ ହସ ହସ ପୁସ୍ତକ ଜରିଆରେ ପାଠକଙ୍କ ଗହଣକୁ ଆସନ୍ତୁ ବୋଲି ସମସ୍ତେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛନ୍ତି ।

ଏହି ମନ୍ତବ୍ୟ ତଥା ପ୍ରଥମରେ ଦିଆଯାଇଥିବା ଅଗ୍ରଲେଖରୁ ସ୍ପଷ୍ଟ ହେବ ଯେ ଗୋଟିଏ ଜାତି ଭାବରେ ଆମେ ହାସ୍ୟରସ ପ୍ରତି ବିମୁଖ । ଆମର ସାହିତ୍ୟ ମଧ ହସରୁ ନିଜକୁ ଦୂରେଇ ରଖିଆସିଛି ।

ମଣିଷର ଭାବାନୁଭୂତିମାନଙ୍କୁ ଭରତ ମୁନି ତାଙ୍କର ନାଟ୍ୟଶାସ୍ତ୍ରରେ ଯେଉଁ ଆଠ ଶ୍ରେଣୀରେ ବିଭକ୍ତ କରିଛନ୍ତି, ହାସ୍ୟରସ ତା ମଧ୍ୟରୁ ଅନ୍ୟତମ । (ନବରସ ଅନ୍ତର୍ଭୁକ୍ତ ଶାନ୍ତ ରସ ଭରତଙ୍କ ତାଲିକାରେ ନଥିଲା ।) ଏହି ଆଠଟି ରସ ଭିତରୁ ପୁଣି ସେ ହାସ୍ୟରସକୁ ଶୃଙ୍ଗାର ରସ ସହିତ ଏକାଠି କରି କହିଥିଲେ, ଶୃଙ୍ଗାରାତ୍ ଜାୟତେ ହାସ୍ୟଃ । ଆମର ପ୍ରାଚୀନ ଓଡ଼ିଆ ଲେଖକମାନେ କିନ୍ତୁ ନିଜ ଲେଖାରେ ଶୃଙ୍ଗାରକୁ ଅତିମାତ୍ରାରେ ପ୍ରାଧାନ୍ୟ ଦେଇଥିବା ବେଳେ ହାସ୍ୟକୁ କ୍ୱଚିତ ବ୍ୟବହାର କରିଛନ୍ତି ।

ଏହାର କାରଣ ବୋଧହୁଏ ଯେ ହସିବାକୁ ଆମର ଶାସ୍ତ୍ରକାରମାନେ ଏକ ଉଚ୍ଚ ଆଚରଣ ବୋଲି ଗ୍ରହଣ କରୁ ନଥିଲେ । ସେହି ଭରତ ମୁନିଙ୍କ ମତରେ ହାସ୍ୟ

ବିନୋଦ ହେଉଛି ସ୍ତ୍ରୀ ଓ ନୀଚ ଜାତିଙ୍କର । ଚରିତ୍ର ଅନୁସାରେ ହସର ମଧ୍ୟ ବିଭିନ୍ନ ବିଭାଗ କରାଯାଇ ନାଟକରେ କିଏ କିପରି ହସିବ ତା' ନିମ୍ନମତେ ସ୍ଥିର କରାଯାଇଥିଲା: ଭଦ୍ର ଓ ସମ୍ଭ୍ରାନ୍ତ ଲୋକ -ସ୍ମିତ, ହସିତ; ମଧ୍ୟମ ବର୍ଗ ଓ ସାଧାରଣ ଚରିତ୍ର- ବିହସିତ, ଉପହସିତ; ନୀଚ ଅଭଦ୍ର ନିମ୍ନ ବର୍ଗ-ଅପହସିତ, ଅତିହସିତ । ଏ ଭଳି ଶ୍ରେଣୀ ବିଭାଗରେ ବୋଧହୁଏ ହସ ସାହିତ୍ୟରୁ ଉପେକ୍ଷିତ ହୋଇଗଲା ।

ପାଶ୍ଚାତ୍ୟ ସାହିତ୍ୟରେ ମଧ୍ୟ ହାସ୍ୟ ରସର ଆରମ୍ଭ ହେଲା ଅନେକ ପରେ । ହୋମର ଓ ଭର୍ଜିଲଙ୍କ ଲେଖାରେ ହାସ୍ୟ ନଥିଲା । କୁହାଯାଇଛି ଯେ ଇଉରୋପୀୟ ସାହିତ୍ୟରେ ହସ ପ୍ରବେଶ କଲା ସର୍‌ଭାଣ୍ଟିଜଙ୍କର ଡନ୍ କିହୋଟେ(ସପ୍ତଦଶ ଶତାବ୍ଦୀ) ଉପନ୍ୟାସରୁ ।

ଓଡ଼ିଆ ସାହିତ୍ୟର ଆରମ୍ଭ କାଳରୁ ହିଁ ହାସ୍ୟରସ ବ୍ୟବହାର କରାଯାଇଛି ବୋଲି ଦାବୀ କରାଯାଏ । ଆମର ପ୍ରଥମ ସାହିତ୍ୟିକ କୀର୍ତ୍ତି ବଚ୍ଛା ଦାସଙ୍କର **କଳଶା ଚଉତିଶା**ରେ ଥିବା ବୁଢ଼ା ବରର ନିମ୍ନଲିଖିତ ବର୍ଣ୍ଣନାକୁ ଏଥିର ଉଦାହରଣ ଦିଆଯାଏ:

ଖୁଁ ଖୁଁ ଖାସ ସାହସେଣ ପେଲୁଅଛି ଧଇଁ
ଟାକୁଆ ଗାଲ ପାକୁଆ ଦାନ୍ତ ଆଦି ନାହିଁ । ଇତ୍ୟାଦି

ସାରଳା ମହାଭାରତରେ ମଧ୍ୟ ଏହି ଭଳି ବର୍ଣ୍ଣନା ଅଛି କୃଷ୍ଣଙ୍କୁ ଡାକି ଆଣିବାକୁ ରାଧା ପଠାଇଥିବା ବୃଦ୍ଧା ଦୂତୀର ବର୍ଣ୍ଣନାରେ :

ପାଚିଲା କେଶ ତାର ଅତି ଗଳିତ ଖଳିତ ପ୍ରାୟେ
ପରପଞ୍ଚ ଦିଶଇ ସେ କେନ୍ଦୁ କାଠ ପ୍ରାୟେ ।

ଦୀନକୃଷ୍ଣ ଦାସଙ୍କ **ନାବକେଳି**ରେ ବୃଦ୍ଧ କେଉଟରୂପୀ କୃଷ୍ଣଙ୍କ ବର୍ଣ୍ଣନା :

ବେନି ନୟନରୁ ପେଚଡ଼ା ବହେ, କଳା ଦେହ ତାର ବିସ୍ତର ମୋଟା, ଗୋଦଡ଼ ହୋଇଛି ଡାହାଣ ଗୋଡ଼, ଇତ୍ୟାଦି ।

ବ୍ରଜନାଥ ବଡ଼ଜେନାଙ୍କ ସମୟକୁ(ଅଷ୍ଟାଦଶ ଶତାବ୍ଦୀ) ମଧ୍ୟ ଏହି ରୀତି ଚଳି ଆସିଥିଲା । ତାଙ୍କର **ଚତୁର ବିନୋଦ**ର ଗୋଟିଏ ଭାଗ ହେଉଛି ହାସ ବିନୋଦ ଏବଂ ତାର ଗୋଟିଏ ଅଂଶ ଅତିହାସ ବିନୋଦ । ତାଙ୍କ ବର୍ଣ୍ଣନାରେ 'ଅତିହାସ ବିନୋଦ ଏ କଥାର ନାମ, ହସି ହସି ଅନ୍ତ ଛିଡ଼ଇ ପ୍ରାଣୀ ଯାଏ ଝାମ' । କିନ୍ତୁ ସେଥିରେ ମଧ୍ୟ ସେହି ଆଗ ଭଳି ଆଙ୍ଗିକ ବିକୃତି, ବୃଦ୍ଧାବସ୍ଥା, କୁରୂପତା, ବିକଳାଙ୍ଗକୁ ନେଇ ହସ ତିଆରି କରିବାର ଚେଷ୍ଟା, ଯେପରିକି ରାଣୀଙ୍କର ବର୍ଣ୍ଣନା: ତାଙ୍କର ତ

ଲମ୍ୱ ଲମ୍ୱ କୁଚ, ଭାଲପଟ ଉଚ୍ଚ, ଆଗକୁ ବାହାରିଥାଏ ଅନ୍ତଲ ପେଟ ଗୋଟି, ଇତ୍ୟାଦି ।

ଉପର ଉଦାହରଣମାନଙ୍କରେ ତଥାକଥିତ ହାସ୍ୟରସର ପ୍ରଚେଷ୍ଟା ଅରୁଚିକର, ଘୃଣା ବ୍ୟଂଜକ, ଅମାର୍ଜିତ, ଜୁଗୁପ୍‌ସା ସୃଷ୍ଟିକାରୀ ଓ ସଭ୍ୟ ସମାଜରେ ଅଗ୍ରାହ୍ୟ । ଏ ସବୁ ମଧ୍ୟ ଅଶ୍ଳୀଳତାର ଅନ୍ତର୍ଭୁକ୍ତ ଏବଂ ଏଥିରେ ଯଦି ରସ ଥାଏ ତା ହେଉଛି ବୀଭତ୍ସ, କଦାପି ହାସ୍ୟ ନୁହେଁ ।

ଗୋପୀନାଥ ନନ୍ଦ ସାରଳା ମହାଭାରତରେ ହାସ୍ୟରସକୁ 'ଅଶ୍ଳୀଳତାଶ୍ରୟୀ ହାସ୍ୟ' ଆଖ୍ୟା ଦେଇଛନ୍ତି । ଆମ ସମୟର ଲେଖକ ଫତୁରାନନ୍ଦ ମଧ୍ୟ ତାଙ୍କର 'ନିଲଠା କବିର 'କ' ଗୀତରେ ଏହି ଭଳି ନାରୀ ଶରୀରର ଯେଉଁ ନିମ୍ନ ବର୍ଣ୍ଣନା କରିଛନ୍ତି ତାହା ଅଶ୍ଳୀଳତା ଯୋଗୁ ଏଠାରେ ପ୍ରକାଶଯୋଗ୍ୟ ନୁହେଁ ।

ମଧ୍ୟଯୁଗୀୟ ଓଡ଼ିଆ କବିତାରେ ଆଉ ଏକ ପ୍ରକାରର ହାସ୍ୟରସ ଲେଖାହେଲା, ତା ହେଉଛି ବାକ୍ ଓ ଶବ୍ଦ ଚାତୁରୀ, ଯଥା ଶ୍ଳେଷ, ଚିତ୍ରକାବ୍ୟ, ଲୋମବିଲୋମ ଇତ୍ୟାଦି ଯାହା ଏହି ଆଲୋଚନାରେ ଚର୍ଚ୍ଚା କରାଯାଉ ନାହିଁ ।

ଉଚ୍ଚ ବା ଗମ୍ଭୀର ସାହିତ୍ୟରେ ନିରୋଳା ହାସ୍ୟରସ ପ୍ରଥମ ପ୍ରୟୋଗ କରିବାର ଶ୍ରେୟ ଯିବ ଫକୀରମୋହନ ସେନାପତିଙ୍କୁ । ତାଙ୍କର **ଛମାଣ ଆଠଗୁଣ୍ଠ** ଆରମ୍ଭରେ ରାମଚନ୍ଦ୍ର ମଙ୍ଗରାଜର ନକଲି ଧାର୍ମିକତାରୁ ଆରମ୍ଭ ହୋଇ ବିଭିନ୍ନ ପ୍ରକାରର ବାକ୍ ଓ ଶବ୍ଦ ଚାତୁରୀ ଦେଇ ଉପନ୍ୟାସର ଶେଷ ପର୍ଯ୍ୟନ୍ତ ଆମେ ହାସ୍ୟରସର ଏକ ପ୍ରଚ୍ଛନ୍ନ ଅନ୍ତର୍ଧାରା ଦେଖିବାକୁ ପାଉ । ପରବର୍ତ୍ତୀ ସମୟରେ କିନ୍ତୁ ଅତି ଅଳ୍ପ ଲେଖକ ଏ ଭଳି ଶୈଳୀ ଅନୁସରଣ କରିଛନ୍ତି ।

ଓଡ଼ିଆ ସାହିତ୍ୟରେ ହାସ୍ୟରସକୁ ପ୍ରାଧାନ୍ୟ ଦେଇ ଲେଖିବାର ପ୍ରେରଣା ଯୋଗାଇଥିଲା ୧୯୩୬ରେ ନିତ୍ୟାନନ୍ଦ ମହାପାତ୍ରଙ୍କ ସଂପାଦନାରେ ପ୍ରକାଶିତ **ଡଗର** ପତ୍ରିକା । ଏହାର ପ୍ରଥମ ସଂଖ୍ୟାର ସଂପାଦକୀୟରେ କୁହାଯାଇଥିଲା, "ଡଗରର ଉଦ୍ଦେଶ୍ୟ ରସ ସୃଷ୍ଟି । ପ୍ରତ୍ୟେକ ବିଷୟକୁ ଲଘୁ ଦୃଷ୍ଟିରେ ଦେଖି ଦଳଗତ କିମ୍ବା ବ୍ୟକ୍ତିଗତ ଦ୍ୱେଷ ରହିତ ବିଦ୍ରୂପରେ ଆନନ୍ଦ ସଂଚାର କରିବା ତାର ଉଦ୍ଦେଶ୍ୟ" । ଏହି ଉଦ୍ଦେଶ୍ୟରେ ଡଗର ନିଶ୍ଚୟ ସଫଳ ହୋଇଥିଲା ଏବଂ ଏହାର ଅଗ୍ରଣୀ ଲେଖକ ଲକ୍ଷ୍ମୀକାନ୍ତ ମହାପାତ୍ର ଓ ଫତୁରାନନ୍ଦଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଅନେକ ହାସ୍ୟରସ ଲେଖକ ବାହାରିଥିଲେ । ଏବଂ ଏହି ସମୟରେ ଓଡ଼ିଆ ସାହିତ୍ୟରେ

ପ୍ରକୃତ ହାସ୍ୟ ସାହିତ୍ୟର ଆଧୁନିକ ଯୁଗ ଆରମ୍ଭ ହୋଇଥିଲା । ପରବର୍ତ୍ତୀ ସମୟରେ କ୍ଷଣଜୀବୀ **କୁଙ୍କୁମ** ପତ୍ରିକା ମଧ୍ୟ ଏଥିରେ ସକ୍ରିୟ ସହଯୋଗ କରିଥିଲା । ଦୁଃଖର ବିଷୟ ଯେ ପତ୍ରିକା ବନ୍ଦ ହୋଇଯିବା ପରେ ଏ ଧାରାର ଶେଷ ହେଲା ।

ତା ପରେ ଓଡ଼ିଆ ସାହିତ୍ୟରେ କିଛି ଲେଖକ କେବଳ ହାସ୍ୟରସର ଲେଖକ ଭାବରେ ଗଣା ହେଲେ ଏବଂ ତଥାକଥିତ ଗମ୍ଭୀର ଭାବଧାରାର ଲେଖକମାନେ ନିଜକୁ ହାସ୍ୟରସରୁ ଯେତେ ସମ୍ଭବ ଦୂରରେ ରଖିଲେ । ଏ ଭଳି ଗୋଟିଏ ଧାରଣା ସୃଷ୍ଟି ହେଲା ଯେ ହାସ୍ୟରସ କେବଳ ହସିବା, ଥଟ୍ଟା ତାମସା, ସୁଆଙ୍ଗ, ଉପହାସ, କୌତୁକ, ମଜା କଥା, ଶସ୍ତା କବିତା । ସେଥିପାଇଁ ଏହି ରସ ଆମର ଅଧିକାଂଶ ଲେଖକଙ୍କୁ ଆକର୍ଷିତ କରିପାରିଲା ନାହିଁ ।

ହସାଇବା ବ୍ୟତୀତ ହାସ୍ୟ ସାହିତ୍ୟର ଏକ ସକ୍ରିୟ, ଶକ୍ତିଶାଳୀ ଓ ପ୍ରଭାବଶାଳୀ ବ୍ୟବହାର ମଧ୍ୟ ଅଛି । ତା ହେଲା କ୍ଷମତାସୀନ ଓ ପ୍ରତାପଶାଳୀ ଲୋକଙ୍କୁ ସମାଲୋଚନା କରିବା । ହାସ୍ୟରସ ଆଳରେ ଏ ଭଳି ପ୍ରତିବାଦ କରାଯାଇପାରେ ଯାହା ସିଧାସଳଖ ଭାବେ କରିବା ସମ୍ଭବ ନୁହେଁ । ଏହାକୁ ପ୍ରତିରୋଧ କରିବା ପାଇଁ ଏକଛତ୍ର ଶାସନରେ ହସ ଉପରେ ପ୍ରତିବନ୍ଧ ଲଗାଯାଇଥାଏ । ରବୀନ୍ଦ୍ର ନାଥ ଠାକୁରଙ୍କ ଗଳ୍ପ 'ବିଦୂଷକ'ରେ ଖେଳୁଥିବା ଛୋଟ ପିଲାମାନେ ଖେଳରେ ଦେଖାଇଥିଲେ ଯେ କର୍ଣ୍ଣାଟ ରାଜା କାଞ୍ଚିକୁ ହରାଇ ଦେଇଛନ୍ତି, ସେଥିପାଇଁ କାଞ୍ଚି ରାଜା ପିଲାଙ୍କୁ ଦଣ୍ଡ ଦେଇଥିଲେ । ଏ କଥା ଦେଖି ରାଜାଙ୍କ ବିଦୂଷକ ଦରବାରରୁ ମେଲାଣି ମାଗିଲେ, କାରଣ ସେଠାରେ ରହିଲେ ସେ ହସିବା ଭୁଲିଯିବେ ।

ହିଟଲରଙ୍କ ସମୟରେ ଜର୍ମାନୀରେ ସ୍ପେଶିଆଲ୍ ଜୋକ୍ କୋର୍ଟ ବସାଯାଇଥିଲା ଯେଉଁଥିରେ ଇନ୍‌ଆପ୍ରୋପ୍ରିଏଟ୍ ହ୍ୟୁମର ବା ଅସଙ୍ଗତ ପରିହାସ- ସିଧାସଳଖ କହିଲେ ନାଜିଙ୍କୁ ଥଟ୍ଟା କରିବା ଭଳି କଥା- ଦଣ୍ଡନୀୟ ଥିଲା । ସେ ସମୟରେ କୁକୁରକୁ ଆଡଲ୍‌ଫ, ଯାହା ହିଟଲରଙ୍କ ପ୍ରଥମ ନାଁ ଥିଲା, ବୋଲି ନାଁ ଦେବା ଅପରାଧ ଥିଲା ।

ଏ ଭଳି ତାନାଶାହୀ ଶାସନ ବିରୁଦ୍ଧରେ ସିଧା ପ୍ରତିବାଦ ସମ୍ଭବ ନ ଥିବାରୁ ହାସ୍ୟ ବ୍ୟଙ୍ଗ ଆଡୁଆଳରେ ପ୍ରତିବାଦ କରୁଥିଲେ ହାସ୍ୟ ସ୍ରଷ୍ଟାମାନେ । ହାସ୍ୟରସ ପ୍ରତିବାଦର ଏକ ପଦ୍ଧତି ଭାବରେ ପ୍ରୟୋଗ କରାହେଉଥିଲା । ଆମର ଲୋକକଥାରେ ତେନାଲି ରାମ, ବୀରବଲ ପ୍ରମୁଖ ହସ କଥା ମାଧ୍ୟମରେ ରାଜା, ସମ୍ରାଟ ଓ ଦେବଦେବୀଙ୍କୁ ସମାଲୋଚନା କରୁଥିଲେ । ଆମର ଯଦୁମଣିଙ୍କ ବିଷୟରେ କଥା ଅଛି ଯେ ଥରେ

ରଣପୁର ରାଜା ଗୋଟିଏ ଦେବମୂର୍ତ୍ତିକୁ ସମ୍ମାନ ଦେଇ ନ ଥିବାରୁ ସେ ତାଙ୍କୁ କହିଥିଲେ,

ଅନ୍ଧ ଦେଶକୁ ଗଲି ଦର୍ପଣ ବିକି
କନ୍ଧ ହାତରେ ଦେଲି ଗୋଦାନ ଟେକି
ଢଡ଼ା ମଧୁରେ କଲି ଖଡ଼ା ରନ୍ଧନ
କାମୁଡ଼ା ଘୋଡ଼ା ମୁଖେ ଦେଲି ଚୁମ୍ବନ
ହେ ରାଜା କି କଲ
ବିଷ୍ଣୁ ପ୍ରତିମାକୁ ତଳେ ଥୋଇଲ ।

ସ୍ୱାଧୀନତା ଆନ୍ଦୋଳନ ବେଳେ ଇଂରେଜ ବିରୋଧୀ ଏବଂ ଗାନ୍ଧୀ ପ୍ରଶଂସାର ଲେଖା ବାଜ୍ୟାପ୍ତ ହେଉଥିବା ବେଳେ ନିତ୍ୟାନନ୍ଦ ମହାପାତ୍ରଙ୍କର 'ଗାନ୍ଧୀ ବୁଢ଼ା' ପୁସ୍ତିକା ଏଥିରୁ ବର୍ତ୍ତି ଯାଇଥିଲା କାରଣ ଏହା ହସ ମଜା ଢଙ୍ଗରେ ଲେଖା ଯାଇଥିଲା:

ଗାନ୍ଧୀ କିସ ନ କଲା
ଯୁଗ ତ ଲେଉଟି ଗଲା ରେ
ସାପ ଲାଞ୍ଜ ଧରି ବେଙ୍ଗ ବୁଲାଉଛି
ସାପ ବିଷ ଓକାଳିଲା ରେ ।
ଦଶା ଦିଆ ଭୁଆ ବିଲେଇ
ବସିଥିଲା ନିଶ ଫୁଲେଇ
ମୂଷା ଆଗେ ଶହେ ସଲାମ ବଜାଇ
ଲୁଚି ଲୁଚି ପଳାଇଲା ରେ ।

ଏ କଥା ନୁହେଁ ଯେ ଓଡ଼ିଆ ସାହିତ୍ୟରେ ହାସ୍ୟ ରଚନା ଲେଖାଯାଉ ନାହିଁ । କିନ୍ତୁ ଏ ସବୁ ଲେଖାକୁ ସାହିତ୍ୟର ମୂଳ ସ୍ରୋତରୁ ବାହାରେ ରଖାଯାଉଛି । ବ୍ୟଙ୍ଗ କବିତାର ଲୋକପ୍ରିୟତା ହାସ୍ୟକବି ସମ୍ମିଳନୀରେ ସୀମିତ । ଏହାର କବିମାନେ ବିଭିନ୍ନ ଛଦ୍ମନାମ ଉହାଡ଼ରେ ରହି ଏ କବିତା ଲେଖନ୍ତି । ଏ ଭଳି କୌଣସି ନିୟମ ନାହିଁ ଯେ ପ୍ରତିଷ୍ଠିତ କବି, ଗାଳ୍ପିକ, ଔପନ୍ୟାସିକ ବା ନାଟ୍ୟକାର ହାସ୍ୟରସାତ୍ମକ ଲେଖା ଲେଖିବ ନାହିଁ ।  ରବୀନ୍ଦ୍ରନାଥ ଠାକୁର ବ୍ୟଙ୍ଗ କବିତାର ବହି 'ଖାପଛଡ଼ା' ଲେଖିଛନ୍ତି । ବର୍ଟରାଣ୍ଡ ରସେଲ ଓ ଇଲିଅଟ୍‌ଙ୍କ ଭଳି ନୋବେଲ

ବିଜେତା ମଜାଳିଆ ଲିମେରିକ ଲେଖିଛନ୍ତି । ଆଶା କରାଯାଉ ଓଡ଼ିଆ ସାହିତ୍ୟିକମାନେ ମଧ ଏ ଆଦର୍ଶ ଗ୍ରହଣ କରିବେ । ଓଡ଼ିଶାରେ ଓ ଓଡ଼ିଆ ସାହିତ୍ୟରେ ହସିବା ବିରଳ ନହେଉ ।

ଗୌତମ ବୁଦ୍ଧଙ୍କର ପ୍ରଶ୍ନ ଥିଲା, ବାର୍ଦ୍ଧକ୍ୟ ରୋଗ ଓ ମୃତ୍ୟୁ ବିଷୟରେ ଜାଣିବାପରେ ଜଣେ ହସିବ କିପରି ? ଏହାର ଓଲଟା ପ୍ରଶ୍ନ କରାଯାଇପାରେ, ନ ହସିଲେ ଜଣେ ବାର୍ଦ୍ଧକ୍ୟ ରୋଗ ଓ ମୃତ୍ୟୁକୁ ସହିବ କିପରି ?

*ମେ ୨୦୧୬*

# ସାହିତ୍ୟରେ ଭକ୍ତିର ମରୁଭୂମି

"ଓଡ଼ିଆ ଲିଖିତ ସାହିତ୍ୟରେ ସମାଲୋଚନାମୂଳକ ଲେଖା ପ୍ରାୟ ନାହିଁ କହିଲେ ହୁଏ । ଯାହା ବା କିଛି ସେଥିରେ ରନ୍ଧ୍ରେ ରନ୍ଧ୍ରେ ଭକ୍ତିର ପ୍ରଭାବ ଓ ଭକ୍ତି ସାହିତ୍ୟର ମୋହ, ପୂଣ । ଭକ୍ତିରେ ସ୍ୱାଧୀନ ଚିନ୍ତା ଓ ନିର୍ବିକଳ୍ପ ଆଲୋଚନା ଫୁଟିବାର ନୁହେଁ । ସେଥିରେ ପୁଣି ଭକ୍ତକୁ ଭକ୍ତି କରି ତାଙ୍କ ଲେଖା ବା କଥାକୁ ପ୍ରାମାଣ୍ୟ ବୋଲି ଧରି ସାହିତ୍ୟ ଲେଖି ବସିଲେ ଯେ କୌଣସି ଜାତୀୟ ସାହିତ୍ୟର ଧାରା ଏଇ ମରୁଭୂମିରେ ଭ୍ରଷ୍ଟ ହୋଇ ଲୋପ ପାଇବାର କଥା ।"

ପଣ୍ଡିତ ନୀଳକଣ୍ଠ ଦାସ, ଓଡ଼ିଆ ସାହିତ୍ୟର କ୍ରମ ପରିଣାମ( ୧୯୫୩)

ଧର୍ମ ସହିତ ସାହିତ୍ୟର ସଂପର୍କ ଅତି ପ୍ରାଚୀନ । ବେଦର ସଂହିତାମାନ ପୂଜାର୍ଚ୍ଚନା କରିବାର ଗୀତ ଥିଲା । ଇଉରୋପରେ କବିତା ଆରମ୍ଭ ହୋଇଥିଲା ଦେବଦେବୀଙ୍କ ଉଦ୍ଦେଶ୍ୟରେ ଲେଖା ସ୍ତୋତ୍ରରୁ । ଆମର ପ୍ରାଚୀନତମ ଓଡ଼ିଆ କୁହାଯାଉଥିବା ବୌଦ୍ଧ ଗାନ ଓ ଦୋହାର ମୂଳ ଥିଲା ସହଜିଆ ବୌଦ୍ଧଧର୍ମର ନୀତି ଓ ସିଦ୍ଧାନ୍ତ । ଷଷ୍ଠ ଓ ସପ୍ତଦଶ ଶତାବ୍ଦୀ ମଧ୍ୟରେ ସାରା ଭାରତରେ ଭକ୍ତି ରସାଶ୍ରିତ କବିତାର ପ୍ରାଧାନ୍ୟ ଥିଲା ।

ଯୋଗର ଯେଉଁ ଚାରିଟି ମାର୍ଗ ଅଛି- କର୍ମ, ଭକ୍ତି, ରାଜ ଓ ଜ୍ଞାନ- ସେଥିରୁ ବୋଧହୁଏ ଭକ୍ତି ହିଁ ସବୁଠାରୁ ସହଜସାଧ(ବା ଅନ୍ୟ ମତରେ କଷ୍ଟସାଧ), କାରଣ ଏଥିରେ ଈଶ୍ୱରଙ୍କୁ ସଂପୂର୍ଣ୍ଣ ରୂପେ ଭଲ ପାଇବା ହିଁ ସବୁକିଛି । ଓଡ଼ିଆ ସାହିତ୍ୟର ସବୁଠାରୁ ପ୍ରାଚୀନ ଲେଖାରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ ଏହି ଈଶ୍ୱରଙ୍କ ଏକାତ୍ମ ଭକ୍ତିମୂଳକ ଲେଖାର ପ୍ରାଦୁର୍ଭାବ ରହିଆସିଛି । ସାରଳା ଦାସ ଭକ୍ତିକଥାକୁ ପ୍ରାଧାନ୍ୟ ଦେଇ ଘୋଷଣା କରିଥିଲେ ;

ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ
ଦ୍ୱିତୀୟ ଜନ୍ମରେ ମୁହିଁ ମହାକାଳ ଧ୍ୱଂସ ।

ତୃତୀୟ ଜନ୍ମରେ ମୁଁ ସାରଳା ଦାସ କବି
ଆର ଜନ୍ମେ ମୁହିଁ ମାର୍ତ୍ତ ମଣ୍ଡଳେ ଜନ୍ମିବି ।
ପ୍ରତି ଜନ୍ମେ ପନ୍ଦର ଲକ୍ଷ କଥା ମୁଁ ଭାବିବି
ଚାରି ଜନ୍ମେ ଷାଠିଏ ଲକ୍ଷ କଥା ମୁଁ କହିବି ।
ଭକ୍ତିକଥା କହିସାରି ଏ ମର୍ତ ମଣ୍ଡଳ
ତେବେ ଯାଇ ହୋଇବି ମୁଁ ଶିବ ଦ୍ୱାରପାଳ ।(ଆଦି ପର୍ବ)

ଆମ ସାହିତ୍ୟର ଆରମ୍ଭ ସମୟରୁ ଭକ୍ତିର କଥା କହିବା ହିଁ ଆମର କବିମାନଙ୍କର ଏକମାତ୍ର ଲକ୍ଷ୍ୟ ଓ ବିଷୟବସ୍ତୁ ଥିଲା । ଆମର ସମାଜ ମଧ ସେତେବେଳେ ଭକ୍ତି ଭାବରେ ଆପ୍ଲୁତ ଥିଲା ଓ ଓଡ଼ିଶା ଥିଲା ପୂଜାର୍ଚ୍ଚନାର ଏକ ମନ୍ଦିରମାଳିନୀ ଦେଶ ।ବିଶେଷରେ ଚୈତନ୍ୟଙ୍କ ଓଡ଼ିଶା ଆଗମନ ଓ ପ୍ରତାପରୁଦ୍ର ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିବା ପରେ ଓଡ଼ିଆମାନେ ଭକ୍ତି ଭାବରେ ବା ଭକ୍ତି ରସରେ ସିକ୍ତ ଓ ସଂକ୍ରମିତ ହୋଇଗଲେ । କେତେକ ଐତିହାସିକଙ୍କ ମତରେ ଏହା ଫଳରେ ଓଡ଼ିଶାର ସାମରିକ ଶକ୍ତି ମଧ ହ୍ରାସ ପାଇଲା । ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ ବୈଷ୍ଣବମାନେ ଓଡ଼ିଶା ଓ ବଙ୍ଗଳାକୁ ମାଇଚିଆ କରିଦେଲେ ଏବଂ ଓଡ଼ିଶା କାପୁରୁଷଙ୍କ ଦେଶ ହୋଇଗଲା ଓ ବଙ୍ଗଳା ସମସ୍ତ ପୌରୁଷ ହରାଇଲା ।

ଆମର ମଧ୍ୟଯୁଗୀୟ କିଛି କବି ଭକ୍ତିରୁ ବାହାରି କାଳ୍ପନିକ ରୋମାନୀ କାବ୍ୟ ଲେଖିଲେ ଯାହା ଆମ ସାହିତ୍ୟରେ ଏକ ବୈପ୍ଲବିକ ନୂଆ ପ୍ରୟୋଗ ଥିଲା । କବି ସମ୍ରାଟ ଉପେନ୍ଦ୍ର ଭଂଜ ଏହାର ଶ୍ରେଷ୍ଠ ଉଦାହରଣ । ତା ପରେ ଆସିଲା ବଙ୍ଗଳା ଓ ଇଂରେଜୀ ପ୍ରଭାବିତ ଆଧୁନିକ ଯୁଗ ଓ ସମୟ କ୍ରମେ ରବୀନ୍ଦ୍ରନାଥ, ମାର୍କସ୍ ଓ ଇଲିଅଟ୍‌ଙ୍କ ଦ୍ୱାରା ପ୍ରେରିତ ସାହିତ୍ୟ । ଗତ ଶତାବ୍ଦୀର ଷଷ୍ଠ ଦଶକ ବେଳକୁ ହଠାତ୍ ଓଡ଼ିଆ ସାହିତ୍ୟରେ ଆକସ୍ମିକ ଭାବେ ଭକ୍ତିର ପୁନରାବିର୍ଭାବ ହେଲା । ଏ ବିଷୟରେ ଅନେକ ଦିନ ତଳେ ଜୟନ୍ତ ମହାପାତ୍ର ଦେଇଥିବା ମନ୍ତବ୍ୟ ପ୍ରାସଙ୍ଗିକ :

''ଗତ ପଚାଶ ବର୍ଷ ଧରି ସାଂପ୍ରତିକ ଓଡ଼ିଆ କବିତା ଏ ଭଳି ଲେଖକଙ୍କ ଦ୍ୱାରା କବଳିତ ହୋଇଛି ଯେଉଁମାନେ ସେମାନଙ୍କର ନିଜର ବଞ୍ଚିଥିବା ପୃଥିବୀକୁ କବିତାର ଅଂଶ କରିବାକୁ ଆବଶ୍ୟକ ମନେ କରିନାହାନ୍ତି । ଏହି ଅତି ପ୍ରଶଂସିତ ତଥାକଥିତ ସଫଳ କବିତା ସାଧାରଣ ଲୋକଙ୍କ ପାଇଁ ଜରୁରୀ ସାମାଜିକ ଓ ରାଜନୈତିକ ପ୍ରସଙ୍ଗକୁ ସଂପୂର୍ଣ୍ଣ ଭାବେ ଅଣଦେଖା କରିଦେଇଛି । ସେ କବିତା ପଳାୟନର

କବିତା ଯାହା ଶହେ ବର୍ଷ ତଳେ କବିମାନେ ଯେଉଁ ପୁରୁଣା ମିଥ୍‌କୁ ନେଇ ଲେଖୁଥିଲେ ସେହି ବିଷୟକୁ ନେଇ ।''( ଦ ବୁକ୍ ରିଭିଉ, ଡିସେମ୍ବର ୨୦୦୦)

ଏହି ସମୟରେ ଆମ ସାହିତ୍ୟରେ ଧାର୍ମିକ ଓ ପୌରାଣିକ ଚରିତ୍ରମାନେ ଆବିର୍ଭୂତ ହେଲେ, ଯଥା, ରାଧା କୃଷ୍ଣ ଦ୍ରୌପଦୀ ଶବରୀ ଅକ୍ରୂର ପିଙ୍ଗଳା କୁବୁଜା ଜାରା ଯଯାତି କର୍ଣ୍ଣ ଶର୍ମିଷ୍ଠା ଇତ୍ୟାଦି ଇତ୍ୟାଦି । ଏହି ଚରିତ୍ରକୁ ନେଇ ଲେଖା ବହିମାନ ଅତ୍ୟନ୍ତ ଲୋକପ୍ରିୟ, ଯାହାର ପ୍ରମାଣ ଯାଜ୍ଞସେନୀ(୧୯୮୪)ର ଏପର୍ଯ୍ୟନ୍ତ ୮୫ଥର ପୁନର୍ମୁଦ୍ରଣ । ସେହିପରି ରମାକାନ୍ତ ରଥଙ୍କ ଶ୍ରୀରାଧା(୧୯୮୫) ବହିର ଆଠଟି ସଂସ୍କରଣ ହୋଇଛି ଯାହା ବୋଧହୁଏ ତାଙ୍କର ଅନ୍ୟ କୌଣସି କବିତା ସଂକଳନର ହୋଇନାହିଁ । ଏ ଦୁଇଟି ବହିର ଅନେକ ଭାଷାରେ ଅନୁବାଦ ମଧ୍ୟ ଏମାନଙ୍କର ଲୋକପ୍ରିୟତା ସୂଚାଏ ।

କେ. ସଚ୍ଚିଦାନନ୍ଦନ ତାଙ୍କର Readings : Indian Literature and Beyond (୨୦୦୯) ବହିରେ ଲେଖିଛନ୍ତି, ଓଡ଼ିଆ କବିତାରେ ଏବେ ମଧ୍ୟ ରାଧାକୃଷ୍ଣ କବି ରାଜୁତି କରୁଛନ୍ତି । ସଂଯୋଗବଶତଃ ଏହି ବହିରେ ସେ ଯେଉଁ ଦୁଇଟି ଓଡ଼ିଆ ବହିର ଇଂରେଜୀ ଅନୁବାଦର ସମୀକ୍ଷା କରିଛନ୍ତି ତାହା ହେଲା ସୀତାକାନ୍ତ ମହାପାତ୍ରଙ୍କର Death of Krishna ଏବଂ ରମାକାନ୍ତ ରଥଙ୍କ Sri Radha ।

ଏହା ଏକ ବିଡ଼ମ୍ବନାର ବିଷୟ ଯେ ସାହିତ୍ୟ ସମାଜମନସ୍କ ହେବା ଉଚିତ ବୋଲି ଚିତ୍କାର କରି କୁହାଯାଉଥିବା ବେଳେ ପାଠକମାନେ ଭକ୍ତିମୂଳକ ଲେଖାକୁ ଆଦରି ନେଉଛନ୍ତି । ଯୁକ୍ତି କରାଯାଇପାରେ ଯେ ଭକ୍ତି ସାହିତ୍ୟରେ ମଧ୍ୟ ଆଜି ଦିନ ପାଇଁ ପ୍ରାସଙ୍ଗିକତା ଅଛି, କିନ୍ତୁ ପାଠକମାନେ ଯେ କେବଳ ଭକ୍ତି ଭାବରେ ଉତ୍‌ପ୍ଲାବିତ ହୋଇ ଏ ବହିମାନଙ୍କୁ ନିଜର କରିଛନ୍ତି ଏଥିରେ ସନ୍ଦେହ ନାହିଁ । ଏହାର ପ୍ରମାଣ ନିକଟ ଅତୀତରେ ପ୍ରକାଶ ପାଇଥିବା ଜଗନ୍ନାଥଙ୍କ ସଂପର୍କରେ ଲିଖିତ ବହୁସଂଖ୍ୟକ ପୁସ୍ତକ ଓ ବର୍ଷସାରା ନିୟମିତ ବିକ୍ରି ହେଉଥିବା ଧର୍ମ ପୁସ୍ତକ ।

ସାହିତ୍ୟରେ ଭକ୍ତି କଥା କହିବା ବେଳେ ଦୁଇଟି କଥା ମନକୁ ଆସେ, ଭକ୍ତିମୂଳକ ଲେଖା ଓ ଲେଖକଙ୍କୁ ଭକ୍ତି । ଅନେକ ସମୟରେ ଭକ୍ତିମୂଳକ ଲେଖାର ଲେଖକ ନିଜେ ଭକ୍ତିର ଭାଜନ ହୋଇଯାଏ, ଯଥା, ଭାଗବତକାର ଜଗନ୍ନାଥ ଦାସ । ହୁଏତ ଖୋଜିଲେ ଏହାର ସାଂପ୍ରତିକ ଉଦାହରଣ ମଧ୍ୟ ମିଳିପାରିବ । ବୟସ ବଢ଼ିବା ସହିତ

ଲେଖକ ପ୍ରଥମେ ବୟସ୍କ କୁହାଯାଉଥିବା ବେଳେ କ୍ରମେ ବରିଷ୍ଠ ପର୍ଯ୍ୟାୟକୁ ଉତ୍ତୀର୍ଣ୍ଣ ହୋଇଯାଏ ଓ ଭକ୍ତି ଦାବୀ କରେ । ପରିତାପର ବିଷୟ ଯେ କନିଷ୍ଠ ଲେଖକମାନେ ମଧ୍ୟ ଏହି ଦାବୀକୁ ମାନି ନିଅନ୍ତି ଓ ତଥାକଥିତ ପୂଜ୍ୟପୂଜାରେ ଲାଗିଯାନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ଏହି ପ୍ରବୀଣ ବର୍ଷୀୟାନ(ଅନ୍ୟ ଭାବରେ ସ୍ଥବିର, ଜରଦ୍‌ଗବ) ଲେଖକଙ୍କ ପାଖରୁ ସ୍ୱୀକୃତି, ମୁଖବନ୍ଧ, ସାର୍ଟିଫିକେଟ ଓ ପ୍ରଶଂସାପତ୍ର ଲୋଡ଼ନ୍ତି । ଏହାର ଅନ୍ୟ ଏକ ବସ୍ତୁବାଦୀ କାରଣ ଥାଇପାରେ ଯେ ଏହି ବୟସ୍କମାନଙ୍କ ହାତରେ ପୁରସ୍କାର ଓ ସମ୍ମାନ ଦେବାର କ୍ଷମତା ଥାଏ ଓ ସେମାନେ ନୂଆ ଲେଖକଙ୍କୁ ଭାଙ୍ଗି ଗଢ଼ି ପାରନ୍ତି ।

ସାହିତ୍ୟରେ ଏ ଭଳି ଭକ୍ତିକୁ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଭାକ୍ତିକ ମିଥ୍ୟାର ଆଖ୍ୟା ଦେଇଛନ୍ତି । ଏହି ମିଥ୍ୟା ଦ୍ୱାରା କବିଙ୍କର କୃତିକୁ ଦୈବଶକ୍ତି ପ୍ରଣୋଦିତ ବୋଲି କୁହାଯାଇଥାଏ, ଯଥା, ସାରଳା ଦାସ ମୂର୍ଖ ଥିଲେ ଏବଂ ଦେବୀ ତାଙ୍କୁ କବିତା ଡାକି ଦେଉଥିଲେ । ଏହା ନିଶ୍ଚୟ ସାରଳା ଦାସଙ୍କ ପ୍ରତିଭାର ଅସମ୍ମାନ । ସେହିପରି କବିମାନଙ୍କର ମିଛି ଜୀବନୀ ତିଆରି କରି କୁହାଯାଏ ଯେ ସେମାନେ ଦେବଦେବୀଙ୍କର ବର ପାଇ ହିଁ ଲେଖି ପାରୁଥିଲେ । ଏହା ଦ୍ୱାରା କବିମାନଙ୍କୁ ସାଧୁ ସନ୍ଥ ମହାପୁରୁଷ ଆସନରେ ରଖି ସେମାନଙ୍କ ଲେଖାର ସମ୍ୟକ ଆଲୋଚନା କରା ହୁଏ ନାହିଁ । ପାଣିଗ୍ରାହୀଙ୍କ ଭାଷାରେ, ''କବିମାନଙ୍କୁ ଦେବତା କରିଦେଲେ ସେମାନଙ୍କ ସାହିତ୍ୟ ଚର୍ଚ୍ଚାର ରାସ୍ତା ବନ୍ଦ ହୋଇଯାଏ ।''

ଆମ ସାହିତ୍ୟରେ ବର୍ତ୍ତମାନ ମଧ୍ୟ କିଛି ସାହିତ୍ୟିକଙ୍କୁ ଦେବତୁଲ୍ୟ ଆସନରେ ରଖି ସେମାନଙ୍କୁ କେବଳ ପ୍ରଶଂସା କରାଯାଏ; ସେମାନଙ୍କର ଦୋଷ ଦୁର୍ବଳତା ଦେଖାଇବାକୁ କାହାରି ସାହସ ହୁଏ ନାହିଁ । ଏହି ପୂଜାର୍ଚ୍ଚନା ଫଳରେ ଲେଖକ ବି ଭାବି ନିଅନ୍ତି ଯେ ସେମାନେ ଈଶ୍ୱର ହୋଇଯାଇଛନ୍ତି ଏବଂ କେବଳ ନାମକୀର୍ତ୍ତନ ଓ ଷୋଡ଼ଶୋପଚାର ହିଁ ତାଙ୍କର ପ୍ରାପ୍ୟ । ସେମାନେ ନିଜର ରତ୍ନବେଦୀରୁ ଓହ୍ଲାଇବାକୁ ଚାହାନ୍ତି ନାହିଁ ଏବଂ ସାମାନ୍ୟ ସମାଲୋଚନା ତାଙ୍କ ପାଇଁ ଅସହ୍ୟ ହୁଏ । କାଳେ ତାଙ୍କର ଭକ୍ତଗଣ ତାଙ୍କୁ ଭୁଲିଯିବେ ଏବଂ ସେ ଦେବତ୍ୱରୁ ବିଚ୍ୟୁତ ହେବେ ସେଥିପାଇଁ ସେମାନେ ଦନ୍ତୁରା ହୋଇଯାଇଥିବା କଲମକୁ ବନ୍ଦ କରନ୍ତି ନାହିଁ ଏବଂ କୌଣସି ନା କୌଣସି ଭାବରେ ଖବରକାଗଜରେ ପୃଷ୍ଠା ମାଡ଼ି ବସନ୍ତି । ଏହି ଭଳି ପୂଜା ପାଇବା ସେହି ଲେଖକମାନଙ୍କ ପାଇଁ ମଧ୍ୟ ଅନେକ ସମୟରେ କ୍ଷତିକାରକ ହୁଏ ।

ନିକଟ ଅତୀତରେ ଆମ ସମୟର ପ୍ରଖ୍ୟାତ ଲେଖକ ମନୋଜ ଦାସଙ୍କ ବିଷୟରେ ତାଙ୍କର ବ୍ୟଙ୍ଗଚିତ୍ର ତଳେ ଏ ଭଳି ଲେଖା ଥିଲା :

ମନୋଜଙ୍କ ବାଣୀ ଶୁଣେ ଯେଉଁ ପ୍ରାଣୀ ମାନସକୁ ଏକ କରି
ଜ୍ଞାନ ବାରିଧିରେ ମନଟି ତାହାର ଖେଳୁଥାଏ ମୀନ ପରି
ଅଜ୍ଞାନ ଅନ୍ଧାର ଚିରି
ମାନବିକତାର ନିର୍ଝର ଝରଇ ହୃଦେ ବିହରନ୍ତି ହରି ।

(ସମ୍ବାଦ, ଏପ୍ରିଲ ୩୦,୨୦୧୩)

ଏଠାରେ ଲକ୍ଷଣୀୟ ଯେ ବହୁ ବିଭିନ୍ନ ବିଭାଗ ଓ ବିଷୟରେ ଲେଖିଥିବା ସତ୍ତ୍ୱେ ଏଥିରେ ତାଙ୍କୁ ଗୋଟିଏ ଧାର୍ମିକ ଖୋପରେ ଆବଦ୍ଧ କରିବାର ଚେଷ୍ଟା କରାଯାଇଛି, ଯେପରିକି ତାଙ୍କର ଲେଖା କେବଳ ପ୍ରବଚନ ଓ ନୀତିଶିକ୍ଷାର ଅମୃତ ବାଣୀ । ଏହା ତାଙ୍କର ବହୁମୁଖୀ ପ୍ରତିଭା ପ୍ରତି ଅପମାନ । ଠିକ୍ ସେହିଭଳି ପ୍ରତିଭା ରାୟଙ୍କୁ ଯାଜ୍ଞସେନୀର ଲେଖିକା ବା ରମାକାନ୍ତ ରଥଙ୍କୁ ଶ୍ରୀରାଧାର କବି ଭାବରେ ପରିଚିତ କରାଇବା ସେମାନଙ୍କୁ ଗୋଟିଏ ସୀମା ଭିତରେ ରୁଦ୍ଧ କରିଦେବା ।

କବି ଯେତେବେଳେ ତାର ପ୍ରଥମ ବହିଟି ଲେଖେ, ତା ଉପରେ କୌଣସି ଚାପ ନଥାଏ । କିନ୍ତୁ ବହିଟି ଆଲୋଚନା କଲାବେଳେ ସମାଲୋଚକ ଓ ସମୀକ୍ଷକ ତା'ର କବିତାରେ ମିଥ୍‌ର ପ୍ରୟୋଗ ବା ମୃତ୍ୟୁ ଚେତନା ବା ସମାଜମନସ୍କତାର ମୋହର ଲଗାଇ ତାଙ୍କୁ ଗୋଟିଏ ପାରା ଘରେ ରଖିଦିଅନ୍ତି । ତା ପରେ କବି ସେହି ପ୍ରଶଂସା ଓ ଆଭୂଷଣରେ ପ୍ରେରିତ ହୋଇ ସେଇ ଭଳି ଲେଖିବାରେ ଲାଗିଯାଏ ଓ ନିଜର ସରଳ ମୌଳିକତା ଓ ବୃହତ୍ତର ପରିଧିକୁ ହରାଏ । ସେ ଭୁଲିଯାଏ ଯେ ଆକାଶ ତଳେ କବିତାରେ ଲେଖିବା ପାଇଁ ଅଗଣିତ ବିଷୟ ଅଛି ଏବଂ ସେ ସମୀକ୍ଷକମାନେ ଖଞ୍ଜି ଦେଇଥିବା ସଂକୀର୍ଣ୍ଣ ବଳୟ ଭିତରୁ ନିଜର ଉପାଦାନ ଖୋଜେ । ସେ ଆଉ ସେଇ କୁଟିଳ ବୃତ୍ତ ଭିତରୁ ବାହାରି ପାରେ ନାହିଁ ଓ ଜୀବନ ସାରା ଗୋଟିଏ କବିତା ଲେଖୁଥାଏ ଭିନ୍ନ ଭିନ୍ନ ଭାବରେ ଜଣାଣର ଗୀତିକାର ଭଳି ।

ଔଷଧ ଭଳି କର୍ମଠ ମଣିଷର ମଧ୍ୟ ଉପଯୋଗିତାର ଶେଷ ତାରିଖ ଅଛି ଯାହା ପରେ ତାର ଆଉ କାର୍ଯ୍ୟକାରୀ ଗୁଣ ରହେ ନାହିଁ । ଔଷଧ ବୋତଲରେ ଥିବା ଏ ଭଳି ଚେତାବନୀକୁ ସମାଜିକ ସ୍ତରରେ ଉପେକ୍ଷା କରାଯାଏ । ରାଜନୀତିରେ ଏଭଳି ପ୍ରଥା ହେଲାଣି ଯେ ଜଣେ ନେତା ଅକର୍ମଣ୍ୟ ହୋଇଗଲେ ବା ନିର୍ବାଚନରେ

ହାରିଗଲେ ତାକୁ ଗୋଟିଏ ସହଜ, କର୍ମବିହୀନ କିନ୍ତୁ ସମ୍ମାନଜନକ(ଏବଂ ଅର୍ଥ ଉପାର୍ଜନକାରୀ) ଜାଗାକୁ ପଠାଇ ଦିଆଯାଏ, ଯଥା, ସରକାରୀ କମିଟିର ସଭାପତି, ରାଜ୍ୟପାଳ, କର୍ପୋରେସନ, ଚେୟାରମ୍ୟାନ ଇତ୍ୟାଦି । ସାହିତ୍ୟରେ ମଧ୍ୟ ବିଗତ ପ୍ରତିଭ ଲେଖକଙ୍କ ପାଇଁ ସେହିଭଳି କିଛି ସାହିତ୍ୟିକ ଅନୁଷ୍ଠାନ, ସମିତି, ସଂସଦ, ଚୟନ ପରିଷଦ ଇତ୍ୟାଦିର ସଭ୍ୟ ଓ ସଭାପତି ପଦ । ଏହି କୃତ୍ରିମ ଠେକର ସହାୟତାରେ ସେମାନେ ଜୀବନକୁ ଆଉ କିଛି ଦିନ ଘୋଷାରି ନିଅନ୍ତି ।

ସାହିତ୍ୟ କାହାରି ପୈତୃକ ସଂପତ୍ତି ନୁହେଁ ଏବଂ ଏଥିରେ ସମସ୍ତଙ୍କର ସମାନ ଅଧିକାର ଅଛି । ଏଠାରେ କେହି ଶାସକ-ଶାସିତ ବା ପୂଜ୍ୟ-ପୂଜକ ନୁହନ୍ତି । ଏଠାରେ ପ୍ରଶଂସା ଓ ସମାଲୋଚନା ସମାନ ମାତ୍ରାରେ ଅଛି ଯାହା ପାଇବା ସବୁ ଲେଖକଙ୍କର ଜନ୍ମଗତ ଦାବୀ ଓ ଦାୟିତ୍ୱ । ବରିଷ୍ଠ ଲେଖକ ଯେତେ ଶକ୍ତିଶାଳୀ ହୋଇଥାଉ ପଛେ ସେ କେବଳ ସମ୍ମାନର ଅଧିକାରୀ ହୋଇପାରେ ଭକ୍ତିର ନୁହେଁ । ସାହିତ୍ୟର ଦେଶ ଏକ ଗଣତନ୍ତ୍ର ଏବଂ ଏହାର ସଭାଗୃହରେ କନିଷ୍ଠ ବରିଷ୍ଠ ସମସ୍ତଙ୍କର ଆସନ ଏକା ମାପର ଓ ଗୋଟିଏ ସ୍ତରରେ ।

ସୁଖର ବିଷୟ ଯେ ବର୍ତ୍ତମାନ ପୀଢ଼ୀର ଲେଖକ ମନ୍ଦିର ବେଢ଼ାର ଚକ୍ରବ୍ୟୂହରୁ ବାହାରି ଆସୁଛନ୍ତି । ଅପେକ୍ଷା ରହିଲା କେତେବେଳେ ସେମାନେ ପୂଜା ବନ୍ଦ କରି ମୂର୍ତ୍ତି ଭାଙ୍ଗିବା ଆରମ୍ଭ କରିବେ । ସେତିକି ବେଳେ ହିଁ ଭକ୍ତିଯୁଗ ଶେଷ ହୋଇ ସାହିତ୍ୟର ମରୁଭୂମିରେ ସଂପୂର୍ଣ୍ଣ ନୂଆ ଧାରା ପ୍ରବାହିତ ହେବ ।

*ମେ ୨୦୧୬*

# ବହିର ଲାଞ୍ଚା

ବହି କହିଲେ ଆମେ ବର୍ତ୍ତମାନ ବୁଝୁ କାଗଜରେ ଛପା ହୋଇ ବନ୍ଧା ଯାଇଥିବା ଗୋଟିଏ ଜିନିଷକୁ । ଏହା ଅଳ୍ପ କିଛି ପୃଷ୍ଠାର ଛୋଟ ଆକାରର ଚଟି ବହି(ଇଂରାଜୀରେ ଚ୍ୟାପ୍ ବୁକ୍) କିମ୍ବା ଶହ ଶହ ପୃଷ୍ଠାର ବିରାଟ ଗ୍ରନ୍ଥ ହୋଇପାରେ । ୟୁନେସ୍କୋ ଠିକ କରିଥିବା ସଂଜ୍ଞା ଅନୁସାରେ ୪୮ରୁ କମ୍ ପୃଷ୍ଠାର ବନ୍ଧା ହୋଇଥିବା ଜିନିଷଟି ପୁସ୍ତକ ପଦବାଚ୍ୟ ନୁହେଁ ।

ବହିକୁ ବୁଝାଇବାକୁ ଓଡ଼ିଆରେ ଆଉ ଗୋଟିଏ ଶବ୍ଦ ହେଉଛି ପୋଥି । ଏ ଗୋଟିଏ ଅତି ପୁରୁଣା ଶବ୍ଦ । ଚର୍ଯ୍ୟାପଦରେ ଅଛି, ଆଗମ ପୋଥି ଇଷ୍ଟମାଳ । ଆମେମାନେ ବର୍ତ୍ତମାନ ପୋଥି କହିଲେ ବୁଝୁ ତାଳପତ୍ରରେ ଲେଖା ବହି, ଯାହା ତାଳପତ୍ର ଖେଦାରେ ଲେଖନୀରେ ଲେଖା ହୋଇ ଦି ପାଖରେ କାଠ ପଟାରେ ବନ୍ଧା ହୋଇଥାଏ । ଏବଂ ଯାହା ଓଡ଼ିଶାରେ ବିଂଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ପ୍ରଚଳିତ ଥିଲା ।

ଏଥିରୁ ଗୋଟିଏ ଧାରଣା ହୋଇପାରେ ଯେ ଏପରି ହାତଲେଖା ତାଳପତ୍ର ପୋଥିର ସଂଖ୍ୟା ଅତି ଅଳ୍ପ ହୋଇଥିବ । ବାସ୍ତବରେ କିନ୍ତୁ ସେତେବେଳେ ମଧ୍ୟ ଜଣାଶୁଣା କବିଙ୍କର ଲେଖା ନିଶ୍ଚିତ ଭାବେ ଓଡ଼ିଶାର ସବୁଆଡ଼େ ବହୁ ଆଗ୍ରହୀ ପାଠକଙ୍କ ପାଖରେ ପହଞ୍ଚି ଯାଉଥିଲା । ସେ ସମୟର କବିମାନେ ସେମାନଙ୍କ ପୂର୍ବସୂରୀ କବିମାନଙ୍କର ଲେଖା ବିଷୟରେ ଅବଗତ ଥିଲେ । ସାରଳା ଦାସ ତାଙ୍କ ସମୟ ପୂର୍ବରୁ ଲେଖା ହୋଇଥିବା କଳଶା ଚଉତିଶା କଥା ଉଲ୍ଲେଖ କରିଛନ୍ତି । ଅଭିମନ୍ୟୁ ସାମନ୍ତସିଂହାର ଲେଖିଛନ୍ତି, ଉପଇନ୍ଦ୍ର ପଦ ଅଭିମନ୍ୟୁ ମନୁ, କେବେ ହେଁ ପାଶୋର ନ ଯିବ ଦିନୁ ଦିନୁ । ଆମର ଭାଗବତ ହଜାର ହଜାର ସଂଖ୍ୟାରେ ନକଲ ହୋଇ ସାରା ଓଡ଼ିଶାରେ ଘରେ ଘରେ ପଢ଼ା ହେଉଥିଲା ଏହା ଯୋଗୁ ଆମ ଗାଁ

ଗହଳର ଝିଅମାନେ ମଧ୍ୟ ପଢ଼ିବା ଶିଖୁଥିଲେ ଏବଂ ଆମର ସ୍ତ୍ରୀ ଲୋକ ପଡ଼ୋଶୀ ବଙ୍ଗାଳୀ ସ୍ତ୍ରୀମାନଙ୍କ ଅପେକ୍ଷା ଅଧିକ ସାକ୍ଷର ଥିଲେ ।

ବହି ବା ପୋଥିରେ ବିଭିନ୍ନ ବିଷୟ ଉପରେ ଲେଖା ହୋଇଥାଏ, ଯଥା କବିତା ଗଳ୍ପ ପ୍ରବନ୍ଧ ଭଳି ସାହିତ୍ୟ ତଥା ବିଜ୍ଞାନ ଶାସ୍ତ୍ର ଇତ୍ୟାଦି । ଏହାହିଁ ବହିର ମୂଳ ଆଧେୟ, ଯେଉଁଥିପାଇଁ ପାଠକ ବହିଟି ପଢ଼ିଥାଏ । କିନ୍ତୁ ଏହା ସହିତ ବହିଟିରେ ଅନ୍ୟାନ୍ୟ ଅନେକ ଆନୁଷଙ୍ଗିକ ବିଷୟ ମଧ୍ୟ ସଂଲଗ୍ନ ଥାଏ, ଯଥା, ପ୍ରଚ୍ଛଦପଟ, ମୁଖପୃଷ୍ଠ, ଭୂମିକା, ପାଦଟୀକା ଇତ୍ୟାଦି ଇତ୍ୟାଦି । ଅନେକ ସମୟରେ ଆମେ ତାକୁ ଆଡେଇ ଦେଇ ମୂଳ ପାଠକୁ ଯାଇଥାଉ । କିନ୍ତୁ ବହିଟି ଗୋଟିଏ ସଂପୂର୍ଣ୍ଣ ଜିନିଷ ହୋଇଥିବାରୁ ସଜାଗ ଓ ସତର୍କ ପାଠକ ଏ ସବୁକୁ ମଧ୍ୟ ଯତ୍ନର ସହିତ ଦେଖେ ଓ ପଢ଼େ, କାରଣ ଏଗୁଡ଼ିକ ମଧ୍ୟ ବହିର ଅଙ୍ଗପ୍ରତ୍ୟଙ୍ଗ ।

ଆମେ ଯଦି ଆଜିର ଛପା ବହିରୁ ପଛକୁ ଫେରି ତାଳପତ୍ର ପୋଥି ପାଖକୁ ଯିବା, ଦେଖିବା ଯେ ସେଥିରେ ମଧ୍ୟ ମୂଳ ପାଠ ସହିତ ଅଲଗା ଜିନିଷ ରହୁଥିଲା । ତାଳପତ୍ର ଖେଦା ଉପରେ ଲିଖିତ ପୁସ୍ତକର ଉପରେ ତଳେ ରହୁଥିଲା କାଠର ଘୋଡ଼ଣୀ ବା ମଲାଟ, ଯାହା ଉପରେ ଅନେକ ସମୟରେ, ବିଶେଷରେ ଚିତ୍ର ସମ୍ବଳିତ ପୋଥିରେ, ଚିତ୍ରକାର(ବର୍ତ୍ତମାନର କଭର ଡିଜାଇନର)ଙ୍କ ତିଆରି ରଙ୍ଗୀନ ଡିଜାଇନ୍ ରହୁଥିଲା । ଚିତ୍ର ପୋଥିର ଆରମ୍ଭରେ ଗଣେଶଙ୍କର ଚିତ୍ର ରହୁଥିଲା । ପୋଥିର ପାଠ ଶେଷରେ ଲେଖନକାର ବିଭିନ୍ନ ତଥ୍ୟ ଦେଉଥିଲେ, ଯଥା, ପୋଥିଟି କାହା ବରାଦରେ ଲେଖା ହୋଇଥିଲା, କେଉଁ ଜାଗାରେ ବସି ସେ ପୋଥିଟିକୁ ନକଲ କରିଥିଲେ, ତାଙ୍କୁ ଏଥିପାଇଁ କେତେ ପାରିଶ୍ରମିକ ମିଳିଥିଲା, ଇତ୍ୟାଦି । ଗ୍ରନ୍ଥ ଶେଷରେ ଥିବା ଏହି କଲୋଫୋନ୍ ବା ପୁଷ୍ପିକାରୁ ଆମେ ସେ ସମୟର ଅନେକ କଥା ଜାଣିପାରୁ । ଆମ ଭୁବନେଶ୍ୱର ମିଉଜିୟମରେ ଥିବା ପୋଥିମାନଙ୍କରୁ ନିମ୍ନଲିଖିତ ରୋଚକ ବିବରଣୀମାନ ମିଳେ :

ବୈଷ୍ଣବ ଦାସଙ୍କ ବରାଦରେ କେଲୁପଡ଼ାର ଅପର୍ତ୍ତି ମହାନ୍ତି ୧୨୩୮ ସାଲ(୧୮୩୧ଖ୍ରୀ) ଶ୍ରାବଣ ଦ୍ୱିତୀୟା ଦିନ ପୋଥି ଲେଖା ଶେଷ କରି ବୈଷ୍ଣବଙ୍କୁ ଦେବାରେ ସେ ଖୁସି ହେଲେ । ଆଉ ଜଣେ ଲେଖନକାର ତଦରା ଗାଁର କେଳିକୃଷ୍ଣ ଦାସ ଶ୍ରୀ ଲକ୍ଷ୍ମୀନାରାୟଣ କାନୁନ୍‌ଗୋଙ୍କ ବାରଣ୍ଡାରେ ବସି ନବରତ୍ନ ଗୀତା ନକଲ କରି ପୋଥିଟିକୁ ତାଙ୍କ କରକମଳରେ ଅର୍ପଣ କଲେ ।

ମିଉଜିଅମରେ ଥିବା ଚାଳିଶ ହଜାର ପୋଥିରୁ ଅନ୍ତତଃ ଗୋଟିଏ ପୋଥି ଲେଖା ହୋଇଥିଲା ଜଣେ ସ୍ତ୍ରୀ ଲୋକ ଲକ୍ଷ୍ମୀପ୍ରିୟା ଜେମାଦେଈଙ୍କ ଦ୍ୱାରା । ୧୯୩୮ରେ ମଥୁରାମଙ୍ଗଳ କାବ୍ୟ ନକଲ କରିଥିଲେ ଖୋର୍ଦ୍ଧାର ଧନି ଖାଁଙ୍କ ପୁଅ ନସୀବ ଖାଁ । ୧୮୪୬ ମସିହାରେ ବ୍ରାହ୍ମଣ ବନମାଳୀ ଓ କରଣ ରାମକୃଷ୍ଣ କଟକ ଜେଲରେ ଥିବାବେଳେ କାଠଯୋଡ଼ି ନଈକୂଳକୁ କଏଦୀ କାମ କରିବାକୁ ଯାଉଥିଲେ । ସେତେବେଳେ ସେମାନେ ସାଙ୍ଗରେ ତାଳପତ୍ର ଖେଦା ନେଇ ଯାଉଥିଲେ ଏବଂ ମୁସଲମାନ ଗାର୍ଡ ନୁର ମହମ୍ମଦଙ୍କ ସଦୟ ଅନୁମତି କ୍ରମେ ବାଙ୍କିର ପିଣ୍ଡିକ କରଣଙ୍କ ପାଇଁ ଗୋଟିଏ ପୋଥି ଉତାରିଥିଲେ ।

ଏହି ଲେଖନକାରମାନେ ବିଶେଷ ଭାବେ ନକଲ ନବୀସ ଥିଲେ ଏବଂ ଗୋଟିଏ ପୋଥିର ଲେଖାକୁ ଅନ୍ୟ ପୋଥିକୁ ଉତାରୁଥିଲେ ମାତ୍ର । ତାଙ୍କୁ ଉତାରିବାରେ ଭୁଲଭଟକା ହୋଇ ଯାଇଥାଇ ପାରେ ସେଥିପାଇଁ ସେମାନେ ପୁଷ୍ପିକାରେ ପାଠକଙ୍କୁ ନିମ୍ନମତେ ସତର୍କ କରିଦେଉଥିଲେ :

> ଭୀମସ୍ୟାପି ରଣେ ଭଙ୍ଗୋ ମୁନିନାଞ୍ଚ ମତିଭ୍ରମ
> ଯଦି ଶୁଦ୍ଧମଶୁଦ୍ଧଂବା ମମ ଦୋଷ ନ ବିଦ୍ୟତେ ।
> ଶୁଦ୍ଧାଶୁଦ୍ଧ ନ ଜାନାମି ଆଦୃଶ୍ୟଂ ଲିଖିତ ମୟା
> ଶୁଦ୍ଧାଶୁଦ୍ଧ ଜନୈଃ କୃତ୍ୟମ ଲେଖକୋ ନୈବଦୋଷକଃ ।
> ଗ୍ରନ୍ଥକର୍ତ୍ତା ସ୍ୱୟଂ ବ୍ୟାସୋ ଲେଖକସ୍ତୁ ବିନାୟକାଃ
> ତୟୋର୍ବିଚଳିତା ବୁଦ୍ଧିର୍ମନୁଷ୍ୟାଣାଂ ଚ କା କଥା ।

ଏ ଭଳି ଭୁଲ ଭ୍ରାନ୍ତି ପାଇଁ କ୍ଷମା ପ୍ରାର୍ଥନା କରି ନେବା ପରେ ସେମାନେ କିପରି ପୋଥିଟିର ଯତ୍ନ ନେବାକୁ ହେବ ସେ କଥା କହିବାକୁ ଭୁଲୁ ନଥିଲେ ।

> ଜଳାଦ୍ରକ୍ଷ_ତୈଳାଦ୍ରକ୍ଷ ରକ୍ଷେ ମାଂ ଶ୍ଳଥ ବନ୍ଧନାତ୍
> ଆଖୁଭ୍ୟ ପରହସ୍ତେଭ୍ୟଃ ଏଶଃ ବଦତି ପୁସ୍ତକଂ ।
> ପୁସ୍ତକଂ ହରତେ ଯସ୍ତୁ କାଣୋ ଦୁଃଖୀ ଭବେନ୍ନରଃ
> ମୃତା ସ୍ୱର୍ଗଂ ନ ଗଚ୍ଛନ୍ତି ପିତରୋ ନରକଂ ବ୍ରଜେତ ।
> ପୁସ୍ତକ କଠିନୀ ବାମା ପରହସ୍ତଂ ଗତା ଗତାଃ
> ଯଦି ଦୈବାତ୍ ସମାୟତି ନଷ୍ଟଂ ଭ୍ରଷ୍ଟ ଚ ଖଣ୍ଡିତା ।

ବହି ନେଇ ନ ଫେରାଇବା ଲୋକଙ୍କ ପାଇଁ ଏ ଭଳି କଥାମାନ ଥିଲା : ସେ ଭଳି

ଲୋକ ଶ୍ରୀ ଶ୍ରୀ ହରିଙ୍କର କୋପଭାଜନ ହେବ । ତାର ଦୁଃଖ ପୂର୍ଣ୍ଣ ସହସ୍ର ପୁନର୍ଜନ୍ମ ହେବ । ତାର ପାପ ପିତୃ ଓ ମାତୃ ହନ୍ତାର ପାପ ସହିତ ସମାନ । ତାର ସାତପୁରୁଷ ବହିମାଲିକର ସାତ ପୁରୁଷଙ୍କ ଗୋଡି ଖଟିବେ । ତାକୁ କୁଷ୍ଠରୋଗ ହେବ । ସେ ଅନ୍ଧ ହୋଇଯିବ । ଇତ୍ୟାଦି ।

ଏଭଳି ସତର୍କ ବାଣୀ ବର୍ତ୍ତମାନର ଛପା ବହିରେ ଦେଲେ ମଧ୍ୟ ଉପଯୁକ୍ତ ଓ ଲାଭଦାୟକ ହେବ ।

ଏଥର ଆସିବା ଆଜିକାଲିର ଛପା ବହିକୁ । ବହିର ଆଗ ପଛ ଯେଉଁଠାରେ ଯାହା କିଛି ଥାଏ, ସବୁ ସେଇ ବହିର ଅନିବାର୍ଯ୍ୟ ଅଙ୍ଗ ହୋଇଯାଏ ଏବଂ ସେ ସବୁ ବିନା ବହିଟିକୁ ଆକଳନ କରିବା ସମ୍ଭବ ନୁହେଁ । Alice's Adventure in Wonderland (୧୯୬୫) ବହିର ପ୍ରଥମ ପରିଚ୍ଛେଦ ପୂର୍ବରୁ ଏକ ପ୍ରସ୍ତାବନା ଅଛି All in the golden afternoon, Full leisurely we glide ଇତ୍ୟାଦି ।

ଏହି କବିତାଟି ଲୁଇସ କାରଲ ଲେଖିଥିଲେ ଆଲିସ ଓ ତାର ଦୁଇ ଭଉଣୀଙ୍କୁ ଡଙ୍ଗାରେ ବୁଲାଇ ନେଇ ଯାଉଥିବା ବେଳେ କାହାଣୀ ଶୁଣାଇବା କଥା ମନେ ପକାଇ । (ବର୍ତ୍ତମାନ ଅବଶ୍ୟ ପାଣିପାଗବାଲା କହୁଛନ୍ତି ଯେ ସେ ଅପରାହ୍ଣଟି ଆଦୌ ସ୍ୱର୍ଣ୍ଣିମ ନଥିଲା, ବରଂ ଥିଲା ବର୍ଷଣ ମୁଖର) । ଏହି ଉପକ୍ରମଣିକା ପୂରା କାହାଣୀଟିକୁ ଏକ ସଂପୂର୍ଣ୍ଣ ରୂପ ଦେଇଛି ଏବଂ ଏହା ବିନା ବର୍ତ୍ତମାନ୍ ବହିଟି ପଢ଼ିବା ସମ୍ଭବ ନୁହେଁ । ଠିକ ସେହିପରି ଫକୀରମୋହନଙ୍କ ରେବତୀ ଗଳ୍ପର ଆରମ୍ଭରେ ଥିବା ଇଂରେଜୀ କବିତାର ଚାରିଧାଡ଼ିକୁ ଛାଡ଼ି ଦେଇ ଗଳ୍ପର ଆଲୋଚନା କରାଯାଇପାରେ ନା ।

ସାଧାରଣତଃ ବନ୍ଧେଇ ବହିର ଉପର ମଲାଟ ଓ ଡଷ୍ଟ ଜ୍ୟାକେଟରେ ଥାଏ ଚିତ୍ର ଓ ଲେଖକର ନାଁ; ମଲାଟ ଭିତର ଭାଗରେ ଥାଏ ବହି ବିଷୟରେ ଓ ଲେଖକଙ୍କ ଫଟୋ ସହିତ ତାଙ୍କ ବିଷୟରେ ବର୍ଣ୍ଣନା । ସାଧାରଣ ପାଠକ ମଲାଟ ଲେଖନ ଉପରେ ଆଖି ବୁଲାଇ ନେଇ ବହିର ଉଚ୍ଚ ମାନ ଓ ଲେଖକଙ୍କର ପ୍ରସିଦ୍ଧି ବିଷୟରେ ପ୍ରଭାବିତ ହୋଇଯାନ୍ତି । ଚତୁର ପାଠକ ଜାଣେ ଯେ ବହି ବିଷୟରେ ପ୍ରଶଂସାର ଲେଖାଟି ସଂପୂର୍ଣ୍ଣ କପୋଳକଳ୍ପିତ ଅତିଶୟୋକ୍ତି ଏବଂ ଲେଖକଙ୍କର ଫଟୋଟି ପଚିଶ ବର୍ଷ ପୁରୁଣା ଏବଂ ତାଙ୍କ ବିଷୟରେ କୁହାଯାଇଥିବା କୃତିତ୍ୱମାନ ଅତିମାତ୍ରାରେ ଅତିରଂଜିତ । ଏ ସବୁ ଲେଖାର ଗୋଟିଏ ସରସ ଦିଗ ହେଲା ଯେ ଆମର କିଛି ସମୀକ୍ଷକ କେବଳ ଏତିକି ପଢ଼ି ବହିଟି ବିଷୟରେ

ପୃଷ୍ଠା ପୃଷ୍ଠାର ଆଲୋଚନା ଲେଖିପାରିନ୍ତି ।

ମଲାଟ ପରେ ଆସେ ଶୀର୍ଷକ ପୃଷ୍ଠା ଏବଂ ପୋଥିର ବିବରଣୀ ଭଳି ପ୍ରକାଶକ, ଛାପାଖାନା, ପ୍ରକାଶକାଳ । ଏହା ପରେ ଆରମ୍ଭ ହୁଏ ଲେଖକୀୟ ଇଲାକାର ବିଭିନ୍ନ ପ୍ରସ୍ଥ ଯଥା ଉତ୍ସର୍ଗ ପତ୍ର, କୃତଜ୍ଞତା ଜ୍ଞାପନ ଇତ୍ୟାଦି ।

॥ ଉତ୍ସର୍ଗ ପତ୍ର ॥ କେତେକ ଲେଖକ ନିଜର ସ୍ନେହ ବା ସମ୍ମାନର ଚିହ୍ନ ସ୍ୱରୂପ ବହିଟି କାହାରିକୁ ସମର୍ପଣ କରିଥାନ୍ତି । ଛିଦ୍ରାନ୍ୱେଷୀ ପାଠକ କିନ୍ତୁ ସେଥିରୁ ଅର୍ଥ ଖୋଜେ । ବହିଟି ଲେଖକଙ୍କର ପତ୍ନୀଙ୍କୁ ଉତ୍ସର୍ଗୀକୃତ ହୋଇଥିଲେ ସେ ନିଷ୍କର୍ଷ ବାହାର କରେ ଯେ ସ୍ୱାମୀ ସ୍ତ୍ରୀଙ୍କର ସଂପର୍କ ଭଲ ନୁହେଁ ଏବଂ ଉତ୍ସର୍ଗଟି ନିଶ୍ଚିତ ଭାବେ ଲୋକ ଦେଖାଣିଆ । ଯଦି ବହିର ନାଁରେ ମଧ୍ୟ ସ୍ତ୍ରୀଙ୍କର ନାଁ ଥାଏ ତେବେ ସେ ଏ ବିଷୟରେ ନିଃସନ୍ଦେହ ହୋଇଯାଏ ।

ବହିଟିକୁ ଯେତେବେଳେ ପୃଥିବୀର ସମସ୍ତ ପ୍ରେମିକ, ସମସ୍ତ ସର୍ବହରା, ମୋର ଅଗଣିତ ମୁଗ୍ଧ ପାଠକପାଠିକା ବା (ଅତ୍ୟନ୍ତ ଚତୁରତାର ସହିତ) କେବଳ ତମକୁ ଉତ୍ସର୍ଗ କରାଯାଇଥାଏ ତାହା ସାଧାରଣ ପାଠକକୁ ହସର ଖୋରାକ ଯୋଗାଏ ।

ଉତ୍ସର୍ଗ ପତ୍ରରୁ ଲେଖକର ଚରିତ୍ର ବିଷୟରେ ମଧ୍ୟ ଅନୁଧ୍ୟାନ କରାଯାଇପାରେ । ଉନବିଂଶ ଶତାବ୍ଦୀର ଲୋକପ୍ରିୟ ଲେଖକ ରାଇଡର ହାଗାର୍ଡ ତାଙ୍କର ୧୮୮୭ର ଗୋଟିଏ ଉପନ୍ୟାସରେ ଆଫ୍ରିକାର ଜଣେ ଗୋରା ଲୋକର ବୀରତ୍ୱର କାହାଣୀ ଲେଖିଛନ୍ତି ଯେଉଁଥିରେ କଳାଲୋକଙ୍କ ଦମନ ଓ ମୁଖପାତ୍ରର ସଫଳତାର ବର୍ଣ୍ଣନା ଅଛି । ହାଗାର୍ଡ ବହିଟିକୁ ନିଜର ପୁଅକୁ ଉତ୍ସର୍ଗ କରି ତାକୁ ସେହି ଗୋରାଲୋକଙ୍କ ଦ୍ୱାରା ଅନୁପ୍ରାଣିତ ହେବାକୁ କହିଛନ୍ତି । ଏହି ଉତ୍ସର୍ଗରୁ ସମୀକ୍ଷକମାନେ ସହଜରେ ହାଗାର୍ଡଙ୍କ ନିଜର କଳା ଲୋକ ବିରୋଧୀ ମନୋଭାବ ବିଷୟରେ ନିଶ୍ଚିତ ହୋଇଛନ୍ତି ।

ଆଧୁନିକ ଓଡ଼ିଆ ସାହିତ୍ୟର ଆରମ୍ଭ ସମୟରେ ଲେଖକମାନେ ସେମାନଙ୍କର ଲେଖାକୁ ଉତ୍ସର୍ଗ କରୁଥିଲେ ଗୋରା ଅମଲା ଓ ଟଙ୍କା ଦେଇଥିବା ରାଜାଙ୍କୁ । ରାଧାନାଥଙ୍କ ଉତ୍ସର୍ଗର ପ୍ରାପକ ଥିଲେ ଜନ ବୀମ୍‌ସ ତଥା ବାମଣ୍ଡା ତାଳଚେର ମୟୂରଭଞ୍ଜ ଆଠମଲ୍ଲିକ ଓ ଖଡ଼ିଆଳର ରାଜା । ଏହି ଉତ୍ସର୍ଗପତ୍ରମାନଙ୍କରେ

ରାଜାମାନଙ୍କର ଉଚ୍ଛ୍ୱସିତ ପ୍ରଶଂସା କରାଯାଉଥିଲା । **ମହାଯାତ୍ରାକୁ** ସାହାଯ୍ୟ ଦେଇଥିବା କନିକା ରାଣୀ ତାଙ୍କ ପକ୍ଷରୁ ବହିଟିକୁ କମିଶନର ରମେଶ ଚନ୍ଦ୍ର ଦତ୍ତଙ୍କୁ ଉତ୍ସର୍ଗ କରିଦେଇଥିଲେ । ମଧୁସୂଦନ ରାଓ ତାଙ୍କର **ବସନ୍ତଗାଥା** ବହି ବାମଣ୍ଡା ଯୁବରାଜଙ୍କୁ ଉତ୍ସର୍ଗ କରି ତାଙ୍କୁ ନିମ୍ନଲିଖିତ ଉପାଧିମାନଙ୍କରେ ଭୂଷିତ କରିଥିଲେ: ଯୁବୋତ୍ତମ, ରାଜଶ୍ରୀ ମଣ୍ଡିତ, ରାଜଧର୍ମେ ବ୍ରତୀ, ରାଜନୀତି ସୁପଣ୍ଡିତ, ଦେବସ୍ପୃହଣୀୟ, ଶ୍ରେୟଃ ପଥର ପଥିକ, ସାହିତ୍ୟ-ନନ୍ଦନ-ବନ-ବିହାର ରସିକ, ଅସ୍ତ୍ରଶସ୍ତ୍ର ବିଶାରଦ, ବିଜ୍ଞାନ ବିଳାସୀ, କ୍ଷେତ୍ର ତେଜେ ଶୂରବୀର, କଲ୍ୟାଣ ପ୍ରୟାସୀ, ସଦଗୁଣ ଆକର, ଉତ୍କଳ-ଉତ୍କର୍ଷ ହିତ ସାଧନ ତତ୍ପର । ଆମର ସେ ସମୟର ରାଜାମାନେ ଏତେ ପ୍ରଶଂସାର ଭାରରେ ଅବନତ ହୋଇଥିବାର ଜଣା ନାହିଁ ।

ଫକୀରମୋହନ ତାଙ୍କର ବହି କାହାରିକୁ ଉତ୍ସର୍ଗ କରି ନଥିଲେ । କେବଳ 'ଅବସର ବାସରେ'ର ଭୂମିକାରେ ସେ ଲେଖିଛନ୍ତି ଯେ ଧରାକୋଟ ଅଧୀଶ୍ୱର ତାଙ୍କୁ ଏକ ଶତ ଟଙ୍କା ଦାନ କରିଥିବାରୁ ସେ ତାଙ୍କ ପାଖରେ ଚିରଦିନ କୃତଜ୍ଞତା ପାଶରେ ଆବଦ୍ଧ ରହିଲେ ।

**ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର** ପ୍ରଥମ ଖଣ୍ଡ( ୧୯୩୧ ) ଉତ୍ସର୍ଗ କରାଯାଇଥିଲା ଆଗରୁ ଓଡ଼ିଶା ଡିଭିଜନର କମିଶନର ଥିବା ହବାକ୍ ସାହେବଙ୍କୁ ଓ ଏଥିରେ ପ୍ରଥମ ଫଟୋ ଥିଲା ବିହାର-ଓଡ଼ିଶା ଗଭର୍ନର ଷ୍ଟିଫେନ୍‌ସନ୍‌ଙ୍କର । ଏଥିରେ ଇଂରେଜୀରେ ୧୨ ପୃଷ୍ଠାର ଓ ଓଡ଼ିଆରେ ୧୭ପୃଷ୍ଠାର ଉପକ୍ରମଣିକା ଥିଲା ଏବଂ ତାର ମଝିରେ ମଝିରେ ରାଜା ମହାରାଜା, ମହନ୍ତ, ସହକର୍ମୀ ଓ ଗୋରା ଅମଲାଙ୍କର ଫଟୋ ଥିଲା ।

ପ୍ରିୟ ଲୋକଙ୍କୁ ବା ସାହାଯ୍ୟ କରିଥିବା ଲୋକକୁ ବହି ଉତ୍ସର୍ଗ କରିବା ସଙ୍ଗତ ନିଶ୍ଚୟ । କିନ୍ତୁ ଉତ୍ସର୍ଗପତ୍ରଟି ଲେଖକର ମାନସିକତା ମଧ୍ୟ ସୂଚାଏ । ଏଥିରୁ ମନେ ପଡ଼ିଲା ଯେ ଆମର ଜଣେ ସାହିତ୍ୟିକ ତାଙ୍କ ଲେଖାର ଇଂରେଜୀ ଅନୁବାଦ ଇନ୍ଦିରା ଗାନ୍ଧୀଙ୍କୁ ଉତ୍ସର୍ଗ କରିଥିଲେ । ସେ ଏଥିପାଇଁ ଅନୁମତି ନେଇଥିଲେ ବା କୌଣସି ଭାବରେ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ଉପକୃତ ହୋଇଥିଲେ ବା ଉପକାର ପାଇବାର ଆଶା ରଖିଥିଲେ ସେ ବିଷୟ ଜଣା ନାହିଁ । ଓଡ଼ିଶାର କଂଗ୍ରେସୀ ତାଙ୍କ ପାଇଁ ସଦୟ ହୋଇପାରିଥାନ୍ତି ହୁଏତ, କିନ୍ତୁ ଉତ୍ସର୍ଗପତ୍ରଟି ଅନେକଙ୍କ ମନରେ ନକାରାତ୍ମକ ମନୋଭାବ ଉଦ୍ରେକ କରିଥିଲା ।

ଏକ ସମୟରେ ଲେଖକଙ୍କର ଉତ୍ସର୍ଗପତ୍ର ବ୍ୟତୀତ ଆଉ ଏକ ଖାଲି ଉତ୍ସର୍ଗ ପୃଷ୍ଠା ରଖାଯାଉଥିଲା । ସେତେବେଳେ ବାହା ବ୍ରତ ଘରେ ବହି ଉପହାର ଦିଆଯାଉଥିଲା ଏବଂ ଏହି କମକୂଟ କରା ଖାଲି ପୃଷ୍ଠାରେ ଉପହାର ଦାତା ନିଜର ସନ୍ଦେଶ ଲେଖିପାରୁଥିଲା । ପଚାଶ ଷାଠିଏ ବର୍ଷ ତଳେ ଏ ଭଳି ଉପହାରର ବହି ଥିଲା ଗୋପାଳ କାନୁନ୍‌ଗୋଙ୍କର ସଚିତ୍ର ଓମର ଖୈୟାମ ବା ବିଭୂତି ପଟ୍ଟନାୟକଙ୍କ ଉପନ୍ୟାସ ଭଳି ଲୋକପ୍ରିୟ ବହି । ଆଜିକାଲି ଆଉ ଓଡ଼ିଆ ବହିରେ ଏ ଭଳି ପୃଷ୍ଠା ଦିଆ ଯାଉ ନାହିଁ, କାରଣ ଓଡ଼ିଶାରେ ବହି ଉପହାର ଦେବାର ପ୍ରଥା ହିଁ ଉଠିଗଲାଣି ।

॥ **କୃତଜ୍ଞତା ଜ୍ଞାପନ** ॥ ଏଇଟି ଲେଖିବା ଲେଖକଙ୍କ ପାଇଁ ସବୁଠାରୁ ବେଶି କାଠିକର ପାଠ । କାହା ନାଁ ଦେବ, କାହାକୁ ଛାଡ଼ିଦେବ ? ଲେଖକ ଯଦି ନିଜର ଗବେଷଣାତ୍ମକ ବହିରେ ସେହି ବିଷୟରେ ଗବେଷଣା କରୁଥିବା କାହାରି ନାଁ ଦିଏ, ଛିଦ୍ରାନ୍ୱେଷୀ ପାଠକ ସ୍ଥିର କରି ନେବ ଯେ ଲେଖକ ତାଙ୍କର ଲେଖା ଚୋରି କରି ତାଙ୍କ ପାଖରୁ କ୍ଷମା ମାଗୁଛନ୍ତି । ଯଦି ପୃଷ୍ଠା ପୃଷ୍ଠା ବ୍ୟାପୀ କୃତଜ୍ଞତାର ତାଲିକା ରହିଲା, ଚତୁର ପାଠକ ଜାଣିବ ଯେ ଲେଖକ କାହାରି ପ୍ରତି କୃତଜ୍ଞ ହେବାକୁ ଚାହୁଁ ନାହାନ୍ତି ଏବଂ ତାଙ୍କ ଲେଖାଟି ଅନେକ ପୁରୁଣା ଲେଖାର ଚର୍ବିତ ଚର୍ବଣ ମାତ୍ର ।

କିଛି ଲେଖକ ଏ ବିଷୟରେ କୌଣସି କାର୍ପଣ୍ୟ ନ କରି କୃତଜ୍ଞତାର ଦୀର୍ଘ ସାରଣୀ ଦିଅନ୍ତି । ଏଥିରେ ଥାନ୍ତି ନିଜର ପରିବାରର ଲୋକ, ବନ୍ଧୁବାନ୍ଧବ, ଲାଇବ୍ରେରୀ, ଡିଟିପି କରିବା ଲୋକ, ପ୍ରୁଫ୍ ରିଡର, ପ୍ରକାଶକ ଇତ୍ୟାଦି । ବହିଟି ଲେଖୁଥିବା ବେଳେ ତାଙ୍କର ଯେଉଁ ବନ୍ଧୁ ରାସ୍ତାରେ 'ଲେଖା ଲେଖି କେମିତି ଚାଲିଛି' ବୋଲି ପଚାରିଥିଲା, ସେ ମଧ୍ୟ ଏହି ତାଲିକାରେ ନିଜର ନାଁ ନ ଦେଖି ହତାଶ ହୁଏ ।

॥ **ଚିତ୍ର ଓ ଅଳଙ୍କରଣ** ॥ ବହି ଭିତରେ ଯଦି ଚିତ୍ର ଥାଏ ତା ମଧ୍ୟ ପାଠକୁ ପ୍ରଭାବିତ କରେ । ଗୋଟିଏ ଉପନ୍ୟାସରେ ଯଦି ଲେଖକ ଝିଅଟିକୁ ସୁନ୍ଦର ବୋଲି ଲେଖନ୍ତି ତେବେ ପ୍ରତିଟି ପାଠକ ତାକୁ ମନମୁତାବକ ଚିହ୍ନା ଅଚିହ୍ନା ମୁହଁ ମିଶାଇ ଗୋଟିଏ ସ୍ୱତନ୍ତ୍ର ସୁନ୍ଦରୀ ତିଆରି କରେ । କିନ୍ତୁ ବହିରେ ଚରିତ୍ରର ଚିତ୍ର ଦିଆଯାଇଥିଲେ ପାଠକର ଏ ସ୍ୱାଧୀନତା ରହେ ନାହିଁ । ଲୁଇସ କାରଲଙ୍କ ବହିରେ ଟେନିଏଲ କରିଥିବା ଚିତ୍ର ହିଁ ବର୍ତ୍ତମାନ ଆଲିସ୍‌ର ପ୍ରାମାଣିକ ଚେହେରା; ପାଠକ ନିଜେ ତା ପାଇଁ ଆଉ କୌଣସି ଚେହେରା କଳ୍ପନା କରିପାରିବ ନାହିଁ । ସେହିପରି ହେଉଛି

ଚାର୍ଲସ ଡିକେନ୍ସଙ୍କ ବହିରେ କ୍ରୁଶାଙ୍କ ଆଙ୍କିଥିବା ଚିତ୍ର ବା ମାଟିର ମଣିଷରେ ଗୋପାଳ କାନୁନ୍‌ଗୋଙ୍କର ଅଙ୍କନ ।

ଗବେଷଣାତ୍ମକ ବହିରେ ଆହୁରି ଅନେକ ଜିନିଷ ଦେବାକୁ ହୁଏ, ଯଥା ପାଦଟୀକା, ଗ୍ରନ୍ଥସୂଚୀ, ବର୍ଣ୍ଣାନୁକ୍ରମିକ ବିଷୟ ସୂଚନାର ଇଣ୍ଡେକ୍ସ ଇତ୍ୟାଦି । ଏ ସବୁ ନଥିଲେ ବହିଟି ବିଦ୍ୱଜ୍ଜନସମ୍ମତ ବୋଲି ଗଣା ହେବ ନାହିଁ ଏବଂ ପ୍ରକାଶକ ତାର ପାଣ୍ଡୁଲିପିକୁ ଛୁଇଁବେ ନାହିଁ ।

॥ **ପାଦଟୀକା** ॥ ସୃଜନାତ୍ମକ ସାହିତ୍ୟ ବହିରେ ଏହାର ଆବଶ୍ୟକତା ହୁଏ ଯେତେବେଳେ ପାଠରେ କୌଣସି ବିଦେଶୀ ଶବ୍ଦ ବା ବହିର ଭାଷା ବହିର୍ଭୂତ କୌଣସି ବୁଝି ହେଉ ନ ଥିବା ଶବ୍ଦ ପ୍ରୟୋଗ କରାଯାଏ । ଭାରତୀୟ ଜୀବନକୁ ନେଇ ଇଂରେଜୀ ଭାଷାରେ ଉପନ୍ୟାସ ଲେଖିବା ବେଳେ ଭାରତୀୟ ଶବ୍ଦ ବ୍ୟବହାର କରିବାକୁ ପଡ଼ିଥାଏ, ଯଥା, ପାନ ରୁଟି ମଣ୍ଡପ ଜହ୍ନିଫୁଲ ଖୁଆଡ଼ ଭଳି ଶବ୍ଦ । ଏହି ଶବ୍ଦମାନଙ୍କୁ ପ୍ରତି ପୃଷ୍ଠାରେ ତଳେ ଟୀକା ଦେଇ ବା ବହି ଶେଷରେ ଏକ ଶବ୍ଦାର୍ଥ ତାଲିକା ବା ଗ୍ଲସାରି ଦେଇ ବୁଝାଇବାକୁ ପଡ଼େ । ଭାରତୀୟ ଉପନ୍ୟାସକୁ ଇଂରେଜୀରେ ଅନୁବାଦ କଲାବେଳେ ମଧ୍ୟ ଏକା ଭଳି ସମସ୍ୟା ଉପୁଜେ ଏବଂ ପାଦଟୀକା ବା ଗ୍ଲସାରି ଦିଆଯାଏ । ଏହା ଦ୍ୱାରା ପାଠକ ଝୁଣ୍ଟେ ଓ ପଢ଼ିବା ସାବଲୀଳ ହୁଏ ନାହିଁ ।

ଭାରତୀୟ ଓ ଆଫ୍ରିକୀୟ ଲେଖକମାନେ ପ୍ରଥମେ ଏ ଭଳି ପାଦଟୀକା ବ୍ୟବହାର କରୁଥିଲେ । ପରବର୍ତ୍ତୀ ସମୟରେ ଦୁର୍ବୋଧ୍ୟ ଶବ୍ଦକୁ ସେହି ଲେଖା ଭିତରେ ବୁଝାଇବାକୁ ଚେଷ୍ଟା କରାଗଲା । ଆଫ୍ରିକାର ଶବ୍ଦ ଓବି ଇଂରେଜୀରେ ବୁଝି ହେବ ନାହିଁ । କିନ୍ତୁ ଯଦି କୁହାଯାଏ ଯେ ଲୋକଟିର ଓବି ତାଙ୍କ ଗାଁର ସବୁଠାରୁ ଛୋଟ କୁଡ଼ିଆ ଥିଲା, ପାଠକ ତାର ଅର୍ଥ ଜାଣି ପାରିବ । ଇଂରେଜୀରେ ରଥଯାତ୍ରାର ବର୍ଣ୍ଣନା କଲାବେଳେ 'ଦ ଗ୍ରାଣ୍ଡ ବଡ଼ଦାଣ୍ଡ ଷ୍ଟ୍ରୀଟ୍' ଲେଖିଲେ ପାଦଟୀକା ଦେଇ ରାସ୍ତାଟିକୁ ବୁଝାଇବାର ଆବଶ୍ୟକତା ରହିବ ନାହିଁ ।

ତା ପରେ ଆସିଲେ ରଶ୍‌ଦି(ମିଡ୍‌ନାଇଟ୍‌ସ୍ ଚିଲ୍‌ଡ୍ରେନ, ୧୯୮୧)ଙ୍କ ଭଳି ଲେଖକ ଯେଉଁମାନେ ଭାରତୀୟ ଶବ୍ଦର ଅର୍ଥ ବୁଝାଇବାକୁ ଚାହିଁଲେ ନାହିଁ । ସେମାନେ କହିଲେ, ଆମେ ଆମର ଶବ୍ଦ ବ୍ୟବହାର କରିବୁ, ତମେ ବୁଝ ନ ବୁଝ ।

॥ ଶୁଦ୍ଧି ପତ୍ର ॥ ଏଇଟି ହେଉଛି ବହିର ଏକ ଅତ୍ୟନ୍ତ ଅପ୍ରୀତିକର ଅଂଗ । ପୂର୍ବ ସମୟରେ ଯେତେବେଳେ ସଂପୂର୍ଣ୍ଣ ବହିଟି ଅଳ୍ପ ଅଳ୍ପ କରି ଅକ୍ଷର ସଂଯୋଜନାରେ ଫର୍ଦ୍ଦ ଫର୍ଦ୍ଦ ହୋଇ ଛାପା ହେଉଥିଲା, ଶେଷ ବେଳକୁ ଆଉ ଥରେ ପ୍ରୁଫ୍ ଦେଖି ସେଥିରେ ଥିବା ଭୁଲ ଭ୍ରାନ୍ତି ପାଇଁ ବହି ଶେଷରେ ଏକ ଶୁଦ୍ଧିପତ୍ର ଦିଆଯାଉଥିଲା । (କେତେକ ଶ୍ୟେନ ଦୃଷ୍ଟି ପାଠକ ସେହି ଶୁଦ୍ଧିପତ୍ରମାନଙ୍କରୁ ମଧ୍ୟ ଭୁଲ ବାହାର କରୁଥିଲେ ।) ସୁଖର ବିଷୟ ଯେ ବର୍ତ୍ତମାନ ମୁଦ୍ରଣ ପ୍ରଣାଳୀର ଆଧୁନିକୀକରଣ ପରେ ପୂରା ବହିଟି ଏକା ଥରକେ ଛପା ହେଉଥିବାରୁ ଏହି ଦୃଷ୍ଟିକଟୁ ପତ୍ରଟି ଆଉ ଯୋଡ଼ା ଯାଉନାହିଁ । ତେବେ ମୁଦ୍ରାରାକ୍ଷସ ବା ମୁଦ୍ରଣ ତ୍ରୁଟି ଯେ କମି ଯାଉଛି ତା କହି ହେବ ନାହିଁ ।

ଛାପା କାମରେ ପ୍ରୁଫ୍ ରିଡର ଏକ ଗୁରୁତ୍ୱପୂର୍ଣ୍ଣ ଅଂଗ । ଇଂରେଜୀ ଲେଖା କଂପ୍ୟୁଟରରେ ଲେଖିବା ବେଳେ ବନାନ ଭୁଲ ହେଲେ ସ୍ପେଲ ଚେକ ତାକୁ ଦେଖାଇ ଦିଏ । ଆମେ ଓଡ଼ିଆ ଲେଖକମାନେ ଆମର ବନାନ ଅଜ୍ଞତା ସଂଶୋଧନ କରିବା କାମ କମ୍ପୋଜିଟର(ବର୍ତ୍ତମାନ ଡିଟିପି ଅପରେଟର) ଓ ପ୍ରୁଫ୍ ରିଡର ଉପରେ ଛାଡ଼ି ଦେଉ । ଓଡ଼ିଆରେ ସ୍ପେଲଚେକ ଆମର ବିଶେଷ ସହାୟକ ହେବ ।

ଏ ବିଷୟରେ ଶେଷ କଥା ହେଲା ଯେ ବହିର ମୂଳ ପାଠ ହିଁ ସବୁ କିଛି । ବହିର ମଲାଟ, ଉତ୍ସର୍ଗପତ୍ର, ଅଳଂକରଣ, ଆମୁଖ, ପ୍ରସ୍ତାବନା ଏ ସବୁ ସହାୟକ ବା ବିଭ୍ରାନ୍ତକାରୀ ହୋଇପାରନ୍ତି । ଏହି ସତର୍କ ବାଣୀକୁ ମନେ ରଖି ପାଠକ ବହିଟି ପଢ଼ିବା ଉଚିତ ।

ଜୁନ୍ ୨୦୧୬

# ସାର୍ବଭୌମ ଶବ୍ଦର ସାମ୍ରାଜ୍ୟ

ହମଟି ଡମଟି ତାଚ୍ଛଲ୍ୟର ସହିତ କହିଲା, ମୁଁ ଯେତେବେଳେ ଗୋଟିଏ ଶବ୍ଦ ବ୍ୟବହାର କରେ ତାର ଅର୍ଥ ହେବ ମୁଁ ଯାହା ଠିକ କରେ କେବଳ ସେତିକି । ନା ବେଶି, ନା କମ ।

ଆଲିସ କହିଲା, ପ୍ରଶ୍ନ ହେଉଛି, ତମେ କଣ ଶବ୍ଦରୁ ଭିନ୍ନ ଭିନ୍ନ ଅର୍ଥ ବାହାର କରି ପାରିବ ?

(ଲୁଇସ୍ କାରଲ, ଥ୍ରୁ ଦ ଲୁକିଙ୍ଗ ଗ୍ଲାସ, ୧୮୭୨)

ଆଲିସ ଯଦି ସଂସ୍କୃତ ଜାଣିଥାନ୍ତା, ଏ ପ୍ରଶ୍ନ କରି ନ ଥାନ୍ତା । କାରଣ, ସଂସ୍କୃତରେ ଗୋଟିଏ ଶବ୍ଦର ଅନେକ ଅର୍ଥ ଥାଏ, ଯଥା କ ଅକ୍ଷର ବା ଶବ୍ଦର ୨୪ଟି ଅର୍ଥ ଅଛି:

ବ୍ରହ୍ମା ବିଷ୍ଣୁ ଶିବ ବାୟୁ ଯମ ସୂର୍ଯ୍ୟ ଆତ୍ମା ଅଗ୍ନି ପକ୍ଷୀ ଦଶ-ପ୍ରଜାପତି ରୋଗ କାଳ କନ୍ଦର୍ପ ଦୀପ୍ତି କେଶ ମୟୂର ଶରୀର ରାଜା ଶବ୍ଦ ଧନ ମନ ମସ୍ତକ ସୁଖ ଜଳ ।

(ମଜା କରି ଏ କଥା ମଧ୍ୟ କୁହାଯାଇଛି ଯେ ପ୍ରତ୍ୟେକ ସଂସ୍କୃତ ଶବ୍ଦ ନିଜକୁ ବୁଝାଏ, ତାର ବିପରୀତକୁ ବୁଝାଏ, ଗୋଟିଏ ଦେବଙ୍କର ନାଁ ଏବଂ କାମସୂତ୍ରର ଏକ ବନ୍ଧ ।)

ଆଲିସର ପ୍ରଶ୍ନ ଶୁଣି ହମଟି ଡମଟି କହିଲା, 'ପ୍ରଶ୍ନ ହେଉଛି, ମାଲିକ ହେବ କିଏ; ବାସ୍, ଏତିକି ।'

ଆମ ପାଇଁ ସିଧା ପ୍ରଶ୍ନ ସଲଖ ପ୍ରଶ୍ନ ହେଉଛି, କେହି କଣ କେବେ ଶବ୍ଦକୁ ଆୟତ୍ତ କରି ପାରିବ ? ଏ ଏକ ଜଟିଳ ପ୍ରଶ୍ନ । କାରଣ, ଶବ୍ଦ ହେଉଛି ବ୍ରହ୍ମ (ବେଦରେ କୁହାଯାଇଛି) ଏବଂ ଶବ୍ଦ ବି ଈଶ୍ୱର(ବାଇବଲରେ କୁହାଯାଇଛି) । ତେବେ ଆମର କବିସମ୍ରାଟଙ୍କର ଏ ବିଷୟରେ କୌଣସି ସଂଶୟ ଓ ସଙ୍କୋଚ ନଥିଲା । ସେ କୌଣସି ଅଳଙ୍କାରର ଆଶ୍ରୟ ନ ନେଇ ସିଧା କହିଲେ, କହେ

ଉପଇନ୍ଦ୍ର ଭଂଜ ମୁଁ ଲଭିଛି ଶବ୍ଦ ସମୁଦ୍ରର ପାର । ୱିକିପିଡ଼ିଆ ଅନୁସାରେ ଉପେନ୍ଦ୍ର ଭଞ୍ଜ ବ୍ୟବହାର କରିଛନ୍ତି ୩୨,୩୦୦ ଶବ୍ଦ । ଅବଶ୍ୟ ଏଥିରେ ଉଲ୍ଲେଖ ନାହିଁ କିଏ କେବେ ଏ ଗଣନା କରିଥିଲା । ତାଙ୍କ ତୁଳନାରେ ଶେକ୍ସପିଅର ବ୍ୟବହାର କରିଛନ୍ତି ୩୧,୫୩୪ଟି ଶବ୍ଦ । ଆମେ ଏଥର ଛାତି ପିଟି କହି ପାରିବା ବାଃ ବାଃ ଭଂଜ ।

ଶବ୍ଦକୁ ଅଧୀନ କରିବା କାହିଁକି ଅସମ୍ଭବ ତାର ବିଭିନ୍ନ କାରଣ ଅଛି, ଯଥା ; ସେମାନେ ରୂପ ବଦଳାଇପାରନ୍ତି, ଭିନ୍ନ ଭିନ୍ନ ଭାଷାରେ ଭିନ୍ନ ଅର୍ଥ ଦିଅନ୍ତି, ନୂଆ ନୂଆ ରୂପରେ ଆସନ୍ତି, ଓଲଟା ଅର୍ଥ ଦିଅନ୍ତି ଓ ଘରେ ବାହାରେ ଚଳପ୍ରଚଳ ହେଉଥାନ୍ତି । ତଳେ ଦିଆଗଲା ସେମାନଙ୍କର କିଛି ଚରିତ୍ର ଲକ୍ଷଣ ଯାହା ଦ୍ୱାରା ତାଙ୍କୁ ଅନ୍ତତଃ ଚିହ୍ନଟ କରି ପାରିବା ।

॥ **ଶବ୍ଦଙ୍କର କାୟାକଳ୍ପ** ॥ ଅନେକ ସମୟରେ ଶବ୍ଦମାନେ ରୂପ ବଦଳାଇ ପରିବର୍ତ୍ତିତ ଓ ବିକୃତ ହୋଇଯାନ୍ତି, ବା ଅନ୍ୟ ଭାବରେ କହିଲେ ସେମାନଙ୍କର ଘଟାନ୍ତର ବା କାୟାକଳ୍ପ ହୁଏ । ଏଥିରୁ ଗୋଟିଏ ଉଦାହରଣ ନିଆଯାଉ, ବାଇଶି ପାହାଚ । ଛାତ୍ରମାନଙ୍କର ପର୍ଯ୍ୟବେକ୍ଷଣ ଶକ୍ତିକୁ ପରୀକ୍ଷା କରିବା ପାଇଁ ରେଭେନ୍ସା କଲେଜର ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ(ଆମମାନଙ୍କ ପାଇଁ ପଠାଣି ସାମନ୍ତଙ୍କ ଆବିଷ୍କର୍ତ୍ତା) ପିଲାଙ୍କୁ ପଚାରୁଥିଲେ, କଲେଜ ଭିତରକୁ ପଶିବା ବେଳେ କେତୋଟି ପାହାଚ ଉଠିବାକୁ ପଡ଼େ ? ଅଧିକାଂଶ ସମୟରେ ଏହାର ସଠିକ୍ ଉତ୍ତର ମିଳୁ ନ ଥିଲା ।

କିନ୍ତୁ ଯଦି କାହାକୁ ପଚରାଯାଏ ଜଗନ୍ନାଥ ମନ୍ଦିର ଭିତରକୁ କେତୋଟି ପାହାଚ, ସେ ତୁରନ୍ତ ପ୍ରତ୍ୟୟର ସହିତ କହିବ ବାଇଶିଟି । ଉତ୍ତରଟି ଭୁଲ । ବିଭିନ୍ନ ଲୋକ ବିଭିନ୍ନ ଭାବରେ ଏହାକୁ ଗଣିଛନ୍ତି । ଗିରିଜା ଶଙ୍କର ରାୟ ତାଙ୍କର 'ଓଡ଼ିଆ ଗଦ୍ୟର ଅର୍ଥାନ୍ତର ତତ୍ତ୍ୱ, ୧୯୩୪' ବହିରେ ୧୯ଟି ପାହାଚ କଥା ଲେଖିଛନ୍ତି । ସୁରେନ୍ଦ୍ର ମହାନ୍ତି ତାଙ୍କର 'ଲର୍ଡ ଜଗନ୍ନାଥ' (ଇଂରେଜୀ, ଓଡ଼ିଆ ସାହିତ୍ୟ ଏକାଡେମି ପ୍ରକାଶିତ, ୧୯୮୨) ରେ ଲେଖିଛନ୍ତି, "ପ୍ରକୃତରେ ପାହାଚ ସଂଖ୍ୟା ୧୬, ତାହାକୁ କାହିଁକି ୨୨ କୁହାଯାଏ, ତା ଏକ ରହସ୍ୟ' । ପଚାଶ ବର୍ଷ ଭିତରେ ଦୁଇଟି ପାହାଚ କିପରି ଉଭାନ ହୋଇଗଲା, ତା ଗବେଷଣାର ବିଷୟ । ଏ ରହସ୍ୟ ଉଦ୍‌ଘାଟନ କରିଛନ୍ତି ଗିରିଜାଶଙ୍କର ତାଙ୍କର ଉପରଲିଖିତ ବହିରେ : ଯେତେବେଳେ

ମନ୍ଦିର ତିଆରି ହେଲା... ସେହି ସମୟରୁ ମନ୍ଦିରରୁ ବାହାରକୁ ଯିବା ଆସିବା ସକାଶେ ଯେଉଁ ପାହାଚ ହୋଇଥିଲା ଏହା ବହିଶ୍ ପାବଚ୍ଛ ରୂପେ ବ୍ୟବହୃତ ଓ ଆଖ୍ୟାତ ହେଉଥିଲା । ଏହି ବହିଶ୍ ପାହାଚ ବର୍ତ୍ତମାନ ରୂପାନ୍ତରିତ ହୋଇ ସାଧାରଣ ଲୋକଙ୍କ ମୁହଁରେ ବାଇଶ ପାହାଚରେ ପରିଣତ ହୋଇଛି ।

ଖୋଜିଲେ ଆମକୁ ଏପରି ଅନେକ ଉଦାହରଣ ମିଳିବ । ଓଡ଼ିଆର ତତ୍‌ସମ ଶବ୍ଦ ସବୁ ସଂସ୍କୃତରୁ ନିଆଯାଇଛି ଏବଂ କିଛି ଅଦଳବଦଳ ସତ୍ତ୍ୱେ ନୂଆ ଶବ୍ଦଟି ମୂଳ ଅର୍ଥରୁ ବିଚ୍ୟୁତ ହୁଏ ନାହିଁ । କିନ୍ତୁ ବହିଶ୍‌ରୁ ବାଇଶ ଏକ ଉଦ୍‌ଭଟ କାୟାକଳ୍ପ ।

॥ **ସମୟ ସହିତ ଅର୍ଥ ପରିବର୍ତ୍ତନ** ॥ ନିଆଁରେ ଜଳିଯାଇଥିବା ସେଣ୍ଟ ପଲ୍’ସ୍ କାଥେଡ୍ରାଲ ୧୭୧୦ରେ ପୁନର୍ନିର୍ମିତ ହେବା ପରେ ତାକୁ ଦେଖି ବିଲାତୀ ରାଣୀ କହିଥିଲେ ଯେ ନୂଆ କାମଟି awful, artificial and amusing । ଏ ତିନୋଟି ଶବ୍ଦ ବର୍ତ୍ତମାନ ନକାରାତ୍ମକ, କିନ୍ତୁ ସେତେବେଳେ ତା’ର ଅର୍ଥ ଥିଲା awe-inspiring, artistic ଓ amazing । ଆମ ଭାଷାରେ ମଧ୍ୟ ସେହିପରି ସମୟକ୍ରମେ କିଛି ଶବ୍ଦର ଅର୍ଥ ବଦଳି ଯାଇଛି । ବଜାରୀ ଶବ୍ଦ ବର୍ତ୍ତମାନ ଯେଉଁ ଅର୍ଥରେ ବ୍ୟବହାର କରାଯାଏ ତା ହେଲା ଅଭଦ୍ର, ଇତର, ନୀଚ ଓ ଅସଂଭ୍ରାନ୍ତ ଲୋକ । ଏକ ସମୟରେ କିନ୍ତୁ ବଜାରୀ କହିଲେ ବୁଝାଯାଉଥିଲା ସହରରେ ବାସ କରୁଥିବା ଭଦ୍ରଲୋକମାନଙ୍କୁ । ଊନବିଂଶ ଶତାବ୍ଦୀର ଉତ୍କଳ ଦୀପିକାର ପୁରୁଣା ପୃଷ୍ଠା ଦେଖିଲେ ସହରବାସୀଙ୍କୁ ବଜାରୀ କୁହାଯାଉଥିବାର ଅନେକ ଉଦାହରଣ ମିଳିବ ।

॥ **ସଶକ୍ତିକରଣ ପାଇଁ ଶବ୍ଦ ଓ ତାର ଶକ୍ତି ହ୍ରାସ** ॥ ଅନେକ ସମୟରେ ସାମାଜିକ ବିଭେଦ ଓ ପୂର୍ବାଗ୍ରହ ଦୂର କରିବା ପାଇଁ ନୂଆ ଶବ୍ଦ ତିଆରି କରାଯାଇଥାଏ । ଆମ ଦେଶରେ ପୂରା କାଳରୁ କିଛି ଲୋକଙ୍କୁ ଅସ୍ପୃଶ୍ୟ ବୋଲି ଧରାଯାଉଥିଲା । ଗାନ୍ଧୀ ମଧ୍ୟ ପ୍ରଥମେ ଏହି ଶବ୍ଦ ବ୍ୟବହାର କରୁଥିଲେ । ଭାରତ ସରକାରଙ୍କ ୧୯୧୯ ଅଧିନିୟମରେ ସେମାନଙ୍କୁ Depressed Class ଆଖ୍ୟା ଦିଆଗଲା । ୧୯୩୩ରୁ ଗାନ୍ଧୀ ସେମାନଙ୍କ ପାଇଁ ସନ୍ଥ ନରସି ମେହଟା ପ୍ରୟୋଗ କରିଥିବା ହରିଜନ ଶବ୍ଦ ବ୍ୟବହାର କଲେ । ୧୯୩୫ର ଅଧିନିୟମରେ Scheduled Caste ଶବ୍ଦ ଆସିଲା । ଆମ୍ବେଦକର କିନ୍ତୁ ସବୁବେଳେ ଅସ୍ପୃଶ୍ୟ ବା untouchable ଶବ୍ଦ ବ୍ୟବହାର କରୁଥିଲେ । ଗତ ଶତାବ୍ଦୀର ସପ୍ତମ ଦଶକରୁ ନିଜେ ଅସ୍ପୃଶ୍ୟମାନେ ଗାନ୍ଧୀ ପ୍ରବର୍ତ୍ତିତ ହରିଜନ ଶବ୍ଦକୁ ପ୍ରତ୍ୟାଖ୍ୟାନ କରି ନିଜକୁ ଦଳିତ ବୋଲି କହିଲେ । ବର୍ତ୍ତମାନ

ହରିଜନ ଶବ୍ଦ ଅପମାନ ସୂଚକ ବୋଲି ଧରାଯାଉଛି ଓ ଏହା ଆଉ ଗୃହୀତ ନୁହେଁ । କାହାକୁ ହରିଜନ କହିବା ଏବେ ଏକ ଅପରାଧ ।

ଠିକ୍ ସେହିପରି ଆମେରିକାର କଳାଲୋକମାନେ Black, Darky, Coloured, Negro, African-American ଶବ୍ଦମାନ ନେଇ ଯିବା ପରେ ବର୍ତ୍ତମାନ ନିଜକୁ Black କହିବା ପାଇଁ କୁଣ୍ଠିତ ନୁହନ୍ତି । ସେହିପରି ଆଗରୁ ଅପଙ୍ଗ, ବିକଳାଙ୍ଗ ଓ ଭିନ୍ନକ୍ଷମ କୁହାଯାଉଥିବା ଲୋକଙ୍କ ପାଇଁ ନରେନ୍ଦ୍ର ମୋଦି ଏକ ନୂଆ ଶବ୍ଦ ତିଆରି କରିଛନ୍ତି ଦିବ୍ୟାଙ୍ଗ ଯାହା ବର୍ତ୍ତମାନ ସରକାରୀ ସ୍ତରରେ ସ୍ୱୀକୃତ ।

ଏଥିରୁ ଦେଖାଯିବ ଯେ କୌଣସି ଘୃଣିତ ଶବ୍ଦକୁ ଯେତେ ନୂଆ ରୂପ ଦେଲେ ମଧ୍ୟ ଯେ ପର୍ଯ୍ୟନ୍ତ ଘୃଣାର ଭାବ ଦୂର ନହୋଇଛି, ସେ ନୂଆ ଶବ୍ଦଟି ମଧ୍ୟ ଘୃଣିତ ଓ ଆପତ୍ତିଜନକ ହୋଇଯିବ । ଅର୍ଥାତ୍ ଶବ୍ଦର ଅର୍ଥ ମଧ୍ୟ ଆମ ସମାଜ ବ୍ୟବସ୍ଥା ଉପରେ ନିର୍ଭର ।

॥ **ଭାଷା ଭିତ୍ତିରେ ଶବ୍ଦର ଅର୍ଥ ପରିବର୍ତ୍ତନ** ॥ ଆମେ ଭାବିବା ସ୍ୱାଭାବିକ ଯେ ଆମର ଭାଷାମାନଙ୍କର ଅନେକ ଶବ୍ଦ ସଂସ୍କୃତରୁ ଆସିଥିବାରୁ ସେ ସବୁ ଶବ୍ଦ ଆମ ପାଇଁ ସମାନ ଅର୍ଥ ବହନ କରିବ । କିନ୍ତୁ ତାର ମଧ୍ୟ ବ୍ୟତିକ୍ରମ ଅଛି । କେତେକ ସଂସ୍କୃତ ଶବ୍ଦକୁ ଆମ ଦେଶର ଭିନ୍ନ ଭିନ୍ନ ଭାଷାରେ ଭିନ୍ନ ଭିନ୍ନ ଭାବରେ ବୁଝାଯାଏ । ଆମେମାନେ କଲ୍ୟାଣ ଶବ୍ଦକୁ ମଙ୍ଗଳ ଅର୍ଥରେ ବୁଝୁଥିବା ବେଳେ ଅଧିକାଂଶ ଦକ୍ଷିଣ ଭାରତୀୟ ଭାଷାରେ ଏହାର ଅର୍ଥ ବିବାହ । ଆମେ ଶେଷକୁ ଅନ୍ତିମ ବୋଲି ଭାବୁଥିବା ବେଳେ ହିନ୍ଦୀରେ ଏହାର ବ୍ୟବହାର ବାକି ବା ଅବଶେଷ ପାଇଁ । ଅପର୍ଯ୍ୟାପ୍ତ ଶବ୍ଦ ସଂସ୍କୃତ, ହିନ୍ଦୀ ଓ ଅନ୍ୟାନ୍ୟ ଭାଷାରେ ଅପ୍ରଚୁର ବୁଝାଉଥିବା ବେଳେ ଓଡ଼ିଆରେ ଏହାର ଅର୍ଥ ପ୍ରଚୁର । ଆମ ଭାଷାରେ ପର୍ଯ୍ୟାପ୍ତ ଓ ଅପର୍ଯ୍ୟାପ୍ତର ଅର୍ଥ ସମାନ ।

ଏହିପରି ସ୍ଥାନ ଓ ଦେଶ ଭେଦରେ ଶବ୍ଦର ଅର୍ଥ ବିଭ୍ରାଟ ଶବ୍ଦ ଉପରେ ଆମର କର୍ତ୍ତୃତ୍ୱର ଅଭାବ ଓ ଅସାମର୍ଥ୍ୟକୁ ସୂଚାଏ ।

॥ **ଶବ୍ଦଙ୍କର ଜନ୍ମମୃତ୍ୟୁ ପୁନର୍ଜନ୍ମ** ॥ ସବୁ ଭାଷାରେ ସବୁବେଳେ ନୂଆ ନୂଆ ଶବ୍ଦଙ୍କର ଆବିର୍ଭାବ ହେଉଥାଏ । ସେଥିରୁ ଅନେକ ଶବ୍ଦ ଅନ୍ୟ ଭାଷାରୁ ଅନୁପ୍ରବେଶ କରିଥାନ୍ତି । କିଛି ଭାଷା ସେମାନଙ୍କୁ ଆଦରି ନିଅନ୍ତି । ଇଂରେଜୀ ଭାଷା ସବୁ ପ୍ରକାର ଶବ୍ଦକୁ ନିଜର କରିନିଏ, ତା ଯେଉଁ ଦେଶରୁ, ଯେଉଁ ଗୋଷ୍ଠୀରୁ ବା ଯେଉଁ ଜାତିରୁ

ଆସିଥାଉ ପଛେ । ସେଥିପାଇଁ ଇଂରେଜୀର ଶବ୍ଦମାନ ଲାଟିନ, ଗ୍ରୀକ୍, ଫରାସୀ, ଜର୍ମାନ ଓ ଅନ୍ୟ ଭାଷାରୁ ଆସିଥିବା ସତ୍ତ୍ୱେ ଏହା ଏକ ଶକ୍ତିଶାଳୀ ଭାଷା ।

ଓଡ଼ିଆ ଭାଷାକୁ ସବୁ ସମୟରେ ବାହାରୁ ଶବ୍ଦମାନ ଆସିଛି । **ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର** ତାଲିକା ଅନୁସାରେ ସେଥିରେ ଯେଉଁ ଭିନ୍ନ ଭିନ୍ନ ଭାଷାର କିଛି ଶବ୍ଦ ନିଆଯାଇଛି ସେଗୁଡ଼ିକ ହେଲା : ଆରବୀ ଇଂରାଜୀ ଇଟାଲୀୟ ଉର୍ଦ୍ଦୁ କନ୍ଧ କୋହ୍ଲ ଗୁଜରାଟୀ ଗ୍ରୀକ ଜର୍ମାନ ତାମିଲ ତୁର୍କୀ ତେଲୁଗୁ ଦ୍ରାବିଡ଼ ପ୍ରତୁଗୀଜ ପାଲୀ ପ୍ରାକୃତ ଫରାସୀ ଫ୍ରେଞ୍ଚ ବଙ୍ଗଳା ମରହଟୀ ଲରିଆ ସଂସ୍କୃତ ଶାନ୍ତାଳୀ ହିନ୍ଦୀ ହେବ୍ରୁ ।

ଭାଷାକୋଷକାର ପ୍ରହରାଜଙ୍କ ଭାଷାରେ, ମୋ ମତରେ ଅଭିଧାନକାରଙ୍କର 'କାନ୍ଦୁ ଥା, ଯାହା ପାଉଥିବୁ ବାନ୍ଧୁ ଥା' ଏହି ନିୟମ ପୁରଷ୍କରଣ କରିବା କର୍ତ୍ତବ୍ୟ ।( ୧୯୩୦)

ନୂଆ ନୂଆ ଶବ୍ଦର ଆହରଣ ଭାଷାକୁ ଜୀବନ୍ତ ରଖେ ଓ ଶକ୍ତିସଂପନ୍ନ କରେ । ଇଂରେଜୀ ଭାଷା ଏହାର ଏକ ଜ୍ୱଳନ୍ତ ଉଦାହରଣ । ଲେଖକମାନେ ମଧ୍ୟ ଭାଷାକୁ ନୂଆ ଶବ୍ଦ ଦେଇ ପାରନ୍ତି । ଶେକ୍ସପିଅର ତାଙ୍କ ଲେଖାରେ ଏପରି ୨୦୦୦ ଶବ୍ଦ ବ୍ୟବହାର କରିଛନ୍ତି ଯାହା ପୂର୍ବରୁ ଇଂରେଜୀରେ ପ୍ରଚଳିତ ନଥିଲା ।

ସଭ୍ୟତା, ଜୀବନଯାପନ ଓ ବ୍ୟବହାର ପ୍ରଣାଳୀର ପରିବର୍ତ୍ତନ ସହିତ ନୂଆ ନୂଆ ଶବ୍ଦ ଭାଷାକୁ ଆସନ୍ତି, ଯଥା କାଳକ୍ରମେ ଆମ ଓଡ଼ିଆରେ ସାଇକେଲ, ଉଡାଜାହାଜ, କଂପ୍ୟୁଟର ଇତ୍ୟାଦି । ସେହିପରି ବ୍ୟବହାର ଅଭାବରୁ କିଛି ଶବ୍ଦ ମରିଯାଆନ୍ତି ବା ଯିବେ ଯଥା ଢିଙ୍କି, ଡିବିରି, ଗୁଖା, ମାଣ । ଭବିଷ୍ୟତରେ ବୋଧହୁଏ କାଗଜ କଲମ ଭଳି ଶବ୍ଦ ମରିଯିବେ ଯେମିତି ପରକଲମ ଓ କଲମତ୍ରାସ( ପରକଲମକୁ କାଟି ସଜ କରିବାର ଛୁରୀ) ଓ ବ୍ଲଟିଙ୍ଗ ପେପର ଆଉ ବ୍ୟବହାରରେ ନାହାନ୍ତି ।

ନୂଆ ନୂଆ ଶବ୍ଦ ଭାଷା ଭିତରକୁ ଆସୁଥିବା ଭଳି ପୁରୁଣା ଶବ୍ଦରୁ କିଛି ଭାଷା ବାହରକୁ ଚାଲିଯାଇ ହଜି ଯାନ୍ତି । ଭିନ୍ନ ଭିନ୍ନ ସମୟର ଅଭିଧାନକୁ ଦେଖିଲେ ଜାଣିହେବ କିପରି ନୂଆ ଶବ୍ଦମାନ ଜନ୍ମ ନେଇଛନ୍ତି ଓ କାଳ କ୍ରମେ ମରିଯାଇଛନ୍ତି । ୨୦୦୯ରେ ପ୍ରକାଶିତ **କ୍ରମ ବିକଶିତ ଓଡ଼ିଆ ଶବ୍ଦ ସମ୍ଭାର ଅଭିଧାନ**ରେ ୧୦୫୦ ଓ ୧୬୦୦ ମଧ୍ୟରେ ବ୍ୟବହୃତ ଶବ୍ଦମାନ ଅଛି । ଏହି ସବୁ ଶବ୍ଦ ସେ ସମୟର ସାହିତ୍ୟରେ ବ୍ୟବହୃତ, କିନ୍ତୁ ବର୍ତ୍ତମାନ ସେଥିରୁ ଅଧିକାଂଶ ପ୍ରଚଳିତ ନାହାନ୍ତି ।

॥ **ଶବ୍ଦର ଅର୍ଥ ଅନର୍ଥ** ॥ କେବେ କେବେ ଏପରି ମଧ୍ୟ ହୁଏ ଯେ ଗୋଟିଏ ଶବ୍ଦ କହିବା ବେଳେ ତାର ପ୍ରକୃତ ଅର୍ଥ ବଦଳରେ ତାର ଓଲଟା ଅର୍ଥ ଜଣାଇବାକୁ ଚେଷ୍ଟା କରାଯାଇଥାଏ ଏବଂ ଶୁଣିବା ଲୋକ ତାକୁ ସେହି ଅନର୍ଥ ବା ଭୁଲ ଅର୍ଥରେ ବୁଝିଥାନ୍ତି ମଧ୍ୟ । ଏହାର ଦୁଇଟି ଉଦାହରଣ ନିମ୍ନ ମତେ :

ଗତ ଶତାବ୍ଦୀର ଷାଠିଏ ଦଶକରେ ଆମେରିକାରେ ଆସିଥିଲା ଭିଏଟନାମ ଯୁଦ୍ଧ ବିରୋଧୀ ଓ ଶାନ୍ତିକାମୀ ସଂସ୍କୃତିର ଲହରୀ ଏବଂ ଏହା ଜନ୍ମ ଦେଇଥିଲା ଫ୍ଲାୱର ଚିଲଡ୍ରେନ ଓ ବିଟନିକ ଯୁବ ସଂପ୍ରଦାୟକୁ । କାଲିଫର୍ନିଆର ବର୍କଲେ ବିଶ୍ୱବିଦ୍ୟାଳୟ ଥିଲା ଏହି ଆନ୍ଦୋଳନର ଏକ କେନ୍ଦ୍ର ସ୍ଥଳ । ସେଠାରେ ଗଣ୍ଡଗୋଳ କରୁଥିବା ଛାତ୍ରମାନଙ୍କୁ ସମ୍ମାନ ଦିଆଯାଉଥିଲା ଓ ସେମାନଙ୍କ ଦୁଷ୍ଟାମିକୁ ଆନନ୍ଦର ସହିତ ଗ୍ରହଣ କରାଯାଉଥିଲା । ସେତେବେଳେ ସେଠାରେ ଯଦି କାହାରିକୁ 'ହି ଇଜ ବ୍ୟାଡ୍' କୁହାଯାଉଥିଲା, ସେତେବେଳେ ସମସ୍ତେ ବୁଝୁଥିଲେ ତାକୁ ପ୍ରକୃତରେ କୁହାଯାଉଛି 'ହି ଇଜ୍ ଗୁଡ' ।

ଏହାର ଏକ ଓଲଟା ଉଦାହରଣ ହେଉଛି ଆମ ଘର ପାଖର; ସତ୍ୟବାଦୀ ବନ ବିଦ୍ୟାଳୟକୁ ନେଇ । ଗୋପବନ୍ଧୁ ଏହାର ଛାତ୍ରାବାସରେ ପିଲାମାନଙ୍କ ପାଇଁ କଠୋର ନୀତି ନିୟମ ରଖିଥିଲେ ଏବଂ ଏହା ଯେପରି ସଂପୂର୍ଣ୍ଣ ଭାବରେ ପାଳିତ ହେବ, ସେଥିପାଇଁ ମନିଟର ନିଯୁକ୍ତ କରୁଥିଲେ । ମଜାର କଥା ଯେ କୌଣସି ଛାତ୍ର ଦୁଷ୍ଟ ବୋଲି ଧରା ହେଲେ ତାକୁ ମନିଟର କରିଦିଆଯାଉଥିଲା ଯାହା ଦ୍ୱାରା ସେ ଅନ୍ୟ ପିଲାଙ୍କ ଉପରେ ଦୃଷ୍ଟି ରଖିବା ସହିତ ନିଜେ ମଧ୍ୟ ସୁଧୁରି ଯିବ । ପିଲାମାନେ କିନ୍ତୁ ଏ ଭଳି ମନିଟରଙ୍କୁ ଥଟ୍ଟା କରି 'ଆଦର୍ଶ' ବୋଲି ଡାକୁଥିଲେ ଏବଂ ସେ ସମୟରେ ସେଠାରେ ଆଦର୍ଶ ଗୋଟିଏ ଘୃଣାବ୍ୟଂଜକ ଶବ୍ଦ ହୋଇଯାଇଥିଲା ।

॥ **ବଜାର ମିଡିଆ ଓ ସାହିତ୍ୟ** ॥ ବଜାରକୁ ନୂଆ ଶବ୍ଦ ଆସିବା ବେଳେ ସେମାନେ କାହାରିକୁ ପଚାରି ନଥାନ୍ତି ବା କୌଣସି ଅନୁମତି ନେଇ ନଥାନ୍ତି । ସ୍କୁଲ କଲେଜ ହାଟ ଖଟି ରାସ୍ତାଘାଟରୁ ବାହାରି ସେମାନେ ଆସ୍ତେ ଆସ୍ତେ ସବୁ ଆଡ଼କୁ ବ୍ୟାପି ଯାନ୍ତି ।

ବର୍ତ୍ତମାନ ସମାଲୋଚନା ହେଉଛି ଯେ ଓଡ଼ିଆ ମିଡିଆରେ, ବିଶେଷରେ ଟେଲିଭିଜନ ଚ୍ୟାନେଲମାନଙ୍କରେ ଓଡ଼ିଆ ଭାଷାକୁ ବିକୃତ ଭାବରେ ପରିବେଷଣ କରଯାଉଛି । ଆମର ବୁଝିବା ଉଚିତ ଯେ ଟେଲିଭିଜନ ହେଉଛି ଏକ ବ୍ୟବସାୟ;

ଏହାର ଗରାଖ ହେଉଛନ୍ତି ଦର୍ଶକ । ଗରାଖର ଚାହିଦାକୁ ଚାହିଁ ସଉଦା ଯୋଗାଇବା ସବୁ ବେପାରର କାମ । ସଂସ୍କୃତି ସାହିତ୍ୟ ସଦାଚାର ଟେଲିଭିଜନର ଲକ୍ଷ୍ୟ ନୁହେଁ; ତାର ଲକ୍ଷ୍ୟ ଟିଆରପି । ଟେଲିଭିଜନ ଚ୍ୟାନେଲରେ ବା ମେଳା ମଉଛବରେ ସଂଯୋଜକ ଓ ଉଦ୍‌ଘୋଷକ ଯେଉଁ ବାରମିଶା ସଙ୍କର ଭାଷା ବ୍ୟବହାର କରୁଛନ୍ତି, ତାକୁ ସେମାନେ ତିଆରି କରୁନାହାନ୍ତି । ବଜାରର ଭାଷାକୁ ନେଇ ସେମାନେ ତାକୁ ସେଇ ବଜାରକୁ ଫେରାଇ ଦେଉଛନ୍ତି ।

ଆମର ଛପା ମିଡ଼ିଆ ଖବରକାଗଜ ଓ ପତ୍ରପତ୍ରିକା ଏ ପର୍ଯ୍ୟନ୍ତ ଏ ଭଳି ଭାଷାକୁ ଗ୍ରହଣ କରିନାହାନ୍ତି । ବଜାରର ସବୁ ନୂଆ ଶବ୍ଦ ଓ ପ୍ରୟୋଗ ଅବିଳମ୍ବେ ଟେଲିଭିଜନ ପର୍ଦାକୁ ଆସି ଯାଉଥିବା ବେଳେ ସେଥିରୁ ମାତ୍ର ଅଳ୍ପ କିଛି ଖବରକାଗଜ ପୃଷ୍ଠାକୁ ଆସୁଛନ୍ତି । ଆମର ସଂସ୍କୃତି ଓ ଭାଷାର ସଜଗ ପ୍ରହରୀମାନେ ଏହି ସାମାନ୍ୟ ଅନୁପ୍ରବେଶକୁ ମଧ୍ୟ ବିରୋଧ କରି ଆସୁଛନ୍ତି । ତେବେ ପୀଢ଼ୀ, ନାରା, କେଳେଙ୍କାରି, ଠୋସ ଭଳି ଶବ୍ଦ ଏ ଭିତରେ ଆମର ଦେହସୁହା ହୋଇଗଲାଣି ।

ନୂଆ ଶବ୍ଦରୁ କିଛି ସାହିତ୍ୟ ଭିତରକୁ ମଧ୍ୟ ପଶିବାକୁ ଚେଷ୍ଟା କରୁଛନ୍ତି । କିନ୍ତୁ ଏ ଦୁର୍ଗଟି ଆହୁରି ଦୁର୍ଜେୟ ଓ ଶୁଦ୍ଧ ଭାଷାର ଦ୍ୱାରପାଳଙ୍କ ଦ୍ୱାରା ପରିବେଷ୍ଟିତ । ତେଣୁ ଭାଷା ସେଠାରେ ସୁରକ୍ଷିତ ରହିଛି ବୋଲି କୁହାଯାଇପାରେ ।

ଶବ୍ଦର କିନ୍ତୁ ଶେଷ ଗନ୍ତବ୍ୟସ୍ଥଳ ହେଉଛି ଅଭିଧାନ । ପ୍ରତିଟି ଶବ୍ଦ ସେଠାରେ ପହଞ୍ଚିବାକୁ ଚାହେଁ ଏବଂ ତାର ପୃଷ୍ଠାରେ ମୁଣ୍ଡ ଗୁଞ୍ଜି ପାରିଲେ ଆଶ୍ୱସ୍ତ ରହେ ଯେ ସେ ଚିରଂଜୀବୀ ହେବାର ବର ପାଇସାରିଛି । କିନ୍ତୁ ଯେପରି ପୂର୍ବରୁ କୁହାଯାଇଛି ଅଭିଧାନରେ ଆସନ ଜମାଇ ବସିଥିବା ଶବ୍ଦ ମଧ୍ୟ କେତେବେଳେ କାଳର କବଳରେ ପଡ଼ିପାରେ ।

॥ **ଶବ୍ଦ ପୁଂଜର ଜୀବନ ଓ ମୃତ୍ୟୁ** ॥ ଅନେକ ସମୟରେ ନୂଆ ଶବ୍ଦ ଯେତିକି ଜାକଜମକ ଆଡ଼ମ୍ବରରେ ଆସିଥାଏ, ପୁଣି ସେତିକି ଅଳ୍ପ ସମୟରେ କାହାକୁ ନ ଜଣାଇ କୁଆଡ଼େ ଉଭେଇଯାଏ । ଏ ସମ୍ବନ୍ଧରେ ବିଭିନ୍ନ ସମୟରେ ପ୍ରଚଳିତ କିଛି ଶବ୍ଦ ପୁଞ୍ଜର ଉଦାହରଣ ନିଆଯାଇପାରେ ।

ଗତ ଶତାବ୍ଦୀର ପଚାଶ ଦଶକ ବେଳକୁ ଓଡ଼ିଆରେ ଗୋଟିଏ ଅତି ଜଣାଶୁଣା ଓ ବହୁ ବ୍ୟବହୃତ ଉକ୍ତି ଥିଲା 'ବାବାରେ ଆଲୁଅ' ଯାହା ବର୍ତ୍ତମାନ ଶୁଣାଯାଏ ନାହିଁ । ଏହା କୁଆଡ଼େ ଆରମ୍ଭ ହୋଇଥିଲା ସେ ସମୟରେ ହାରମୋନିଅମ ଧରି

ଗୀତ ଗାଇ କଟକର ଗଳିରେ ଚଟି ବହି ବିକ୍ରି କରୁଥିବା ହମିଦ ମିଆଁଙ୍କ ଲେଖାରୁ । ସତୁରୀ ଦଶକରେ ଏହା ଓଡ଼ିଆ ଚଳଚ୍ଚିତ୍ରର ସଂଳାପ ଓ ଗୀତରେ ପ୍ରବେଶ କଲା ଏବଂ କିଛି ବର୍ଷ ପରେ ଆସ୍ତେ ଆସ୍ତେ ଲୋକେ ତାକୁ ପାଶୋରି ଗଲେ ।

ସତୁରୀ ଦଶକରେ ଆସିଲା 'କୋଉଠି ଥୋଇବି' ପ୍ରଥମେ ଗୀତରେ ଓ ପରେ ହାସ୍ୟ ଅଭିନେତାଙ୍କ ମୁହଁରେ ଓ ଅଳ୍ପ ସମୟରେ ବ୍ୟାପିଗଲା । ସେ ଉକ୍ତିଟି ମଧ୍ୟ କାଳକ୍ରମେ ମରି ହଜି ଗଲା । ଏବେ ବଜାରରେ ସଜ ମିଳୁଛି 'କ'ଣ କଲା ସେ' । ଗୁଗ୍‌ଲରେ ଖୋଜିଲେ ଏଥିପାଇଁ  ପାଞ୍ଚ ଲକ୍ଷରୁ ବେଶି ହିଟ୍ ।

ଏଥିରୁ ଜଣାଯିବ ଯେ ଲୋକଙ୍କ ବଜାରବୋଲି, ଗାୟକଙ୍କ କଣ୍ଠରେ ଗୀତ ଓ ଚଳଚ୍ଚିତ୍ରର ସଂଳାପ ଆଗପଛ ହୋଇ ବିଭିନ୍ନ କ୍ରମ ଦେଇ ସଂକ୍ରାମକ ହୋଇଯାନ୍ତି । ସେମାନଙ୍କର ଶକ୍ତି ସକ୍ରିୟ ରହେ ଆଉ କିଛି ଶବ୍ଦ ଆସି ସେମାନଙ୍କୁ ବିସ୍ଥାପିତ କରିବା ପର୍ଯ୍ୟନ୍ତ ।

ଉପରେ ଅବୋଲକରା ଶବ୍ଦମାନଙ୍କର ବିଭିନ୍ନ ପ୍ରକାରର ଔଦ୍ଧତ୍ୟ, ଚପଳତା ଓ ଦୌରାତ୍ମ୍ୟର କେତୋଟି ମାତ୍ର ଉଦାହରଣ ଦିଆଗଲା । ଆମେ ସେମାନଙ୍କୁ ବଶ କରିବାକୁ ଚେଷ୍ଟା କରୁ, କିନ୍ତୁ ସେମାନେ ଓଲଟା ଛଳ, କୌତୁକ, ଘଟ ପରିବର୍ତ୍ତନ, ସମ୍ମୋହନ ଓ ଇନ୍ଦ୍ରଜାଲ ଦେଇ ଆମ କବଳରୁ ବାହାରି ଯାନ୍ତି । ଲେଖକ ବିଚରା ହାର ମାନେ ଓ ହମ୍‌ଟି ଡମ୍‌ଟିକୁ କହେ, ମୁଁ କିଛି ନୁହେଁ; ଶବ୍ଦ ହିଁ ମୋର ମାଲିକ ।

(ଏହି ଲେଖାଟି ଲେଖିବା ବେଳେ ମୁଁ ଏହାର ଶିରୋନାମା ରଖିଥିଲି 'ଶବ୍ଦଙ୍କର ସ୍ୱାୟତ୍ତ ସଂସାର' । ତା' ପରେ ମୋର ମନେ ପଡ଼ିଗଲା ଯେ ଅନେକ ଦିନ ତଳେ ଉପେନ୍ଦ୍ର ଭଂଜଙ୍କ ଉପରେ ଲେଖିଥିବା ଗୋଟିଏ କବିତାରେ ମୁଁ 'ସାର୍ବଭୌମ ଶବ୍ଦର ସାମ୍ରାଜ୍ୟ' ବ୍ୟବହାର କରିଥିଲି । ତାଙ୍କ ସମ୍ମାନରେ ମୁଁ ଶିରୋନାମା ବଦଳାଇ ଦେଲି । ଏ ଲେଖାଟି ସେହି କବିସମ୍ରାଟ୍‌ଙ୍କୁ ନିବେଦିତ ।)

*ଜୁନ୍, ୨୦୧୬*

# କବି ହେବାର ବାସନା

ରାଧାମୋହନ ଗଡ଼ନାୟକଙ୍କର ଗୋଟିଏ କବିତାର ଆରମ୍ଭ ହେଲା, କବି ହେବା ପାଇଁ ବାସନା ମୋର, ପ୍ରବଳ ଭାରିରେ ପ୍ରବଳ ଭାରି । କବି ହେବାର ଇଚ୍ଛା କେବଳ ସାଧାରଣ ଲୋକଙ୍କ ଭିତରେ ସୀମିତ ନୁହେଁ । ପୃଥିବୀର ଅନେକ ମହାନ ପୁରୁଷ ମଧ୍ୟ କବିତା ଲେଖାରେ ହାତ ଦେଇଛନ୍ତି । ଏଥିରୁ କେତୋଟି ଆମୋଦଦାୟକ ଉଦାହରଣ ତଳେ ଦିଆଗଲା :

ମହାତ୍ମା ଗାନ୍ଧୀ :

Rasiklal Harilal Mohandas Karamchand Gandhi
Had a goat in his keeping
The goat would not be milked
And Gandhi would not stop his weeping.

ସ୍ୱାମୀ ବିବେକାନନ୍ଦ :

I look behind and after
And find that all is right
In my deepest sorrows
There is a soul of light.

ବର୍ଟ୍ରାଣ୍ଡ ରସେଲ :

Through the long years
I sought peace.
I found ecstacy, I found anguish,
I found madness...

(୧୭ ଧାଡ଼ି କବିତାର ପ୍ରଥମ ଚାରିଧାଡ଼ି)

ଇଂରେଜ କବି ଶେଲି କହିଥିଲେ, କବି ହେଉଛନ୍ତି ପୃଥିବୀର ଅସ୍ୱୀକୃତ ବିଧାୟକ । ଏହାର ଜବାବରେ ବିଧାୟକ ଓ ନେତାମାନେ କଲମ ବ୍ୟବହାର କରି ଜଣାଇ

ଦେଇଛନ୍ତି ଯେ ସେମାନେ ମଧ୍ୟ କବି । ମାଓ ସେ ତୁଙ୍ଗ, ହୋ ଚି ମିନ ଓ ଚେ ଗୁଏଭାରାଙ୍କ କବିତା ଜଣାଶୁଣା । କାର୍ଲ ମାର୍କ୍ସ ତାଙ୍କ ପ୍ରଥମ ଜୀବନରେ ଗୀତି କବିତା ଲେଖୁଥିଲେ । ଆମର ମଧୁବାବୁ 'ମାଆ ମାଆ ବୋଲି' ଓ 'ତୁ ପରା ବୋଲାଉ' ଭଳି କେତୋଟି ଦେଶାତ୍ମବୋଧ ଗୀତ ଲେଖିଥିଲେ । ଅଟଳ ବିହାରୀ ବାଜପେୟୀ, ବିଶ୍ୱନାଥ ପ୍ରତାପ ସିଂହ, ଜାନକୀ ବଲ୍ଲଭ ପଟ୍ଟନାୟକ ଓ ନନ୍ଦିନୀ ଶତପଥୀଙ୍କର କବିତା ସଂକଳନ ଅଛି । ନିକଟ ଅତୀତରେ ପ୍ରକାଶ ପାଇଛି ନରେନ୍ଦ୍ର ମୋଦି ଓ ମମତା ବାନାର୍ଜୀଙ୍କର କବିତା ସଂକଳନ । ଏମାନଙ୍କ ମଧ୍ୟରୁ କେତେଜଣ ସାହିତ୍ୟ ଜଗତର ଅଧିବାସୀ ଏବଂ ଅନ୍ୟମାନେ ଅନୁପ୍ରବେଶକାରୀ ।

ପୂର୍ବତନ ରାଷ୍ଟ୍ରପତି ଅବଦୁଲ କଲାମ ମଧ୍ୟ କବିତାରେ ହାତ ଦେଇଥିଲେ । ସେ ରାଷ୍ଟ୍ରପତି ହେବା ବେଳେ ଖୁସ୍‌ୱନ୍ତ ସିଂହ ଲେଖିଥିଲେ, ବାଜପେୟୀ ପ୍ରଧାନମନ୍ତ୍ରୀ ହେବା ପରେ ସଦୟ ହୋଇ କବିତା ଲେଖା ଛାଡ଼ି ଦେଇଥିବା ଭଳି ଆଶା କରାଯାଉ ଯେ କଲାମ ମଧ୍ୟ କବିତା ଲେଖିବାର ଲଘୁ ଉଦ୍ୟମକୁ ବନ୍ଦ କରିବେ ।

ଏ ଭଳି ଲେଖାମାନଙ୍କୁ ଟାଣି ଓଟାରି ପଦ୍ୟ ସଂଜ୍ଞା ଦିଆଯାଇପାରେ, କଦାପି କବିତା ନୁହେଁ । କବିତା ଓ ପଦ୍ୟ ଯେ ଅଲଗା ଜିନିଷ ସେ କଥା ଆମର ଅନେକ ପୂର୍ବସୂରୀ ସୂଚାଇ ଯାଇଛନ୍ତି । ରାଧାନାଥ ରାୟ ଲେଖିଥିଲେ, 'ନବ୍ୟ ଉତ୍କଳୀୟ ସାହିତ୍ୟ କ୍ଷେତ୍ରରେ ୩/୪ଜଣ ଲେଖିକାଙ୍କ ଆବିର୍ଭାବ ଅବଶ୍ୟ ଶୁଭ ଲକ୍ଷଣ ବୋଲିବାକୁ ହେବ । ଏ ମାତ୍ର ଯେଉଁମାନେ ପଦ୍ୟ ଓ କବିତା ଏକ ପଦାର୍ଥ ବୋଲି ଭାବନ୍ତି, ସେମାନେ ଏହି ଲେଖିକାମାନଙ୍କୁ କବି ଆଖ୍ୟାରେ ଭୂଷିତ କରି ଏମାନଙ୍କର ପ୍ରଭୂତ ଅନିଷ୍ଟ ସାଧନ କରି ଅଛନ୍ତି ।' ସତ୍ୟବାଦୀ ପତ୍ରିକାରେ ଗୋପବନ୍ଧୁ ପ୍ରଶ୍ନ କରିଥିଲେ, 'ପଦ୍ୟ ଲେଖିବା ନିମନ୍ତେ ଆମ ଦେଶରେ ସମସ୍ତେ ପ୍ରସ୍ତୁତ, କିନ୍ତୁ ସେ ପଦ୍ୟରାଶି ମଧ୍ୟରେ କବିତା ଥାଏ କେତେ ?'

ପଦ୍ୟ ଓ କବିତା ଭିତରେ ଆକଶ ପତାଳ ପ୍ରଭେଦ । ପଦ୍ୟ ହେଉଛି ଛନ୍ଦବଦ୍ଧ ରଚନା । କବିତା ହେଉଛି ମନନଶୀଳ ଅବଧାରଣା ଯାହାର ମୌଳିକ ଆଧାର ସୂକ୍ଷ୍ମତା ଓ ବ୍ୟଂଜନା । ଅନେକ ଦିନ ତଳେ ପଣ୍ଡିତ କୃପାସିନ୍ଧୁ ମିଶ୍ର(୧୮୮୬-୧୯୨୬) ଏ ପ୍ରଭେଦକୁ ଅତି ସରଳ ଭାବେ ବୁଝାଇଥିଲେ :

'କବିତା ଓ ପଦ୍ୟ ଦୁହିଙ୍କ ମଧ୍ୟରେ ବହୁ ପ୍ରଭେଦ । ପଦ୍ୟ ଗଦ୍ୟର ବିପରୀତାର୍ଥକ ଶବ୍ଦ, କବିତା ତାହା ନୁହେଁ । କବିତା ପଦ୍ୟ ଓ ଗଦ୍ୟ ଉଭୟରେ ରହିପାରେ । ବିଶେଷତଃ ଉପନ୍ୟାସ ପାଠକମାତ୍ରେ ଏହାର ତଥ୍ୟ ହୃଦୟଙ୍ଗମ କରିଥିବେ । ଗଦ୍ୟରେ

ସ୍ଥାନେ ସ୍ଥାନେ ଏପରି କବିତ୍ୱ ଥାଏ, କବିତାରେ ତାହା ଥାଏ କି ନାହିଁ ସନ୍ଦେହ । ଛନ୍ଦ,ଯତିପାତ ଇତ୍ୟାଦି କବିତାର ବାହ୍ୟାଭରଣ ମାତ୍ର । ଯେଉଁମାନେ କବିତ୍ୱ ଉପଲବ୍ଧି ନିମନ୍ତେ କବିତା ପାଠ କରନ୍ତି, ସେମାନଙ୍କ ନିକଟରେ ଏ ସବୁର ମୂଲ୍ୟ ଅତି ଅଳ୍ପ ।'

ପାଶ୍ଚାତ୍ୟ ସାହିତ୍ୟରେ ମଧ୍ୟ Verse ଓ Poetryର ବିଭେଦ ବିଷୟରେ ଆଲୋଚନା ହୋଇଆସିଛି । କିପଲିଙ୍ଗଙ୍କ ବିଷୟରେ ଇଲିଅଟ କହିଥିଲେ, He is a good versifier, but not a poet । ଜେମ୍‌ସ ଜୟେସ୍‌ଙ୍କ ୟୁଲିସସ୍‌ର ଗଦ୍ୟକୁ କବିତା ବୋଲି କୁହାଯାଇଛି । ଜୟନ୍ତ ମହାପାତ୍ରଙ୍କର ଆତ୍ମଜୀବନୀ ପଢ଼ିବା ବେଳେ ତାଙ୍କର କବିତା ପଢ଼ିବା ଭଳି ମନେ ହୁଏ । ଆମର ଭକ୍ତି ସାହିତ୍ୟର ଅନେକ ଭଜନ ଓ ଜଣାଣ କବିତା ପଦବାଚ୍ୟ ନୁହନ୍ତି, କିନ୍ତୁ କବୀରଙ୍କର ଦୋହା ବିଶୁଦ୍ଧ କବିତା । ସାଲବେଗଙ୍କର "ହରିଣୀକି ଘୋର ବନେ ପଡ଼ିଥିଲା କଷଣ' ହେଉଛି ପଦ୍ୟ ଏବଂ 'ମୋ ଆରତ ନଳିନୀବନ୍‌କୁ କର ଦଳନ' ହେଉଛି କବିତା ।

ଏସବୁର ନିଷ୍କର୍ଷ ହେଲା ଯେ ସବୁ ପଦ୍ୟ କବିତା ନୁହେଁ ଏବଂ ସବୁ କବିତା ପଦ୍ୟରେ ଲେଖା ହୁଏ ନାହିଁ । ବାଂଲାକବି ଶକ୍ତି ଚଟ୍ଟୋପାଧ୍ୟାୟ ନିଜର କବିତାକୁ କାହିଁକି ପଦ୍ୟ କହୁଥିଲେ ସେ କଥା ତାଙ୍କୁ ହିଁ ଜଣା ।

ସେହିପରି କବି ହେବା ବା କବିତା ଲେଖିବା ଭିତରେ ମଧ୍ୟ ପ୍ରଭେଦ ଅଛି । କବିତା ଲେଖନ୍ତୁ ନ ଲେଖନ୍ତୁ ସମସ୍ତେ କବିର ଜୀବନ ଚାହାନ୍ତି, କାରଣ ଜନମାନସରେ କବିର ଏକ ରୋମାଣ୍ଟିକ ଭାବମୂର୍ତ୍ତି ଅଛି । କବି କହିଲେ ଆମ ମନକୁ ଆସନ୍ତି ଭାଙ୍ଗ ପିଇ ପୁରୀ ସମୁଦ୍ର ବାଲିରେ ଗଡୁଥିବା ଭକ୍ତ କବିଙ୍କଠାରୁ ଆରମ୍ଭ କରି ବାଇରନ୍, ଶେଲି, ଗିନ୍‌ସ୍‌ବର୍ଗ ଓ ପ୍ୟାସା ଫିଲ୍ମର ଗୁରୁଦତ୍ତଙ୍କ ପର୍ଯ୍ୟନ୍ତ । କବିତା ଲେଖିବା କଷ୍ଟସାଧ୍ୟ କାମ ହୋଇପାରେ, କିନ୍ତୁ ଫିଲ୍ମରେ କଷ୍ଟ୍ୟୁମ୍ ଡିଜାଇନ୍‌ର କଳ୍ପନା କରିଥିବା ପୋଷାକ ପିନ୍ଧିବା ଓ ମଦ୍ୟପାନ କରିବା ଅତ୍ୟନ୍ତ ସହଜ । ସେଥିପାଇଁ ସଭା ସମିତି ଓ ଲୋକଙ୍କ ମେଳରେ କୁର୍ତ୍ତା ପାଇଜାମା ପିନ୍ଧା, ନୁଖୁରା ବାଳ ଓ କାନ୍ଧରେ ଝୋଲା ଥିବା ଅଜଣା ଲୋକଙ୍କୁ ସମସ୍ତେ କବି ହୋଇଥିବ ପରା ବୋଲି ଭାବି ନିଅନ୍ତି ।

ଏହିପରି କବି ବୋଲା ହେବାକୁ ଲକ୍ଷ୍ୟ ରଖିଥିବା ଯୁବକଙ୍କ ପାଇଁ ଇଲିଅଟ୍ କହିଥିଲେ : 'ଏହା ଏକ ବିପଜ୍ଜନକ ଲକ୍ଷ୍ୟ, କାରଣ ଏହା କେବଳ ଅନ୍ୟମାନଙ୍କ

ଦ୍ୱାରା ପ୍ରଶଂସା ପାଇବା ଓ ନିଜକୁ ପ୍ରଶଂସା କରିବାର ଇଚ୍ଛା । ଏହାଠାରୁ ଉତ୍ତମ ଲକ୍ଷ୍ୟ ହେବ ଗୋଟିଏ ଭଲ କବିତା ଲେଖି ପାରିବା ।'

ଅବଶ୍ୟ ସେମାନଙ୍କ ଭିତରୁ କିଛି ଲୋକ କବିତା ଲେଖିବା ପାଇଁ ଚେଷ୍ଟା କରନ୍ତି; କିଛି ସେଥିପାଇଁ ପ୍ରଶିକ୍ଷଣ ନିଅନ୍ତି । ମତେ ସ୍ୱର୍ଗତ ଅନୁପ ସିଂହ ଦେଓ କହୁଥିଲେ ଯେ ତାଙ୍କ ବାପା ଖଡ଼ିଆଳ ରାଜା ତାଙ୍କୁ କବିତା ଲେଖା ଶିଖାଇବା ପାଇଁ ରାଧାମୋହନ ଗଡ଼ନାୟକଙ୍କୁ ଆଣି ନିଜର ଅତିଥି କରି ରଖିଥିଲେ ଏବଂ ଅନୁପ ତାଙ୍କ ମାର୍ଗ ଦର୍ଶନରେ ଦୁଇ ତିନିଟି କବିତା ବହି ଲେଖିଥିଲେ । ଅବଶ୍ୟ ଏ ଭଳି କବିତା ଲେଖାର ଶିକ୍ଷା ସବୁବେଳେ ସଫଳ ହୋଇନଥାଏ ।

ଜଣେ ପଣ୍ଡିତ ଯାଇ କର୍ଣ୍ଣାଟକ ରାଜାଙ୍କ ରାଜକବି ବିଲ୍‌ହଣଙ୍କୁ କବିତା ଲେଖିବାର ପଦ୍ଧତି ଶିଖାଇବା ପାଇଁ କହିଲେ । ବିହ୍ଲଣ କହିଲେ, କବିତାରେ ଚାରିଟି ଚରଣ ଥାଏ, ରସ ଥାଏ, କ୍ରିୟାପଦ ଥାଏ । ପଣ୍ଡିତ କବିତା ଲେଖିଲେ 'ଦୁଗ୍‌ଧଂ ପିବତି ବିଡ଼ାଳଃ' : ବିରାଡ଼ିର ଚାରିଟି ଚରଣ, ଦୁଗ୍ଧ ହେଉଛି ରସ ଏବଂ ପିଇବା ହେଉଛି କ୍ରିୟାପଦ !

କବିତା କିପରି ଲେଖିବ ସେ ବିଷୟରେ ଅନେକ ଲେଖକ ବିଭିନ୍ନ ପ୍ରକାରର ଉପଦେଶ ଦେଇଛନ୍ତି । ଏଜରା ପାଉଣ୍ଡଙ୍କ ଭଳି ବିଶିଷ୍ଟ କବିମାନଙ୍କର ମାଳ ମାଳ ଚିଠି ଅଛି ନୂଆ ନୂଆ କବିତା ଲେଖୁଥିବା କବିଙ୍କ ପାଇଁ । ବଙ୍ଗଳାରେ କବି ନୀରେନ୍ଦ୍ର ନାଥ ଚକ୍ରବର୍ତ୍ତୀଙ୍କର ବହି ଅଛି **କବିତାର କ୍ଲାସ** । ନୂଆ କବି ପାଇଁ କବିତା କର୍ମଶାଳା କରାଯାଇଥାଏ । ସେମାନେ ବରିଷ୍ଠ କବିଙ୍କ ପାଖକୁ ଲେଖା ପଠାଇଥାନ୍ତି ସଂଶୋଧନ ପାଇଁ । ଆମର ଉପେନ୍ଦ୍ର ଭଂଜ କବିଙ୍କ ପାଇଁ ଏକ ବିଶେଷ ଶବ୍ଦକୋଷ ତିଆରି କରିଥିଲେ, ଗୀତାଭିଧାନ । ଏଥିରେ ଶବ୍ଦର ପ୍ରାନ୍ତ ଅକ୍ଷର ମେଳ ଖାଉଥିଲା । ଯଥା, ଜାନ୍ତ ବା ଜ-ଅନ୍ତ ଶବ୍ଦ ତାଲିକାରେ ଥିଲା କଂଜ, ଖଂଜ, ପରଂଜ ଭଳି ଶବ୍ଦ ଯାହା କବିକୁ ଛନ୍ଦ ମିଳାଇବାରେ ସାହାଯ୍ୟ କରିବ ।

ଆମର ପ୍ରାଚୀନ ସଂସ୍କୃତ ଶାସ୍ତ୍ରଜ୍ଞମାନେ କବିମାନଙ୍କ ପାଇଁ ବିଭିନ୍ନ ପ୍ରକାରର କଠିନ ନୀତି ନିୟମ ନିର୍ଦ୍ଧାରଣ କରି ଯାଇଛନ୍ତି । ଦଣ୍ଡୀନ୍(ଅଷ୍ଟମ ଶତାବ୍ଦୀ, **କାବ୍ୟାଦର୍ଶ**)ଙ୍କ ମତରେ କବି ହେବା ପାଇଁ ଲୋଡ଼ା ପ୍ରତିଭା, ବ୍ୟୁତ୍ପତ୍ତି ଓ ଅଭ୍ୟାସ; ପ୍ରତିଭା ନଥିଲେ ମଧ୍ୟ ଅନ୍ୟ ଦୁଇଟି ଦ୍ୱାରା ଜଣେ କବି ହୋଇପାରିବ । ବାମନ(ନବମ ଶତାବ୍ଦୀ, **କାବ୍ୟାଳଂକାର ସୂତ୍ରବୃତ୍ତି**) କବି ହେବା ପାଇଁ କଣ କଣ ଦରକାର ତାର ଏକ ତାଲିକା ଦେଇଛନ୍ତି : ସାଂସାରିକ ଜ୍ଞାନ, ବ୍ୟାକରଣ, ଅଭିଧାନରୁ ଶବ୍ଦର

ପ୍ରକୃତ ଅର୍ଥ, ଛନ୍ଦ ତତ୍ତ୍ୱ ଇତ୍ୟାଦି ଇତ୍ୟାଦି । ରାଜଶେଖର(ଦଶମ ଶତାବ୍ଦୀ) ତାଙ୍କର **କାବ୍ୟମୀମାଂସା** ଗ୍ରନ୍ଥରେ କବି-ଶିକ୍ଷା ନାମକ ଏକ ଅଧ୍ୟାୟ ରଖିଛନ୍ତି ଯେଉଁଥିରେ କବି ହେବା ପାଇଁ କି କି ପ୍ରସ୍ତୁତି ଦରକାର ସେ କଥା କହିଛନ୍ତି : କବି ଜଣେ ଉପାଧ୍ୟାୟଙ୍କ ପାଖରୁ ବ୍ୟାକରଣ, ନିରୁକ୍ତ, କୋଷ, ଅଳଂକାର, ଛାନ୍ଦ ଓ କାବ୍ୟଶାସ୍ତ୍ର ବିଷୟମାନ ଅଧ୍ୟୟନ କରିବ; କଳା, ସଂଗୀତ, କାମଶାସ୍ତ୍ର, ନ୍ୟାୟ, ଅର୍ଥଶାସ୍ତ୍ର ମଧ୍ୟ ତା'ର ପ୍ରଶିକ୍ଷଣର ଅଂଶ ହେବ । ଏ ସବୁ ବ୍ୟବସ୍ଥା ପତ୍ରରୁ ଜଣାଯିବ ଯେ କବି ହେବା କିଛି ସହଜ କଥା ନୁହେଁ ।

ମୋ ମତରେ ଉଦୀୟମାନ କବିଙ୍କ ପାଇଁ ଏକମାତ୍ର ଉପଦେଶ ହେବା ଉଚିତ, କବିତା ପଢ଼ । ଏ ଉପଦେଶ କିଛି ନୂଆ କଥା ନୁହେଁ । ଭାମହ(ଷଷ୍ଠ ଶତାବ୍ଦୀ) ତାଙ୍କର **କାବ୍ୟାଳଂକାର**ରେ କହିଥିଲେ, ବିଲୋକ୍ୟ ଅନ୍ୟ ନିବନ୍ଧାଂଶ୍ଚ । **କବିକଣ୍ଠାଭରଣ**ରେ କ୍ଷେମେନ୍ଦ୍ର (ଏକାଦଶ ଶତାବ୍ଦୀ)ଙ୍କର ଉପଦେଶ ଥିଲା, "ପଠେତ୍ ସମସ୍ତାନ କାଳିଦାସକୃତ ପ୍ରବନ୍ଧାନ୍ ।

ଏ ଭଳି ପ୍ରସ୍ତୁତି ବିନା ଭଲ କବିତା ଲେଖିବା ସମ୍ଭବ ନୁହେଁ । ପ୍ରଥମରେ ଦିଆଯାଇଥିବା ଗଡ଼ନାୟକଙ୍କ କବିତାର ଶେଷଧାଡ଼ି ଥିଲା, କବି ହେବା ପାଇଁ ବାସନା ମୋର, କବିତା କରେ ମୁଁ କବିତା କରେ । ବିନା କଠୋର ପରିଶ୍ରମରେ ଜଣେ ହୁଏ ତ କବିତା 'କରି ପାରିବ', କିନ୍ତୁ 'କବିତା' ଲେଖିପାରିବ ନାହିଁ । ଅର୍ଥାତ୍ ସେ ପଦ୍ୟକାର ହେଲେ ହୋଇଯାଇପାରେ, କବି ନୁହେଁ । କବି ହେବା ପାଇଁ ବାସନା ରଖୁଥିବା ଲୋକଟି ପାଇଁ ଆଉ ଜଣେ ପ୍ରସିଦ୍ଧ କବିଙ୍କର ଭାଷାରେ କୁହାଯାଇପାରେ, ହାୟରେ ତରୁଣ କବିର ଆଶା !

*ଜୁନ୍ ୨୦୧୬*

(କବି ହେବାର ବାସନା ଓ ତହିଁରୁ ମୋହଭଙ୍ଗ ହେବାର ଗୋଟିଏ ରୋଚକ ଉଦାହରଣ ତଳେ ଦିଆଗଲା ।)

## କବି ହେବା ନୋହିଲା

ହାଇସ୍କୁଲରେ ପଢ଼ିବାବେଳକୁ ଜଣେ କବି ହେବାର ଆଶା ଥିଲା । ସରସ୍ୱତୀ ପୂଜା ସମୟରେ କେତେକ ଥର ଗୋଟିଏ ଲେଖାଏଁ କବିତା ରଚନା କରିଥିଲି ।

ସେଗୁଡ଼ିକ ଛପା ଯାଇଥିଲା । ଏପରିକି ଥରେ ସଂସ୍କୃତରେ ଗୋଟିଏ କବିତା ଲେଖି ତାହାକୁ ପଣ୍ଡିତ ଜଗନ୍ନାଥ ରଥଙ୍କ ଦ୍ୱାରା ସଂଶୋଧିତ କରାଇଥିଲି ଓ ତାହା ଛପାଯାଇଥିଲା । 'ସହକାର'ରେ ଏବଂ ଅନ୍ୟ ମାସିକ ପତ୍ରିକାରେ ମୋର କେତେକ କବିତା ପ୍ରକାଶ ପାଇଥିଲା । Scottଙ୍କ Lady of the Lake କାବ୍ୟକୁ ଓଡ଼ିଆରେ ଅନୁବାଦ କରି ସହକାରର ତତ୍କାଳୀନ ସଂପାଦକ ଶ୍ରୀ ବାଳକୃଷ୍ଣ କରଙ୍କୁ ଦେଇଥିଲି । ସେ ଦୁଇଟି ସର୍ଗ ସହ ତାଙ୍କ ପତ୍ରିକାରେ ପ୍ରକାଶ କରିଥିଲେ । ପରେ ସେହି କାବ୍ୟର ଅନ୍ୟ ଏକ ପଦ୍ୟାନୁବାଦ ପ୍ରକାଶ ପାଉଥିବା ଜାଣି ପରବର୍ତ୍ତୀ ସର୍ଗଗୁଡ଼ିକ ସେ ପ୍ରକାଶ କରି ନଥିଲେ । ପରେ ଅପର ଅନୁବାଦଟି 'ସରସସୁନ୍ଦରୀ' ନାମରେ ପ୍ରକାଶିତ ହୋଇଥିଲା । ମୋର ଅନୁବାଦର ନାମ ଥିଲା 'ସରସୀସୁନ୍ଦରୀ' । ବାସ୍ତବରେ 'ସରସସୁନ୍ଦରୀ' ଅନୁବାଦଟି ମୋ ଅନୁବାଦ ଅପେକ୍ଷା ଉଚ୍ଚକୋଟୀର ଥିଲା । ମୋର ପଦ୍ୟ ଲେଖାଗୁଡ଼ିକ ନିମ୍ନସ୍ତରର ବୋଲି ମୁଁ ଅନୁଭବ କରିଥିଲି । ଏହାପରେ କବିତାଲେଖା ଏକବାରେ ଛାଡ଼ିଦେଇଥିଲି । ବୌଦରେ ଥିବା ସମୟରେ ଅବସ୍ଥା ଚକ୍ରରେ ବାଧ ହୋଇ କେତେକ କବିତା ଲେଖିଥିଲି । ସେଗୁଡ଼ିକ ମଧ୍ୟରୁ କେତୋଟିର ନକଲ ନିମ୍ନରେ ଦିଆଯାଇଅଛି ।

**ଶ୍ରୀମାନ୍ ରାଜା ଶ୍ରୀ ନାରାୟଣପ୍ରସାଦ ଦେବଙ୍କ ସିଂହାସନ ପ୍ରାପ୍ତିର ଅଷ୍ଟମ ବାର୍ଷିକ ଉତ୍ସବ ଉପଲକ୍ଷେ**

**ଉଦ୍‌ଘାଟନ ଗୀତିକା**

ମଧୁର ମିଳନ-ଧନେ ଏ ଭୁବନ
ହସୁଛି ଆନନ୍ଦେ ଆଜି
ସରଗୁଁ ଆନନ୍ଦ ଧାରା ବହିଆସେ
ଜ୍ୟୋସ୍ନାମୂରତି ସାଜି ।୧।
ବଉଧ ନଗରୀ ନବପୁଲକେ
ଅପୂର୍ବ ସୁଷମା ମୋଦେ ବିଲୋକେ... ଇତ୍ୟାଦି

ବୌଦ୍ଧଦୁର୍ଗ
ତା. ୧୪/୩/୩୨

ଶ୍ରୀଧର ଦାସ

ଯେ କେହି ସମାଲୋଚକ ଏହାକୁ ପାଠକଲା ମାତ୍ରେ ଏହାର ନିରସତା ଓ କବିତ୍ୱହୀନତା ଉପଲବ୍ଧି କରିପାରିବେ ।

ମାସିକ ପତ୍ରିକାରେ ପ୍ରକାଶିତ ଆଉ ଗୋଟିଏ କବିତା ନିମ୍ନରେ ଦିଆଗଲା ।

**ରେଣୁ**

ରେଣୁ ! ତୁ ମୋହର ବାଲ୍ୟ ପରିଚିତ
ବାଲ୍ୟକାଳୁ ମୋର ସାଧୁଅଛୁ ହିତ ।
ତେଜିଲା ମାତ୍ରକେ ଜନନୀ ଜଠର
ଆନନ୍ଦେ ଧରିଲୁ ରେଣୁ ଏ ଶରୀର ।... ଇତ୍ୟାଦି

୧୯୨୯ ମସିହା ସହକାରର ପଞ୍ଚମ ସଂଖ୍ୟାରେ ପ୍ରକାଶିତ । ମୋର କବିତା ଯେ ଏପରି କବିତ୍ୱହୀନ, ତାହା ଏଥିରୁ ପ୍ରମାଣିତ ହେବ ।

(ଶ୍ରୀଧର ଦାସ, ସୁଅ ମୁହଁରେ ପତର)

# ବେଶ ପୋଷାକର ରାଜନୀତି

ନିକଟରେ ମୁକ୍ତି ଲାଭ କରିଥିବା କବାଲି ଫିଲ୍ମରେ ସୁପରଷ୍ଟାର ରଜନୀକାନ୍ତ ସବୁ ସମୟରେ ଥ୍ରୀ-ପୀସ୍ ସୁଟ୍‌ରେ ଦେଖାଯାନ୍ତି । ଏହି ପୋଷାକ ବିଷୟରେ ସେ ଫିଲ୍ମର ଖଳନାୟକକୁ କହନ୍ତି, ଗାନ୍ଧୀ ତାଙ୍କର କୁର୍ତ୍ତା ପରିତ୍ୟାଗ କଲେ ଓ ଆମ୍ବେଦକର ସୁଟ ପରିଧାନ କଲେ, ଉଭୟର କାରଣ ହେଉଛି ରାଜନୀତି । ଏହି ଫିଲ୍ମର ଅନ୍ୟତ୍ର ସ୍କୁଲ ପିଲାମାନଙ୍କ ପ୍ରଶ୍ନର ଉତ୍ତରରେ ସେ କହୁଛନ୍ତି, ଖରାଦିନେ ବି ମୁଁ ସୁଟ ପିନ୍ଧେ କାରଣ ଜଣେ ନୀଚ ବର୍ଗର ଲୋକ ଭାବରେ ମୁଁ ଏହାଦ୍ୱାରା ମୋର ବକ୍ତବ୍ୟ ରଖିବାକୁ ଚାହେଁ ।

ଏ କଥା ସେ ଠିକ କହିଛନ୍ତି କାରଣ ସର୍ବସାଧାରଣ ସ୍ଥାନରେ ଆମ୍ବେଦକରଙ୍କ ଯେଉଁ ପ୍ରତିମୂର୍ତ୍ତିମାନ ସ୍ଥାପିତ ହୋଇଛି, ସେଥିରେ ଆମ୍ବେଦକର ସାହେବୀ ପୋଷାକରେ ଠିଆ ହୋଇଛନ୍ତି ଗୋଟିଏ ହାତରେ ସଂବିଧାନ ବହି ଧରି ଓ ଆର ହାତ ଉପରକୁ ଉଠାଇ । ଏ ମୂର୍ତ୍ତିକୁ ଦେଖି ପ୍ରତ୍ୟେକ ଦଳିତ ଗର୍ବର ସହିତ କହିପାରିବ, ତମେମାନେ ମତେ ଏପରି ଦୁଃସ୍ଥ ଅବସ୍ଥାରେ ଦେଖୁଚ, କିନ୍ତୁ ଛକ ଉପରେ ମୋ ଭାଇକୁ ଦେଖ, ସେ କେମିତି ସାହେବ ଭଳି ଛିଡ଼ା ହୋଇଛି । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ କେତେକ ଦଳିତ ନେତା ଦଳିତମାନଙ୍କର ଇଂରେଜୀ ଶିକ୍ଷା ଉପରେ ଗୁରୁତ୍ୱ ଦେଉଛନ୍ତି ।

ଜନନାୟକମାନଙ୍କର ପୋଷାକ ସବୁବେଳେ ଆଲୋଚନାର ବିଷୟ ହୋଇଥାଏ । ୧୯୨୧ ମସିହାରେ ଗାନ୍ଧୀ ଓଡ଼ିଶା ଆସିଥିବା ବେଳେ ବୋଲଗଡ଼ଠାରେ ତାଙ୍କୁ ଭେଟିବାକୁ ଆସିଥିଲା ଦାନ୍ତରେ ତିରଣ ଧରି ଜଣେ ଅଛୁଵ । ତାକୁ ଦେଖି ଅନେକ ଚିନ୍ତା କରିବା ପରେ ଗାନ୍ଧୀ ନିଷ୍ପତ୍ତି କଲେ ଯେ ସେ ନିଜେ ଆଣ୍ଠୁ ଲୁଚୁ ନଥିବା ଲୁଗା ପିନ୍ଧିବେ । ସେହି ଦିନଠାରୁ ସେ ଏହି ପୋଷାକରେ ରହିଲେ ଏବଂ ଚର୍ଚ୍ଚିଲ ତାଙ୍କୁ

ଉପହାସ କରି କହିଲେ, 'ଲଙ୍ଗଳା ଫକୀର' । ଗାନ୍ଧୀଜୀ ତାର ଉପଯୁକ୍ତ ଉତ୍ତର ଦେଇ ଲଣ୍ଡନରେ ପଞ୍ଚମ ଜର୍ଜଙ୍କୁ ଭେଟିବାକୁ ଯିବା ବେଳେ କହିଥିଲେ, ହିଜ ମ୍ୟାଜେଷ୍ଟି ଯେତେ ପୋଷାକ ପିନ୍ଧିଛନ୍ତି, ତା ଆମ ଦିହିଙ୍କ ପାଇଁ ଯଥେଷ୍ଟ ।

ଦକ୍ଷିଣ ଆଫ୍ରିକାରେ ଥିବା ବେଳେ ଗାନ୍ଧୀଜୀ ପଗଡ଼ି ଛାଡ଼ି ସାହେବୀ ଟୋପି ପିନ୍ଧିବା କଥା ଭାବିଥିଲେ, କିନ୍ତୁ ଅବଦୁଲ୍ଲା ସେଠ ତାଙ୍କୁ ବୁଝାଇଥିଲେ ଯେ ଏହା ଭାରତୀୟଙ୍କ ପାଇଁ କ୍ଷତିକାରକ ହେବ, କାରଣ ପଗଡ଼ି ସେମାନଙ୍କର ପୋଷାକର ଅଂଶ । ଗାନ୍ଧୀ ଯଦି ସାହେବୀ ଟୋପି ପିନ୍ଧନ୍ତି ତାଙ୍କୁ ଲୋକେ ହୋଟେଲର ୱେଟର ବୋଲି ଭାବିବେ । ଏ କଥା ଶୁଣିବା ପରେ ଗାନ୍ଧୀଜୀ ଦକ୍ଷିଣ ଆଫ୍ରିକାରେ ଥିବା ପର୍ଯ୍ୟନ୍ତ ମୁଣ୍ଡରେ ପଗଡ଼ି ପିନ୍ଧୁଥିଲେ ।

ଆମ ଦେଶରେ ପଗଡ଼ି ପିନ୍ଧିବା ଏକ ଗର୍ବର ବିଷୟ । ଓଡ଼ିଶାରେ ରାଜା ମହାରାଜାଙ୍କ ବ୍ୟତୀତ ପଗଡ଼ି ପିନ୍ଧୁଥିବା ଅନ୍ୟତମ ଲୋକ ଥିଲେ ମଧୁବାବୁ । ଉତ୍କଳ ସମ୍ମିଳନୀରେ ସଭ୍ୟମାନେ ବ୍ୟବହାର କରିବା ପାଇଁ ସେ ଗୋଟିଏ ଗୋଲାପୀ ରଂଗର ସୋଲ ତିଆରି ପଗଡ଼ି ଭଳି ଦିଶୁଥିବା ଟୋପି ତିଆରି କରାଇଥିଲେ । ଏହା କିନ୍ତୁ ଆଦୃତ ବା ବ୍ୟବହୃତ ହୋଇ ନଥିଲା ।

ଗାନ୍ଧିଜୀଙ୍କ ସମୟରେ ଖୁବ୍ କମ୍ ନେତା ତାଙ୍କ ଭଳି ପୋଷାକ ପିନ୍ଧୁଥିଲେ । ବିଲାତୀ ଲୁଗାକୁ ତ୍ୟାଗ କରିବାର ନିଷ୍ପତ୍ତି ଓ ତାକୁ ଜାଳି ଦେବାର ପର୍ବ ପରେ ୧୯୨୬ର ଗୌହାଟି ଅଧିବେଶନରେ ଖଦଡ଼ ପିନ୍ଧିବା କଂଗ୍ରେସ ସଭ୍ୟମାନଙ୍କ ପାଇଁ ବାଧ୍ୟତାମୂଳକ କରାଗଲା । ସେତେବେଳେ କଂଗ୍ରେସୀଙ୍କର ପୋଷାକ ଥିଲା ଧୋତି ବା ପାଇଜାମା ଓ ପଂଜାବୀ । ୧୯୭୧ରେ ଏଥିରେ ଏକ ପରିବର୍ତ୍ତନ ଅଣାଗଲା ଖଦି ବା ସ୍ୱଦେଶୀ । ୨୦୦୭ରେ ଏହାକୁ ଆହୁରି ଫିକା କରିବା ପାଇଁ ପ୍ରସ୍ତାବ ଆସିଲା ଖଦି ବା ସ୍ୱଦେଶୀ ବା ଭାରତରେ ତିଆରି ।

ସ୍ୱାଧୀନତା ପରେ ନେହରୁଙ୍କ ପୋଷାକ ରାଜନୈତିକ ନେତାଙ୍କ ପାଇଁ ଆଦର୍ଶ ହୋଇଗଲା । ମାଓ କୋଟ୍ ଭଳି ନେହରୁ ଜ୍ୟାକେଟ ଆନ୍ତର୍ଜାତିକ ଫେଶନ ଜଗତରେ ଜଣାଶୁଣା । ମୋର ମନେ ପଡୁଛି ଯେ ଗତ ଶତାବ୍ଦୀର ପଚାଶ ଦଶକରେ ଓଡ଼ିଶାରେ ମହତାବ ପିନ୍ଧୁଥିବା ସଫାରି ସୁଟ୍କୁ ସେତେବେଳେ ଲୋକେ ମହତାବୀ କୋଟ୍ ବୋଲି କହୁଥିଲେ । ନିକଟରେ ନରେନ୍ଦ୍ର ମୋଦିଙ୍କର ଦଶ ଲକ୍ଷ ଟଙ୍କାର ବନ୍ଦ ଗଳା କୋଟ୍ (ଯାହା ପରେ ୪ କୋଟି ୩୦ ଲକ୍ଷ ଟଙ୍କାରେ ନିଲାମ ହେଲା)

ସମାଲୋଚନାର ଶରବ୍ୟ ହୋଇଥିଲା ଏବଂ ବିରୋଧୀ ଦଳ ସୁଟ ବୁଟ କୀ ସରକାର ନାରା ଉଠାଇଥିଲେ ।

ନେତାମାନେ ସବୁବେଳେ ନିଜର ଏକ ଟ୍ରେଡ୍‌ମାର୍କ ପୋଷାକ ପିନ୍ଧନ୍ତି ଯାହା ତାଙ୍କୁ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର କରିଦେବ, ଯଥା ଆନ୍ନା ହଜାରେଙ୍କ ଗାନ୍ଧୀ ଟୋପି, ମମତା ବାନାର୍ଜୀଙ୍କର ହୱାଇ ଚପଲ, ମାୟାବତୀଙ୍କ ପର୍ସ, ରାଜନାରାୟଣଙ୍କ ମୁଣ୍ଡରେ ବନ୍ଧା ସବୁଜ ରୁମାଲ ଇତ୍ୟାଦି । ନେତାମାନେ ଯେଉଁ ଜାଗାକୁ ଯାନ୍ତି ସେଠାକାର ପୋଷାକ ପିନ୍ଧି ସ୍ଥାନୀୟ ଲୋକଙ୍କର ମନ ଜିଣିବାକୁ ଚେଷ୍ଟା କରିଥାନ୍ତି । ନେହରୁ ଏ ବିଷୟରେ ଧୂରନ୍ଧର ଥିଲେ; ଫଟୋରେ ତାଙ୍କୁ ଭାରତର ବିଭିନ୍ନ ଅଂଚଳର ପୋଷାକରେ ଦେଖିବାକୁ ମିଳିବ । ଏହାର ଗୋଟିଏ ବ୍ୟତିକ୍ରମ ଉଦାହରଣ ଅଛି: ନରେନ୍ଦ୍ର ମୋଦି ଥରେ ମୁଣ୍ଡରେ ମୁସଲମାନୀ ଟୋପି ଲଗାଇବାକୁ ମନା କରି ଦେଇଥିଲେ ।

ପୃଥିବୀର ଅନ୍ୟ ଦେଶମାନଙ୍କରେ ନେତାମାନେ ସାଧାରଣ ଲୋକଙ୍କ ଭଳି ପୋଷାକ ପିନ୍ଧିଥାନ୍ତି, କିନ୍ତୁ ଆମ ଦେଶରେ ପୋଷାକରୁ ଲୋକଟି ଜଣେ ନେତା ବୋଲି ଜାଣି ହୁଏ । ସ୍ୱାଧୀନତା ପୂର୍ବରୁ ଏ ପୋଷାକ ଥିଲା ପଡ଼ାର ଦର୍ଜି ସିଲାଇ କରିଥିବା ମୋଟା ଖଦଡ଼ର ବେଢ଼ଙ୍ଗ ପଂଜାବୀ, ପାଇଜାମା ବା ଧୋତି ଓ ଗାଁ ମୋଚି ତିଆରି କରିଥିବା ଚଟି । ବର୍ତ୍ତମାନ ପୋଷାକ ହେଉଛି ଦାମୀ କପଡ଼ାର ଡିଜାଇନର୍ କୁର୍ତ୍ତା ପାଜାମା ଏବଂ ରାଜୀବ ଗାନ୍ଧୀଙ୍କଠାରୁ ଆରମ୍ଭ କରି ପାଦରେ ବିଦେଶୀ ବ୍ରାଣ୍ଡର ସ୍ନୀକର । ତା ସହିତ ଋତୁ ଓ ପାଗ ନିର୍ବିଶେଷ ରଂଗ ବେରଂଗ ନେହରୁ ଜ୍ୟାକେଟ୍ । ବୈଦେଶିକ ସେବା ଅଫିସର ନଟବର ସିଂହ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ସେ କିପରି କଂଗ୍ରେସରେ ଯୋଗ ଦେବା ପୂର୍ବରୁ କୁର୍ତ୍ତା ପାଜାମା ଓ ଜୱାହର ଜ୍ୟାକେଟ ତିଆରି କରିଥିଲେ । ଓଡ଼ିଆରେ କଥା ଅଛି, ଭେକ ନଥିଲେ ଭିକ ମିଳେ ନାହିଁ । ତାକୁ ସାମାନ୍ୟ ବଦଳାଇ କୁହାଯାଇପାରିବ,ଭେକ ନଥିଲେ ଭୋଟ ମିଳେ ନାହିଁ ।

ପୋଷାକ ଭଳି ବାଳ ମଧ୍ୟ ନେତାଙ୍କର ଏକ ପ୍ରୟୋଜନୀୟ ଉପକରଣ । ଗତ ନିର୍ବାଚନ ପୂର୍ବରୁ ନରେନ୍ଦ୍ର ମୋଦି ମୁଣ୍ଡରେ ନକଲି ବାଳ ରୋପଣ କରିଥିବା ସମ୍ବାଦ ଇଣ୍ଟରନେଟ୍‌ରେ ଉପଲବ୍ଧ । ନିକଟରେ ହିଲାରୀ କ୍ଲିଣ୍ଟନ କହିଥିଲେ, ମୁଁ ଯଦି ମୋର ହେୟାର ଷ୍ଟାଇଲ୍ ବଦଳାଇ ଦିଏ, ଅତି ସହଜରେ ଖବରକାଗଜର ପ୍ରଥମ ପୃଷ୍ଠାକୁ

ଆସିଯାଇପାରିବି । ଚନ୍ଦା ହୋଇ ଆସୁଥିବା ଫ୍ରାନ୍ସର ପ୍ରେସିଡେଣ୍ଟ ଓଲାନ୍ଦେ ନିଜର ହେୟାର ଡ୍ରେସରକୁ ସରକାରୀ ତହବିଲରୁ ମାସକୁ ୧୦,୦୦୦ ୟୁରୋ ଦେଉଥିବାରୁ ସମାଲୋଚିତ ହୋଇଥିଲେ । ବର୍ତ୍ତମାନ ଆମେରିକା ପ୍ରେସିଡେଣ୍ଟ ନିର୍ବାଚନର ପ୍ରାର୍ଥୀ ଟ୍ରମ୍ପ୍‌ଙ୍କ ବାଳ ବିଷୟରେ ଆଲୋଚନା ହେଉଛି ଯେ ଚନ୍ଦାମୁଣ୍ଡକୁ ଢାଙ୍କିବା ପାଇଁ ଓ ଅସଂଯତ ବାଳକୁ ସମ୍ଭାଳିବା ପାଇଁ ସେ କ୍ଲିପ୍ ବ୍ୟବହାର କରୁଛନ୍ତି ।

ବାଳ ଭଳି ନିଶଦାଢ଼ି ମଧ୍ୟ ବେଶର ଏକ ବିଶେଷ ଉପାଦାନ । ଆଗକାଳର ଅନେକ କଂଗ୍ରେସ ନେତା ଦାଢ଼ି ରଖୁଥିଲେ, କଂଗ୍ରେସର ପ୍ରଥମ ସଭାପତି ଉମେଶ ଚନ୍ଦ୍ର ବ୍ୟାନାର୍ଜୀଙ୍କଠାରୁ ଆରମ୍ଭ କରି ଦାଦାଭାଇ ନାରୋଜି, ସୁରେନ୍ଦ୍ର ନାଥ ବ୍ୟାନାର୍ଜୀ, ବିନୋବା ଭାବେ ଇତ୍ୟାଦି । ଓଡ଼ିଶାରେ କଂଗ୍ରେସବାଲା ଦାଢ଼ି ରଖିବା ଅତି ସାଧାରଣ ଥିଲା, ଯଥା ଗୋପବନ୍ଧୁ, ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ ଇତ୍ୟାଦି । ଅନେକ ନେତା ନିଶ ମଧ୍ୟ ରଖୁଥିଲେ । ବ୍ରାହ୍ମଣ ସମାଜରେ ନିଶ ରଖିବା ପ୍ରଥା ନଥିବାରୁ ପଣ୍ଡିତ ନୀଳକଣ୍ଠ ଏଥିପାଇଁ ସମାଲୋଚିତ ହୋଇଥିଲେ ଏବଂ ମୋ ନିଶ ବୋଲି ଗୋଟିଏ ଲେଖା ଲେଖିଥିଲେ । ଦାଢ଼ି ଭଳି ଗହଳ ନିଶ ମଧ୍ୟ କିଛି ବିଶିଷ୍ଟ ଲୋକଙ୍କର ପ୍ରିୟ ଥିଲା । ଯଥା ଲାଲ୍ ଲଜପତ୍ ରାୟ, ବାଳ ଗଙ୍ଗାଧର ତିଳକ, ଗୋବିନ୍ଦ ବଲ୍ଲଭ ପନ୍ଥ ଓ ଆମର ଗୌରୀଶଙ୍କର ରାୟ, ରାଧାନାଥ ରାୟ ଓ ଗଙ୍ଗାଧର ମେହେର । ମଜାର କଥା ଯେ ନିଶ ଦାଢ଼ି ଆମେରିକାର ନେତାମାନଙ୍କର ପ୍ରିୟ ନୁହେଁ । ଗତ ଶହେ ବର୍ଷ ଭିତରେ ଯେତେ ଜଣ ଆମେରିକା ରାଷ୍ଟ୍ରପତି ହୋଇଛନ୍ତି ସମସ୍ତେ ମାଖୁନା ମୁହାଁ ।

ଫିଲ୍ମଷ୍ଟାରଙ୍କ ପୋଷାକ ସବୁବେଳେ ସାଧାରଣ ଲୋକଙ୍କ ରୁଚିକୁ ପ୍ରଭାବିତ କରିଥାଏ । କୁହାଯାଇଛି ଯେ ଇଟ୍ ହାପ୍‌ନ୍‌ଡ୍ ୱନ ନାଇଟ୍ ଫିଲ୍ମରେ କ୍ଲାର୍କ ଗେବ୍‌ଲ୍ ଜାମା ତଳେ ଗେଂଜି ପିନ୍ଧି ନ ଥିବା ଦେଖି ଅନେକ ଲୋକ ତାଙ୍କୁ ଅନୁକରଣ କଲେ ଏବଂ ଆମେରିକାରେ ଗେଂଜି ବିକ୍ରି କମିଗଲା । ଆମର ଏଠାରେ ଜୁଏଲ୍ ଥିଫ୍ ଫିଲ୍ମ ପରେ ଦେବାନନ୍ଦ ପିନ୍ଧିଥିବା ଟୋପିର ଚାହିଦା ବଢ଼ିଗଲା । ଆୱାରା ପରେ କିଛି ଦିନ ପ୍ୟାଣ୍ଟକୁ ତଳୁ ଭାଙ୍ଗି ପିନ୍ଧିବା ଏକ ଷ୍ଟାଇଲ୍ ହୋଇଯାଇଥିଲା ।

ଫିଲ୍ମଷ୍ଟାର ଓ ପପ୍ ଗାୟକ ମାନେ ସବୁବେଳେ ନିଜର ଚେହେରା ବିଷୟରେ ସଚେତନ ରହିବା ନିତାନ୍ତ ସ୍ୱାଭାବିକ । ସେଥିପାଇଁ ସେମାନେ ନିଜକୁ ଶଲ୍ୟ ଚିକିତ୍ସକଙ୍କ ଛୁରୀ ପାଖରେ ସମର୍ପଣ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଏହାର ଏକ କରୁଣ

ଉଦାହରଣ ହେଲା ଗାୟକ ମାଇକେଲ ଜ୍ୟାକ୍‌ସନ୍ ଚାଳିଶ ଥର ନିଜର ନାକର ସର୍ଜରି କରାଇଥିବା । ସେହିପରି ସୌନ୍ଦର୍ଯ୍ୟ ପ୍ରତିଯୋଗିତାରେ ଭାଗ ନେଉଥିବା ଝିଅମାନେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ନିଜର ଅଙ୍ଗ ପ୍ରତ୍ୟଙ୍ଗକୁ ନିଖୁଣ କରିବାକୁ ଚେଷ୍ଟା କରିଥାନ୍ତି ।

ବିଖ୍ୟାତ ଲୋକଙ୍କର ପୋଷାକ ସେମାନଙ୍କର ଟ୍ରେଡମାର୍କ ହୋଇଯାଏ ଏବଂ ଏଇ ପୋଷାକ ବିନା ସେମାନଙ୍କୁ କଳ୍ପନା କରାଯାଇ ପାରେ ନା, ଯଥା, ଦାର୍ଶନିକ ଗୁସୋଙ୍କର କାଫ୍‌ତାନ, ରବୀନ୍ଦ୍ରନାଥଙ୍କର ଆଲଖାଲ୍ଲା, ଲେନିନଙ୍କ ଚମଡ଼ା ଜର୍କିନ ଓ ବିବେକାନନ୍ଦଙ୍କର ସିଲ୍‌କ୍ ଗେରୁଆ ପୋଷାକ ଓ କଳା କମରପଟି । ରବୀନ୍ଦ୍ର ନାଥ ଓ ବିବେକାନନ୍ଦଙ୍କର ପୋଷାକ ଯେ ପାଶ୍ଚାତ୍ୟ ଦେଶର ଲୋକମାନଙ୍କ ପାଖରେ ଆକର୍ଷଣର ଏକ କାରଣ ଥିଲା ସେ କଥା ଅସ୍ୱୀକାର କରାଯାଇପାରିବ ନାହିଁ । ବିଖ୍ୟାତ ଲୋକମାନେ ମଧ୍ୟ ବିଭିନ୍ନ ସମୟରେ ବିଭିନ୍ନ ପୋଷାକ ପିନ୍ଧନ୍ତି, କିନ୍ତୁ ଲୋକମାନେ ସେମାନଙ୍କୁ ଗୋଟିଏ ବିଶେଷ ପୋଷାକ ପିନ୍ଧିଥିବା ରୂପରେ ମନେ ରଖନ୍ତି । ଗାନ୍ଧୀଜୀଙ୍କର ଅଗଣିତ ଫଟୋ ଥିବାବେଳେ ସରକାରୀ ବିଜ୍ଞାପନରେ ତାଙ୍କର ମାତ୍ର ଗୋଟିଏ ଦୁଇଟି ଫଟୋ ବ୍ୟବହାର କରାଯାଇଥାଏ । ସୁଭାଷ ବୋଷଙ୍କୁ ସମସ୍ତେ ବର୍ତ୍ତମାନ ଚିହ୍ନନ୍ତି ତାଙ୍କ ବଙ୍ଗାଳୀ ଭଦ୍ରଲୋକ ଧୋତି ପଂଜାବୀରେ ନୁହେଁ, ମିଲିଟାରୀ ପୋଷାକରେ ।

ଆଗ ସମୟରେ ଓଡ଼ିଶାରେ ଫଟୋଗ୍ରାଫ୍‌ର ବିଶେଷ ପ୍ରଚଳନ ଥିବାରୁ ସେତେବେଳର ବିଶିଷ୍ଟ ଲୋକଙ୍କର ଅତି କମ୍ ଫଟୋଗ୍ରାଫ୍ ଦେଖିବାକୁ ମିଳେ । ସାଧୁସୁନ୍ଦର ଦାସଙ୍କ ଫଟୋ ବୋଲି କୁହାଯାଉଥିବା ଚିତ୍ରଟି କାହାରି ହାତର ରଚନା କାରଣ ସେ ସମୟକୁ ଫଟୋଗ୍ରାଫି ଆସି ନ ଥିଲା । ପଠାଣି ସାମନ୍ତଙ୍କର ଭାଗିରଥି ଷାଠିଆ ଉଠାଇଥିବା ଏକମାତ୍ର ଫଟୋଚିତ୍ର ଉପଲବ୍‌ଧ । ଓଡ଼ିଆ ତାଳପତ୍ର ପୋଥିମାନଙ୍କରେ ଜଗନ୍ନାଥ ଦାସ, ଉପେନ୍ଦ୍ର ଭଂଜ, ବଳଦେବ ରଥ ଇତ୍ୟାଦିଙ୍କର ଚିତ୍ର ଦେଖିବାକୁ ମିଳେ, କିନ୍ତୁ ସେମାନଙ୍କର ଚେହେରା ପ୍ରତି ପୋଥିରେ ଲେଖନକାରର କଳ୍ପନା ଅନୁଯାୟୀ ଭିନ୍ନ ଭିନ୍ନ । ଆଧୁନିକ ସମୟର ଚିତ୍ରକରମାନେ ଜଗନ୍ନାଥ ଦାସ, ଉପେନ୍ଦ୍ର, ଭୀମ ଭୋଇ ଇତ୍ୟାଦିଙ୍କର ଯେଉଁ କାଳ୍ପନିକ ଚିତ୍ର ଆଙ୍କିଛନ୍ତି ସେଥିରୁ କେତେକ ବର୍ତ୍ତମାନ ପ୍ରାମାଣିକ ଭାବରେ ବ୍ୟବହୃତ । ଅଭିମନ୍ୟୁ ସାମନ୍ତସିଂହାରଙ୍କର

ଯେଉଁ ଚିତ୍ର ପ୍ରଚଳିତ ତାର ମୂଳ ସ୍ରୋତ ସନ୍ଦେହମୁକ୍ତ ନୁହେଁ ।

ଲୋକମାନେ ଜୀବିତାବସ୍ଥାରେ ନିଜର ଚେହେରା ଓ ବେଶ ପୋଷାକ ବିଷୟରେ ସଚେତନ ଥାନ୍ତି ଏବଂ ତାର ଯତ୍ନ ନେଇଥାନ୍ତି । ଲେଖକମାନେ ବହିର ପ୍ରଚ୍ଛଦରେ (ଏବଂ ବର୍ତ୍ତମାନ ଫେସବୁକ ପୃଷ୍ଠାରେ) ନିଜର ସବୁଠାରୁ ମନୋହାରୀ ଫଟୋଟି ଦେଇଥାନ୍ତି, ଯାହା ଅନେକ ସମୟରେ ତାଙ୍କ ଯୁବାବସ୍ଥାର । ଆଜିକାଲି ଫଟୋଚିତ୍ରକୁ ଫଟୋ ଶପ୍ ଦ୍ୱାରା କାଟଛାଟ କରି ଚେହେରାକୁ ଅଧିକ ସୁନ୍ଦର କରି ଦିଆ ଯାଇପାରୁଛି । ମର୍ଫିଙ୍ଗ୍ କରି କୃତ୍ରିମ ଫଟୋ ମଧ୍ୟ ତିଆରି କରାଯାଇପାରୁଛି, ଯାହାର ଗୋଟିଏ ଉଦାହରଣ ନଜମା ହେପ୍‌ତୁଲ୍ଲା ନିଜକୁ ମୌଲାନା ଆବୁଲ କଲାମ ଆଜାଦଙ୍କ ପାଖରେ ବସାଇଥିବାର ଜାଲ ଫଟୋ । ଷ୍ଟାଲିନ୍‌ଙ୍କ ସମୟରେ କୌଣସି ନେତା ତାଙ୍କର ସମର୍ଥନ ହରାଇଲେ ଗ୍ରୁପ୍ ଫଟୋରୁ ସେ ଲୋକଟିକୁ ଏୟାର ବ୍ରଶ୍ କରି ଉଡ଼ାଇ ଦିଆଯାଉଥିଲା – ହୁଏତ ଗୁଳି କରି ସେଇ ଜୀବନ୍ତ ଲୋକଟିକୁ ମଧ୍ୟ ।

ମୃତ୍ୟୁ ପରେ ନିଜର ଚେହେରାକୁ ପରବର୍ତ୍ତୀ ପୀଢ଼ୀର ଲୋକେ କି ଭଳି ଦେଖିବେ ତା ଉପରେ ଦିବଙ୍ଗତର କୌଣସି କର୍ତ୍ତୃତ୍ୱ ନଥାଏ । ବାଜି ରାଉତ ସମୟରେ ସଚ୍ଚି ରାଉତରାୟ କୋଟ୍ ଟାଇ ପିନ୍ଧା ଫଟୋ ବ୍ୟବହାର କରୁଥିଲେ; ନିକଟରେ ତାଙ୍କ ଉପରେ ପ୍ରକାଶିତ ସାହିତ୍ୟ ଏକାଡେମି ବହିର ମଲାଟରେ ତାଙ୍କର ଯେଉଁ ଫଟୋ ଦିଆଯାଇଛି ସେଇଟି ଦୟନୀୟ ।

ଆମ୍ବେଦକରଙ୍କ ମୃତ୍ୟୁ ପରେ ତାଙ୍କର ଏକ ନିର୍ଦ୍ଦିଷ୍ଟ ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ବ୍ୟବହାର ହେଉଥିବା କଥା ଆଗରୁ କୁହାଯାଇଛି । ଫକୀରମୋହନ ଶେଷ ଜୀବନରେ ନିଜର ଗୋଟିଏ ପ୍ରତିମୂର୍ତ୍ତି କରାଇ ତାକୁ ନିଜ ବଗିଚାରେ ସ୍ଥାପିତ କରିଥିଲେ, କିନ୍ତୁ ତାଙ୍କର ମୃତ୍ୟୁ ପରେ କେହି ଏହାର ପ୍ରତିଛବି ବ୍ୟବହାର କଲେ ନାହିଁ । ତାଙ୍କର ଗୋଟିଏ ମାତ୍ର ଚିତ୍ର ସବୁବେଳେ ବ୍ୟବହାର କରାଯାଏ ଏବଂ ଏହା ବ୍ୟତୀତ ତାଙ୍କର ଆଉ ଗୋଟିଏ ଫଟୋ ମଧ୍ୟ ଅଛି । ସେହି ଭଳି ରାଧାନାଥ ରାୟଙ୍କର ଗୋଟିଏ ଷ୍ଟାଣ୍ଡାର୍ଡ ବା ମାନକ ଫଟୋ ଅଛି । ଏ ଫଟୋମାନ ସେମାନଙ୍କର ପ୍ରକୃତ ଭାବଚିତ୍ର ନୁହେଁ ବୋଲି ସୁରେନ୍ଦ୍ର ମହାନ୍ତି ନିମ୍ନ ଭାବରେ ମନ୍ତବ୍ୟ ଦେଇଛନ୍ତି :

‘‘ମୁଣ୍ଡରେ ଚିତା, ବେକରେ ଚାଦର ପଟୁକା, ହାତ ଦୁଇଟି ପ୍ରାର୍ଥନାର ଭଙ୍ଗୀରେ ମୁଦ୍ରିତ- ତାହା କଣ ଯଥାର୍ଥରେ ଫକୀରମୋହନଙ୍କର ଭାବମୂର୍ତ୍ତି ? ରାଧାନାଥ ନିଶ ହଳଟିକୁ ଅଧୋମୁଖ କରି ଖଣ୍ଡେ ବାଘ ଚମଡ଼ା ଉପରେ ପ୍ରାର୍ଥନା କରିବା ଭଙ୍ଗୀରେ

ଆଣ୍ଠୁ ମାଡ଼ି ବସିଛନ୍ତି କେଉଁ ଦୁଃଖରେ ! ସେପରି ଏକ ଅବାସ୍ତବ ଭାବଚିତ୍ର ଜନଚେତନାରେ ପ୍ରସାରିତ କରାଯାଉଛି କାହିଁକି ?''

ବିଚରା ଫକୀରମୋହନ, ରାଧାନାଥ ! ଏଇ ଫଟୋମାନଙ୍କ ସୌଜନ୍ୟରୁ ଆମେ ସେମାନଙ୍କୁ ସେହି ଶୁଦ୍ଧ ପୂତ ଧାର୍ମିକ ଭଙ୍ଗୀରେ ଦେଖୁ । ସେମାନେ ନିଜର ଫଟୋଗ୍ରାଫ୍‌ରେ ସୀମିତ । ବର୍ତ୍ତମାନ ଗାନ୍ଧୀ ଆମ ପାଇଁ ସୁସ୍ଥ ସବଳ ବେନ୍ କିଂଗ୍‌ସ୍ଲେ । ଆକବର ହେଉଛନ୍ତି ପୃଥ୍ୱିରାଜ କପୁର । ପାରିସରେ ଥିବା ଜେନ ଅଫ୍ ଆର୍କଙ୍କର ମୂର୍ତ୍ତିକୁ ଲୋକେ ଭାବନ୍ତି ଅଭିନେତ୍ରୀ ଇନ୍‌ଗ୍ରିଡ୍ ବର୍ଗମାନଙ୍କର ବୋଲି ।

୧୯୦୫-୦୬ ମସିହାରେ ଚିତ୍ରକାର ପିକାସୋ ଲେଖିକା ଜର୍‌ଟ୍ରୁଡ୍ ଷ୍ଟାଇନ୍‌ଙ୍କର ଚିତ୍ର ଆଙ୍କିବା ପାଇଁ ନବେ ଥର ତାଙ୍କୁ ନିଜ ଆଗରେ ବସାଇଥିଲେ, କିନ୍ତୁ ପ୍ରତିକୃତିଟି ହୋଇ ପାରି ନ ଥିଲା । ଶେଷରେ ସେ ନିଜ ମନରୁ ଗୋଟିଏ ତୈଳ ଚିତ୍ର ଆଙ୍କିଲେ ଯାହା ଆଦୌ ଷ୍ଟାଇନ୍‌ଙ୍କ ଭଳି ଦେଖା ଯାଇ ନଥିଲା । ଏ ବିଷୟରେ ପଚରା ଯିବାରୁ ପିକାସୋ ଉତ୍ତର ଦେଲେ, ଷ୍ଟାଇନ୍ ଏଇ ଭଳି ଦେଖାଯିବେ । ତାଙ୍କ କଥା ଠିକ୍ ହେଲା । ତିରିଶ ବର୍ଷ ପରେ ଷ୍ଟାଇନ୍ କହିଲେ, ମୁଁ ଏହି ଚିତ୍ରରେ ସନ୍ତୁଷ୍ଟ; ମୋ ପାଇଁ ସେଇଟି ହେଉଛି ମୁଁ ।

ଏହା ହିଁ ହେଲା ପ୍ରତିକୃତି ଓ ବେଶ ପୋଷାକର ଚିରନ୍ତନ ସତ୍ୟ ।

*ଅକ୍ଟୋବର ୨୦୧୬*

# ଗୀତ ଓ କବିତାର ଯୁଗଳବନ୍ଦୀ

ନିକଟରେ ବବ୍ ଡିଲାନ୍‌ଙ୍କୁ ସାହିତ୍ୟରେ ନୋବେଲ ପୁରସ୍କାର ମିଳିବା ପରେ ଯେତେ ବାଦ ବିସମ୍ବାଦ ଉପୁଜିଛି, ଆଗରୁ କୌଣସି ଲେଖକଙ୍କ ପାଇଁ ଏପରି ହୋଇ ନଥିଲା । କିଛି ଲୋକ ଏହି ଚୟନକୁ ସମର୍ଥନ କରୁଥିବା ବେଳେ ଅନେକ ଲୋକ ଏହାକୁ ନାପସନ୍ଦ କରିଛନ୍ତି । ରସ୍କିନ ବଣ୍ଡ୍‌ଙ୍କ ମତରେ ଡିଲାନଙ୍କୁ ନୋବେଲ ଦେବା ଯଥାର୍ଥ ନୁହେଁ ଏବଂ ଏହା ଦ୍ୱାରା ଆଗରୁ ଏହି ପୁରସ୍କାର ପାଇଥିବା ବିଶିଷ୍ଟ ଲେଖକମାନଙ୍କୁ ଅପମାନିତ କରାଯାଇଛି ।

ଏ କଥା ନୁହେଁ ଯେ ଡିଲାନ ତାଙ୍କର ଲିରିକ ବା ଗୀତି କବିତା ପାଇଁ ପ୍ରଥମ ଥର ସାହିତ୍ୟିକ ତାଲିକାରେ ଅନ୍ତର୍ଭୁକ୍ତ ହୋଇଛନ୍ତି । ଦିଲ୍ଲୀର ଜାମିଆ ମିଲିଆ ବିଶ୍ୱବିଦ୍ୟାଳୟର ଏମ୍.ଏ. କବିତା ବିଭାଗରେ ୨୦୧୧ ମସିହାରୁ ଡିଲାନଙ୍କର ଗୀତି 'ବ୍ଲୋଇନ୍ ଇନ୍ ଦ ୱିଣ୍ଡ' ପଢ଼ାଯାଉଛି । କଲିକତାର ଯାଦବପୁର ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀ ସଂଗୀତ ବିଭାଗରେ ଡିଲାନଙ୍କୁ ପଢୁଥିଲେ ଏବଂ ଆସନ୍ତା ଜାନୁଆରି ମାସରୁ ଇଂରେଜୀ ବିଭାଗରେ ମଧ୍ୟ ତାଙ୍କୁ ପଢ଼ିବେ ।

ଡିଲାନଙ୍କୁ ଏ ବର୍ଷ ନୋବେଲ ମିଳିବାରେ କିନ୍ତୁ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ କାରଣ ଅନେକ ବର୍ଷ ଧରି ଏ ବିଷୟରେ ଆଲୋଚନା ହେଉଥିଲା । ୧୯୯୯ରେ ବ୍ରିଟେନ୍‌ର ଜାତୀୟ କବିତା ଦିବସରେ ଚାରିଜଣ କବିଙ୍କୁ ପ୍ରଶ୍ନ ଦିଆଯାଇଥିଲା, ବବ୍ ଡିଲାନ କ'ଣ ପ୍ରକୃତରେ ଜନ୍ କୀଟ୍‌ସ୍‌ଙ୍କର ପ୍ରତିଦ୍ୱନ୍ଦ୍ୱୀ ? ସେତେବେଳର ପୋଏଟ୍ ଲରିଏଟ୍ ଆଣ୍ଡ୍ରୁ ମୋଶନ ଏହି କୀଟ୍‌ସ୍ ବନାମ ଡିଲାନ ବିତର୍କରେ ମଧ୍ୟସ୍ଥ ହୋଇ କହିଥିଲେ, "ଉଭୟ କବି ବୁଦ୍ଧିଦୀପ୍ତ ଓ ବିଶେଷ କଥା କହିଛନ୍ତି, ଏବଂ ମହତ୍ତ୍ୱରେ କେହି କାହାଠାରୁ ଊଣା ନୁହନ୍ତି ।" ଏହି ଅବସରରେ କବିତା ଓ ଗୀତର ବିଭେଦକୁ ଭାଙ୍ଗି ଉଭୟକୁ ନେଇ ଗୋଟିଏ ସଂକଳନ ପ୍ରକାଶ ପାଇଥିଲା । ୨୦୦୧ରେ ଆଉ

ଜଣେ ଲେଖକ ର୍‌ୟାପ୍ ଗାୟକ ଏମିନେମ୍‌ଙ୍କୁ କବି ବ୍ରାଉନିଙ୍ଗ୍‌ଙ୍କ ସହିତ ତୁଳନା କରିଥିଲେ ।

ଅନେକ ବର୍ଷ ଧରି ନୋବେଲ ପାଇଁ ଡିଲାନ୍‌ଙ୍କ ନାଁ ବିଚାରକୁ ଆସୁଥିଲା । ୨୦୦୪ ମସିହାରେ ଗୋଟିଏ ଖବରକାଗଜ ସମ୍ବାଦର ଶିରୋନାମା ଥିଲା : ନୋବେଲ୍ ଡିଲାନ ? (ଟାଇମ୍‌ସ ଅଫ୍ ଇଣ୍ଡିଆ ୭ ଅକ୍ଟୋବର୨୦୦୪) । ୨୦୦୮ରେ ଡିଲାନଙ୍କୁ ଆମେରିକାର ମହତ୍ତ୍ୱପୂର୍ଣ୍ଣ ପୁଲିତ୍‌ଜର୍ ପୁରସ୍କାର ମିଳିଲା, ଯାହାର ପ୍ରଶସ୍ତି ପତ୍ରରେ ତାଙ୍କର ଗୀତି କବିତାର ଅସାଧାରଣ କାବ୍ୟିକ ଶକ୍ତିର ଉଲ୍ଲେଖ ଥିଲା ।

ଡିଲାନଙ୍କୁ ସାହିତ୍ୟିକ ଆସନରେ ବସାଇବାର ଶ୍ରେୟ ଯିବ ପ୍ରଫେସର କ୍ରିଷ୍ଟୋଫର ରିକ୍‌ସ୍‌ଙ୍କୁ ଯେ ଇଂରାଜୀ ସାହିତ୍ୟର ଜଣେ ବିଶିଷ୍ଟ ବିଦ୍ୱାନ ଓ ଏକଦା ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର କବିତା ଅଧ୍ୟାପକ ଥିଲେ । ଚାଳିଶ ବର୍ଷ ଧରି ଡିଲାନଙ୍କ ସଂଗୀତ ଶୁଣିବା ପରେ ଓ ତାଙ୍କ ବିଷୟରେ ଏକାଧିକ ଲେଖା ଲେଖିବା ପରେ ପ୍ରଫେସର ରିକ୍‌ସ୍ ୨୦୦୪ରେ ପ୍ରକାଶ କଲେ **ଡିଲାନ୍'ସ୍ ଭିଜନ ଅଫ୍ ସିନ୍** । ଏହି ପାଞ୍ଚଶହ ପୃଷ୍ଠାର ବହିରେ ସେ ଡିଲାନଙ୍କ ଗୀତିକବିତାକୁ ବାଇବଲ୍‌ର ଭାବାବେଗର ପରିପ୍ରେକ୍ଷୀରେ ଆଲୋଚନା କରିଥିଲେ ଏବଂ ତାଙ୍କର ଲେଖାକୁ ଶେକ୍ସପିଅର୍, ଡନ୍, କୀଟ୍‌ସ୍ ଇତ୍ୟାଦିଙ୍କ ରଚନା ସହିତ ତୁଳନା କରିଥିଲେ । ତାଙ୍କର ବିଶେଷ ତୁଳନାତ୍ମକ ଲେଖା ଥିଲା କୀଟ୍‌ସ୍‌ଙ୍କର **ଓଡ୍ ଟୁ ଏ ନାଇଟିଙ୍ଗେଲ** ଓ ଡିଲାନଙ୍କର **ନଟ୍ ଡାର୍କ୍ ୟେଟ୍** । ରିକ୍‌ସ୍‌ଙ୍କର ଲକ୍ଷ୍ୟ ଥିଲା ଡିଲାନ୍‌ଙ୍କୁ କବିମାନଙ୍କ ଭିତରେ ସ୍ଥାନ ଦେବା, ଏବଂ ଏ ବର୍ଷ ତାଙ୍କର ଉଦ୍ୟମକୁ ସଫଳତା ମିଳିଲା ।

ଡିଲାନ୍‌ଙ୍କ ନୋବେଲ ନେଇ ବାଦବିବାଦର ମୂଳ ପ୍ରଶ୍ନଟି ହେଲା, ଗୀତ(ଲିରିକ୍, ଗୀତି, ଗୀତି କବିତା, ବାଂଲାରେ ଗାନ୍) କଣ କବିତା ଭଳି ସାହିତ୍ୟର ଏକ ବିଭାଗ ? ଗୋଟିଏ ପକ୍ଷର ଯୁକ୍ତି ହେଲା ଯେ ଗୀତକୁ ସଂଗୀତରୁ ଅଲଗା ରଖାଯାଇ ପାରେ ନା; ସୁର ବିନା ଏହାକୁ କଳ୍ପନା କରାଯାଇପାରିବ ନାହିଁ । କବିତା ଲେଖାଯାଏ ପଢ଼ିବା ପାଇଁ, ଗୀତ ଗାଇବା ପାଇଁ । ଅନେକ ସମୟରେ ସିନେମା ଗୀତରେ ସଂଗୀତ ନିର୍ଦ୍ଦେଶକ ପ୍ରଥମେ ସୁର ଦିଅନ୍ତି ଓ ଗୀତିକାର ଏହି ସୁରକୁ ନେଇ ଶବ୍ଦ ବସାଇ ଗୀତ ଲେଖନ୍ତି । ଏହା ବିଶେଷ ଭାବେ ଲକ୍ଷ୍ୟ କରାଯାଇପାରିବ ଯେତେବେଳେ ବିଦେଶୀ ଗୀତର ଅନୁକରଣରେ ହିନ୍ଦୀ ସିନେମାର ଗୀତ ତିଆରି ହୁଏ । ତେଣୁ

ଗୀତ ଓ କବିତାକୁ ତୁଳନା କରିବା ସମ୍ଭବ ନୁହେଁ ଯେପରି ଉପନ୍ୟାସ ଓ ଫିଲ୍ମକୁ ତୁଳନା କରିବା ସମ୍ଭବ ନୁହେଁ ।

ଅନ୍ୟ ପକ୍ଷରୁ କୁହାଯାଏ ଯେ ଗୀତକୁ ଗାଇବା ସହିତ ପଢ଼ା ମଧ୍ୟ ଯାଇପାରିବ, କବିତା ଭଳି । ପାଠକ ଗୀତରୁ ସଂଗୀତକୁ କାଟି ଦେଇ କାଗଜ ପୃଷ୍ଠାରେ ତାର ଶବ୍ଦମାନଙ୍କୁ ସ୍ୱାଧୀନ ଭାବରେ ପଢ଼ିପାରେ । ନାଟକ ଅଭିନୀତ ହେବା ପାଇଁ ଲେଖା ହୋଇଥିଲେ ମଧ୍ୟ ତା'ର ମଂଚାୟନ-ବିହୀନ ପାଠକୁ ଅଲଗା ପଢ଼ାଯାଇଥାଏ ଏବଂ ଏହି ଲିଖିତ ନାଟକ ସାହିତ୍ୟର ଶ୍ରେଣୀଭୁକ୍ତ । ଏପରି ମଧ୍ୟ କୁହାଯାଇଛି ଯେ ଶେକ୍ସପିଅରଙ୍କ ସମୟରେ ତାଙ୍କର ନାଟକ ମଞ୍ଚସ୍ଥ ହେଲାବେଳେ ତାର ଏକ ସଂକ୍ଷିପ୍ତ ରୂପ ଅଭିନୀତ ହେଉଥିଲା, ପୂର୍ଣ୍ଣପାଠଟି ବହି ଆକାରରେ ପ୍ରକାଶିତ ହେଉଥିଲା ପାଠକଙ୍କ ପାଇଁ । ତେଣୁ କଳା ହିସାବରେ ଲିଖିତ ଗୀତ କୌଣସି ଭାବରେ କବିତାଠାରୁ ନ୍ୟୂନ ନୁହେଁ । ଗଦ୍ୟ ଓ ପଦ୍ୟରେ ଯଦି କବିତା ରହିପାରେ, ଗୀତରେ କବିତା ରହିବା ସ୍ୱାଭାବିକ । ଡିଲାନଙ୍କ ଗାଇବା ନ ଶୁଣି ଥିଲେ ବି ଜଣେ ତାଙ୍କର ଗୀତକୁ ପଢ଼ି ଉପଭୋଗ କରିପାରିବ ।

ସାହିତ୍ୟ ଆଲୋଚନନାରେ ଗୀତ ଓ କବିତାର ଦ୍ୱନ୍ଦ୍ୱ ଅନେକ ପୁରୁଣା । ଗତ ଶତାବ୍ଦୀର ପ୍ରଥମ ସମୟରେ ରବୀନ୍ଦ୍ରନାଥଙ୍କର **ଗୀତାଂଜଳି** ବିଷୟରେ ଏ ପ୍ରଶ୍ନ ଉଠିଥିଲା । ସେ ଏହି ସଂକଳନ(ଇଂରେଜୀ ଗୀତାଂଜଳି ନୁହେଁ)ର ଗୀତମାନ ଲେଖିଥିଲେ ତାଙ୍କର **ଖେୟା** ଓ **ବଲାକା** କବିତା ସଂକଳନ ଦୁଇଟିର ମଧ୍ୟବର୍ତ୍ତୀ ସମୟ ଭିତରେ । କୁହାଯାଏ ଯେ ଏହି ଆଠ ବର୍ଷର ସମୟ ଖଣ୍ଡରେ ସେ କବିତାରୁ ଛୁଟି ନେଇ ଗାନ୍‌ର ଜଗତକୁ ଚାଲିଯାଇଥିଲେ । ରବୀନ୍ଦ୍ରନାଥ ନିଜେ ଲେଖିଛନ୍ତି ଯେ ଗୀତାଂଜଳିର ଲେଖାମାନ ସାହିତ୍ୟରେ ଗଣ୍ୟ ହେବାର ଯୋଗ୍ୟ ନୁହଁନ୍ତି, କାରଣ ଏଗୁଡ଼ିକ କେବଳ ମୋର ନିଜର ମନର କଥା, ନିଜର ପ୍ରୟୋଜନରେ ଲେଖା ।

ଏଥିରୁ ଜଣାପଡ଼ିବ ଯେ ରବୀନ୍ଦ୍ରନାଥ ଏହି ଗୀତଗୁଡ଼ିକୁ ସାହିତ୍ୟର ଆଖ୍ୟା ଦେବାକୁ ଚାହୁଁ ନ ଥିଲେ, ଅର୍ଥାତ୍ ତାଙ୍କ ମତରେ ଏ ଗୁଡ଼ିକ କବିତା ନୁହନ୍ତି । ଗୀତାଂଜଳିର ଭୂମିକାରେ ମଧ୍ୟ ଏ ଭଳି ଲେଖା ଥିଲା ; "ଅଳ୍ପ ସମୟ ବ୍ୟବଧାନରେ ଯେଉଁ ସମସ୍ତ ଗାନ ପରେ ପରେ ରଚିତ ହୋଇଛି ସେମାନଙ୍କର ପରସ୍ପର ଭିତରେ ଗୋଟିଏ ଭାବର ଐକ୍ୟ ଥିବା ସମ୍ଭବପର ମନେ କରି ସେହି ସକଳକୁ ଏହି ପୁସ୍ତକରେ

ଏକତ୍ର ବାହାର କରାଗଲା ।" ଏଥିରୁ ମନେ ହେବ ଯେ ଗୀତାଂଜଳି 'ଗାନେର ବହି', କବିତା ସଂକଳନ ନୁହେଁ ।

ଏ ବିଷୟରେ ଦୀର୍ଘ ଆଲୋଚନା କରି ବଙ୍ଗାଳୀ କବି-ସମାଲୋଚକ ଶଂଖ ଘୋଷ ଲେଖିଛନ୍ତି : ଗାନ ଏଠାରେ କବିତାର ଅନ୍ୟ ଏକ ନାଁ ।... ଏଥିରେ କବି ଆସି ପହଞ୍ଚିଛନ୍ତି ବାଂଲା କବିତାର ବିରଳତମ ଗୋଟିଏ ମୁହୂର୍ତ୍ତରେ ଯେଉଁଠାରେ ସନାତନ ଗୀତି ସାହିତ୍ୟ ଓ ଅଧୁନାତନ କାବ୍ୟ ସାହିତ୍ୟ ଗୋଟିଏ ବିନ୍ଦୁରେ ଆସି ମିଶିଛନ୍ତି, ଐତିହ ଯେଉଁଠାରେ ପ୍ରାଣ ପାଇ ଜାଗି ଉଠିଛି ନବୀନ ଗୋଟିଏ ଆଧୁନିକତାରେ ।... ଗୀତାଂଜଳିରେ ଗାନ ଓ କବିତାର ବିଭେଦ ଲୁପ୍ତ ହୋଇ ତା ହୋଇଛି ଭିନ୍ନ ଦୁଇ ଶିଳ୍ପ ରୂପ ନୁହେଁ, ସାମଂଜସ୍ୟମୟ ସୁଷମାମୟ ଅଚ୍ଛିନ୍ନ ଏକ ଅବୟବ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ସାରା ପୃଥିବୀରେ ଗୀତ ହିଁ ଥିଲା ସାହିତ୍ୟର ଉତ୍ସ । ବେଦର ସ୍ତୋତ୍ର, ଯାହାକୁ ଆବୃତ୍ତି କରା ହେଉଥିଲା, ଆମର ପ୍ରଥମ କବିତା । ଓଡ଼ିଆ ସାହିତ୍ୟରେ ଊନବିଂଶ ଶତାବ୍ଦୀର ଯଦୁମଣି ଓ ଗୋପାଳକୃଷ୍ଣଙ୍କ ପର୍ଯ୍ୟନ୍ତ କବିତା ଲେଖାଯାଉଥିଲା ଗାଇବା ପାଇଁ । ବାଂଲାରେ ନଜରୁଲଙ୍କ ପର୍ଯ୍ୟନ୍ତ ବହୁ କବି ସୁର ଜଗତରେ ଥିଲେ । ଉର୍ଦ୍ଦୁ ଗଜଲ ଲୋକପ୍ରିୟ ଗାୟକ ଓ ଫିଲ୍ମ ମାଧ୍ୟମରେ ଗୀତ ଓ କବିତାର ବିଭେଦକୁ ଭାଙ୍ଗିଦେଲା ।

ଇଂରେଜୀ ଶିକ୍ଷା ସହିତ ଓଡ଼ିଆ କବିତାରେ ଯେଉଁ ନୂଆ ଶୈଳୀ ଆସିଲା ସେହି ସମୟରୁ ଗୀତ ଓ କବିତାର ବିଭେଦ ହେଲା । ଆସ୍ତେ ଆସ୍ତେ କିଛି ଲେଖକ କବି ଓ ଅନ୍ୟ ଲେଖକ ଗୀତିକାର ଭାବରେ ଗଣା ହେଲେ । ବିଶେଷରେ ଆକାଶବାଣୀରୁ ଓଡ଼ିଆ ପ୍ରସାରଣ ହେବା ପରେ ସଂଗୀତ କାର୍ଯ୍ୟକ୍ରମ ପାଇଁ ଗୀତ ଆବଶ୍ୟକ ହେଲା ଏବଂ କେତେକ କବିଙ୍କୁ ଗୀତିକାରର ସ୍ୱତନ୍ତ୍ର ସ୍ୱୀକୃତି ମିଳିଲା । ଏହିପରି ଭାବରେ ଆମର ସାହିତ୍ୟ ସମାଲୋଚକମାନେ ମଧ୍ୟ ଆଉ ଗୀତକୁ ଆଲୋଚନା ପରିସରକୁ ଆଣିଲେ ନାହିଁ । ଏହାର ଗୋଟିଏ ଉଦାହରଣ ନିମ୍ନମତେ ।

ଆମର କବି ଜୀବନାନନ୍ଦ ପାଣି ୧୯୫୦ ଦଶକରେ ଅନ୍ୟ କବିମାନଙ୍କ ଭଳି ଗଦ୍ୟ କବିତା ଲେଖୁଥିଲେ । ପରେ ଗାୟକ ରାଧାକୃଷ୍ଣ ଭଂଜଙ୍କ ଅନୁରୋଧରେ ସେ କବିତା ଛାଡ଼ି ଗୀତ ଲେଖିବା ଆରମ୍ଭ କଲେ ଓ ଆକାଶବାଣୀର ସ୍ୱୀକୃତ ଗୀତିକାର ହୋଇଗଲେ । ଯେତେବେଳେ ଗୀତ ଲେଖୁଥିବାରୁ ତାଙ୍କୁ କେହି କବିରେ ଗଣିଲେ

ନାହିଁ, ସେ ପୁଣି କବିତା ଲେଖିବା ଆରମ୍ଭ କଲେ । ୧୯୯୭ରେ ପ୍ରକାଶିତ **ସେ ଗାଁ'ର କିଆଫୁଲ** ବହିର ମୁଖବନ୍ଧରେ ସେ ଏ ବିଷୟରେ ଏଭଳି ଲେଖିଛନ୍ତି :

"ମୋ ମନ ଭିତରେ ଗୋଟିଏ ଜମାଟ ବନ୍ଧା ପ୍ରଶ୍ନ ଚିହ୍ନ ଏବେ ବି ମୌନ ହୋଇ ଝୁଲୁଛି ଏବଂ ସେ ପ୍ରଶ୍ନ ହେଲା : ମୁଁ ଯେଉଁ ଗେୟ-କବିତା( ଜାଣିଶୁଣି ଗୀତିକବିତା ନ କହି ଗେୟ କବିତା କହୁଛି) ସବୁ ରଚନା କରିଛି ସେ କଣ କବିତା ନୁହେଁ ? ମୁଁ ଯଦି ଗଦ୍ୟ କବିତା ନ ଲେଖି କେବଳ ଗେୟ କବିତା ଲେଖିଥାନ୍ତି ତା ହେଲେ ତ ମୁଁ କବି ବୋଲି ପରିଗଣିତ ହୋଇ ନଥାନ୍ତି । ଯଦି ଗେୟ କବିତା କବିତା ନୁହେଁ ତେବେ ରବୀନ୍ଦ୍ର ନାଥ ଠାକୁରଙ୍କର ଗୀତାଂଜଳି କେମିତି ନୋବେଲ ପୁରସ୍କାର ପାଇଲା ? ଆଶା କରୁଛି, ମରିଯିବା ପୂର୍ବରୁ ଓଡ଼ିଶାର ସୁଧୀ ସମାଜ ପାଖରୁ ଏ ପ୍ରଶ୍ନର ଉତ୍ତର ମୁଁ ପାଇବି ।''

ପରବର୍ଷ ତାଙ୍କର ମୃତ୍ୟୁ ହେଲା ସୁଧୀ ସମାଜରୁ କୌଣସି ଉତ୍ତର ପାଇବା ପୂର୍ବରୁ । ଏ ବର୍ଷର ସାହିତ୍ୟରେ ନୋବେଲ ବୋଧହୁଏ ତାଙ୍କର ଅସମାହିତ ପ୍ରଶ୍ନର ଏକ ଉପଯୁକ୍ତ ଉତ୍ତର ।

ଏଥର ଡିଲାନଙ୍କୁ ପୃଥିବୀର କବିଗୋଷ୍ଠୀକୁ ସସମ୍ମାନ ଆମନ୍ତ୍ରଣ କରାଯାଉ ।

*ଅକ୍ଟୋବର ୨୦୧୬*

(ଡିସେମ୍ବର ୨୦୧୬ରେ ହୋଇଥିବା ନୋବେଲ ପୁରସ୍କାର ଉତ୍ସବରେ ଡିଲାନ ତାଙ୍କର ବକ୍ତବ୍ୟ ଶେଷରେ ଏପରି କହିଛନ୍ତି : ମୋ ଗୀତ କଣ **ସାହିତ୍ୟ,** ଏ ପ୍ରଶ୍ନ ନିଜକୁ ପଚାରିବା ପାଇଁ ମୁଁ ସମୟ ପାଇ ନଥିଲି । ମୁଁ ସ୍ୱିଡିଶ ଏକାଡେମିକୁ ଧନ୍ୟବାଦ ଦେଉଛି ଯେ ସେମାନେ ଏ କଥା ବିଚାର କରିବାକୁ ସମୟ ଦେଇଛନ୍ତି ଏବଂ ଶେଷରେ ଏହାର ଏପରି ଏକ ଚମତ୍କାର ଉତ୍ତର ରଖିଛନ୍ତି ।)

# ଭୂତ ପ୍ରେତ ଓ ବୈଦିକ ବିଜ୍ଞାନ

ଇତିହାସର ପ୍ରାକ୍‌କାଳରେ ଯେତେବେଳେ ଆଦି ମଣିଷର ବୁଦ୍ଧିଶକ୍ତିର ଉଦ୍‌ଭବ ହେଲା, ସେ ବିଭିନ୍ନ ବିଷୟରେ ଚିନ୍ତା କଲା ଏବଂ ପ୍ରଶ୍ନ କରିବାକୁ ଆରମ୍ଭ କଲା । ସେ ଜାଣିପାରିଲା କିପରି ନିଆଁ ତିଆରି ହୁଏ, ପଥର ଫିଙ୍ଗି ଜନ୍ତୁକୁ ମାରିଦିଆଯାଇ ପାରେ, ମଂଜି ପୋତିଲେ ସେଥିରୁ ଗଛ ବାହାରେ । କିନ୍ତୁ କେତେ ପ୍ରଶ୍ନ ତାର ବୁଦ୍ଧିର ବାହାରେ ରହିଲା, ଯଥା, ଦିନ ପରେ ରାତି ପରେ ଦିନ କାହିଁକି ହେଉଛି, ଆକାଶରୁ ବଜ୍ର ବିଜୁଳି ବର୍ଷା କିପରି ଆସୁଛି, ମଣିଷ କହିଁକି ଜନ୍ମ ନେଉଛି, ବଢୁଛି ଓ ଶେଷରେ ମରି ଯାଉଛି, ଇତ୍ୟାଦି । ଏ ସବୁର ଉତ୍ତର ନ ପାଇ ସେ ଭାବିଲା ଯେ କିଛି ଭୂତ ପ୍ରେତ ବା ଦେବଦେବୀ ଅଦୃଶ୍ୟରେ ରହି ଏ ସବୁ ଘଟାଉଛନ୍ତି । ଏହି ବିଶ୍ୱାସରୁ କ୍ରମେ ଧର୍ମ ଜନ୍ମ ନେଲା ।

ସଭ୍ୟତାର ବିକାଶ ସହିତ ବିଜ୍ଞାନ ଆସିଲା ଓ ବୈଜ୍ଞାନିକମାନେ ଏସବୁ ପ୍ରଶ୍ନର ଉତ୍ତର ଦେବାକୁ ଆରମ୍ଭ କଲେ । କୋପରନିକସ, ଗ୍ୟାଲିଲିଓ, ଡାରୱିନ୍ ପ୍ରମୁଖ କିଛି ବୈଜ୍ଞାନିକ ମୌଳିକ ପ୍ରଶ୍ନମାନଙ୍କର ବୈଜ୍ଞାନିକ ବ୍ୟାଖ୍ୟା ଦେଲେ, ଯାହା ମଣିଷର ଚିନ୍ତାଧାରାକୁ ବଦଳାଇ ଦେଲା । ପୂର୍ବରୁ ଧର୍ମଭିତ୍ତିରେ ଯେଉଁ ସବୁ ଉତ୍ତର ଦିଆଯାଇଥିଲା, ଏହା ତାକୁ ଭୁଲ୍ ପ୍ରମାଣିତ କଲା ।

ଆମେରିକା ହେଉଛି ବିଜ୍ଞାନ କ୍ଷେତ୍ରରେ ଗୋଟିଏ ଅତି ପ୍ରଗତିଶୀଳ ଦେଶ, କିନ୍ତୁ ଏଠାର ଲୋକମାନେ ଅଦ୍‌ଭୁତ ଭାବେ ବିଭିନ୍ନ ଅନ୍ଧବିଶ୍ୱାସର ବଶବର୍ତ୍ତୀ । ମତଗଣନାରୁ ଜଣାଯାଇଛି ଯେ ନିମ୍ନ ପ୍ରତିଶତ ଆମେରିକୀୟ ବିଭିନ୍ନ ବିଜ୍ଞାନ ଅସମ୍ମତ କୁସଂସ୍କାରରେ ବିଶ୍ୱାସ ରଖନ୍ତି :

ସ୍ୱର୍ଗର ଅସ୍ତିତ୍ୱ ୭୫ ପ୍ରତିଶତ
ଭୂତପ୍ରେତ ୪୨
ମିରାକ୍‌ଲ୍ ବା ଚମତ୍କାର ୭୬

ଈଶ୍ୱର ଓ ଦେବଦେବୀ ୮୨
ପୁନର୍ଜନ୍ମ ୨୦
ଜ୍ୟୋତିଷ ଓ ଭବିଷ୍ୟଦ୍‌ବାଣୀ ୩୦ ପ୍ରତିଶତ

୫୩ ପ୍ରତିଶତ ଆମେରିକୀୟ ବିଶ୍ୱାସ କରନ୍ତି ଯେ ବାଇବଲ୍‌ରେ କୁହାଯାଇଥିବା ମତେ ପୃଥିବୀ, ମଣିଷ ଓ ପ୍ରାଣୀ ଜଗତକୁ ଈଶ୍ୱର ଛ ଦିନରେ ସୃଷ୍ଟି କରିଥିଲେ । ଆମେରିକାର ଅନେକ ସ୍କୁଲରେ ୧୯୬୭ ମସିହା ପର୍ଯ୍ୟନ୍ତ ଏହି ବିବର୍ତ୍ତନବାଦ ବିରୋଧୀ ଶିକ୍ଷା ଦିଆଯାଉଥିଲା, ସେହି ବର୍ଷ ସୁପ୍ରିମ କୋର୍ଟ ଏହାକୁ ଅସିଦ୍ଧ ଘୋଷଣା କରିବା ପର୍ଯ୍ୟନ୍ତ । ୪୪ ପ୍ରତିଶତ ଆମେରିକୀୟ ବିଶ୍ୱାସ କରନ୍ତି ଯେ ଆଗାମୀ ପଚାଶ ବର୍ଷ ଭିତରେ ଯୀଶୁଖ୍ରୀଷ୍ଟ ପୁଣି ପୃଥିବୀ ପୃଷ୍ଠକୁ ଆସିବେ ମଣିଷର ବିଚାର କରିବା ପାଇଁ ।

ଆମ ଦେଶରେ ଏ ପ୍ରକାର ମତଗଣନା ବିଷୟରେ ଜଣା ନାହିଁ, ତେବେ ଆମେ ଏ ସବୁର ବହୁଳ ବିଶ୍ୱାସ ପ୍ରତି ମୁହୂର୍ତ୍ତରେ ଦେଖୁ । ମନ୍ଦିର, ମଠ, ମେଳା ମଉଛବ, ପୂଜା ପାର୍ବଣ ଆମ ଜୀବନର ଅଙ୍ଗ । ଖବର କାଗଜରେ ପ୍ରତିଦିନ ରାଶିଫଳ ପ୍ରକାଶ ପାଏ । ଗୁଣି ଗାରେଡ଼ି କରିଥିବା ଯୋଗୁ ଗୁଣିଆ ଓ ଡାହାଣୀଙ୍କୁ ହତ୍ୟା କରାଯିବା ନିତିଦିନିଆ କଥା । ଦେବତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଶିଶୁବଳି ଦିଆଯାଉଥିବାର ଖବର ପଢ଼ି ଆମକୁ ଆଶ୍ଚର୍ଯ୍ୟ ଲାଗେ ନାହିଁ । ଖବରକାଗଜ ପୃଷ୍ଠାରେ ବଶୀକରଣ କବଚ, ଦେଶୀ ଚିକିତ୍ସା ଓ ଜ୍ୟୋତିଷଙ୍କର ବିଜ୍ଞାପନ ବାହାରେ । କେବଳ ଗାଁ ଗଣ୍ଡାରେ ନୁହେଁ ସହରରେ ମଧ ମାଳ ମାଳ ଭଣ୍ଡ ବାବା ଦୋକାନ ଖୋଲି ବସିଛନ୍ତି ।

ଅନ୍ଧ ବିଶ୍ୱାସର ତିନିଟି ମୂଳସ୍ରୋତ ଅଛି ବୋଲି କୁହାଯାଇଥାଏ । ପ୍ରଥମରେ ଏହା ଜନ୍ମ ନିଏ ପୁରୁଣା ଆଚାର ବିଚାରର ପରଂପରାରୁ । ତାକୁ କ୍ଷମତା ପ୍ରୟୋଗ କରି ପ୍ରସାରିତ କରାହୁଏ । ଏବଂ ଶେଷରେ ଏହାକୁ ଦୈବୀ ରୂପ ଦେଇ ବିଧିସମ୍ମତ କରାଯାଏ । ହିନ୍ଦୁ ଧର୍ମକ୍ଷେତ୍ରରେ ଦେଖିଲେ ଏଗୁଡ଼ିକ ହେଲା ପୂର୍ବ ପ୍ରଚଳିତ ଧାର୍ମିକ ଆଚାର ବ୍ୟବହାରର ନିରବଛିନ୍ନ କ୍ରମ, ବ୍ରାହ୍ମଣ ପଣ୍ଡା ପଡ଼ିହାରୀ ପୁରୋହିତଙ୍କର ସାମାଜିକ ପ୍ରତିଷ୍ଠା ଓ ଦୈବ ସମ୍ମତ ପୁରାଣ ଓ ଧର୍ମଗ୍ରନ୍ଥ । ଅନ୍ୟ ଧର୍ମମାନଙ୍କରେ ପାଦ୍ରି, ମୁଲ୍ଲା, ବାଇବଲ କୋରାନ୍‌ର ପ୍ରାଦୁର୍ଭାବ ଆହୁରି କଠୋର । ସଂଖ୍ୟା ଦୃଷ୍ଟିରୁ ହିନ୍ଦୁମାନଙ୍କର ଦେବଦେବୀ ପରିବାର ଅତି ବୃହତ୍ । ତେତିଶ କୋଟି ଦେବଦେବୀ

ଓ ଅଗଣିତ ଗ୍ରାମଦେବତୀଙ୍କ ବାହାରେ ନୂଆ ନୂଆ ଦେବଦେବୀ ବି ସୃଷ୍ଟି ହେଉଥାନ୍ତି, ଯଥା ୧୯୭୫ରେ ଗୋଟିଏ ଅତି ବି ଗ୍ରେଡ୍ ଫିଲ୍ମରୁ ଜନ୍ମ ନେଇଥିଲେ ଦେବୀ ସନ୍ତୋଷୀ ମା ।

ଦେବଦେବୀଙ୍କ ଯୋଗୁ ଆଉ କିଛି ହେଉ ନ ହେଉ, ଅଯଥା ପ୍ରଚୁର ଶ୍ରମ, ସମୟ ଓ ଅର୍ଥ ନଷ୍ଟ ହୋଇଥାଏ । ମଧ୍ୟଯୁଗୀୟ ଇଉରୋପରେ ଧର୍ମଯାଜକଙ୍କ ଆଗରେ ଗମ୍ଭୀର ପ୍ରଶ୍ନ ଥିଲା ଗୋଟିଏ ପିନ୍‌ର ମୁଣ୍ଡ ଉପରେ କେତେ ଜଣ ପରୀ ନାଚି ପାରିବେ । ବର୍ତ୍ତମାନ ପର୍ଯ୍ୟନ୍ତ ରୋମାନ କ୍ୟାଥୋଲିକଙ୍କ ଭିତରେ ଯୁକ୍ତତର୍କ ଲାଗି ରହିଛି ବ୍ୟାପ୍‌ଟାଇଜ ହେବା ଆଗରୁ ଛୋଟ ପିଲାଟିଏ ମରିଗଲେ ତାର ଆତ୍ମା କୁଆଡ଼େ ଯିବ । ଓଡ଼ିଶାରେ ଏକ ବିରାଟ ସମସ୍ୟା ଯାହାର ଏ ପର୍ଯ୍ୟନ୍ତ ସର୍ବସମ୍ମତ ସମାଧାନ ହୋଇପାରୁନାହିଁ, ସେଇଟି ହେଲା ରଥ ଉପରେ କିଏ ଠାକୁରଙ୍କୁ ଛୁଇଁ ପାରିବ । ଗତ ନବକଳେବର ସମୟରେ ଓଡ଼ିଶା ଉଠୁଥିଲା ପଡୁଥିଲା । ଏ ସର୍କସରେ କେବଳ ପଣ୍ଡା ପୁରୋହିତ ନୁହନ୍ତି, ସର୍ବସାଧାରଣ ମଧ୍ୟ ପୂର୍ଣ୍ଣ ମାତ୍ରାରେ ସଂଶ୍ଲିଷ୍ଟ ଥିଲେ ।

ଅଗଣିତ ଦେବଦେବୀଙ୍କ ଭଳି ଭୂତପ୍ରେତଙ୍କର ମଧ୍ୟ ବିରାଟ ପରିବାର ଅଛି : ପିଶାଚ ପିଶାଚୀ, ଡାହାଣୀ ଡାକିନୀ, ବ୍ରହ୍ମରାକ୍ଷସ, ଚିରୁଗୁଣୀ, କୁଣ୍ଡାଭୂଷୁଣ୍ଡୀ ଇତ୍ୟାଦି ଇତ୍ୟାଦି । ଅନେକ ସଂପ୍ରଦାୟର ଲୋକ ପୃଥିବୀ ବାହାରେ ଏମାନଙ୍କର ଏକ ସ୍ୱତନ୍ତ୍ର ଜଗତ ଅଛି ବୋଲି ବିଶ୍ୱାସ କରନ୍ତି; ମରିଗଲା ପରେ ମଣିଷ ଯାଇ ସେଠାରେ ରହେ ବୋଲି ସେମାନଙ୍କର ଧାରଣା । ପୂଜାପାଠ, ମିଡିଅମ୍ ବା ମାଧ୍ୟମ, ସ୍ଫଟିକ ଗୋଲକ, ଉଜା ବୋର୍ଡ ଇତ୍ୟାଦିର ସହାୟତାରେ ଏହି ସଂସାର ସହିତ ଯୋଗାଯୋଗ କରିବା ପାଇଁ ଚେଷ୍ଟା କରାଯାଇଥାଏ । ୧୯୦୩ରେ ଉତ୍କଳ ଦୀପିକାରେ ପ୍ଲାଞ୍ଚେଟ୍ ଯନ୍ତ୍ରର ଏପରି ଏକ ବିଜ୍ଞାପନ ପ୍ରକାଶ ପାଇଥିଲା :

ଆଉ ମୃତ୍ୟୁ ନାହିଁ! ବିଚ୍ଛେଦ ନାହିଁ! ଅଦ୍‌ଭୁତ ମଧ୍ୟରେ ଅଦ୍‌ଭୁତ । ପ୍ରେତ ଉପରେ ଏହାର ଅଦ୍‌ଭୁତ ପ୍ରଭାବ ଦ୍ୱାରା ମୃତ ମନୁଷ୍ୟ(ଯେତେ କାଳରୁ ମରିଥିଲେ ସୁଦ୍ଧା) ପ୍ରଦର୍ଶକ ଏବଂ ଦର୍ଶକମାନଙ୍କ ସମ୍ମୁଖକୁ ଆହୃତ ହୋଇପାରିବ ଏବଂ କେହି ଇଚ୍ଛା କଲେ ତାଙ୍କ ସଙ୍ଗେ ଖୋସ ଗପ କରି କେତେକ ଘଣ୍ଟା ଅତିବାହିତ କରିପାରିବେ ।

ମଜାର ବିଷୟ ଯେ ଏହି ପରାବାସ୍ତବ ପୃଥିବୀର ଜଣେ ପ୍ରମୁଖ ପ୍ରବକ୍ତା ଥିଲେ ଶେର୍‌ଲକ୍ ହୋମ୍‌ସ୍ ସ୍ରଷ୍ଟା ଆର୍ଥର କନାନ୍ ଡୟଲ୍!

ଅନେକ ସମୟରେ ଲୋକଙ୍କୁ ମରିଯାଇଥିବା ଲୋକଙ୍କ ସହିତ ଯୋଗାଯୋଗ ସ୍ଥାପନ କରାଇବା ପାଇଁ ମିଡିଅମ ବା ମାଧମମାନେ ଯାଦୁବିଦ୍ୟାର ସହାୟତା ନେଇଥାନ୍ତି । ଅନେକ ବାବା ଯାଦୁବିଦ୍ୟାରେ ପାରଙ୍ଗମ । ବିବିସିର ଗୋଟିଏ ଡକୁମେଣ୍ଟାରିରେ ଦେଖାଇ ଦିଆଯାଇଛି କେଉଁ ଉପାୟରେ ପୁଟପର୍ତ୍ତିର ସାଇବାବା ଶୂନ୍ୟରୁ ମୁଦି, ଶାଳଗ୍ରାମ ଇତ୍ୟାଦି ବାହାର କରୁଥିଲେ । ଓଡ଼ିଶାର ଜଣେ ଠକ କୁଆଡ଼େ ନିଜକୁ ବାବା ବୋଲାଇ ପ୍ରତିଷ୍ଠିତ କରିବା ପୂର୍ବରୁ ଦୁଇବର୍ଷର ମ୍ୟାଜିକ୍ ଟ୍ରେନିଂ ନେଇଥିଲା । ବାବାଜୀ, ତାନ୍ତ୍ରିକ, ଗୁଣିଆ ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଇବା ପାଇଁ ମ୍ୟାଜିକ୍‌କୁ ଏକ ପ୍ରଧାନ ଅସ୍ତ୍ର ଭାବରେ ବ୍ୟବହାର କରିଥାନ୍ତି । ମହାପୁରୁଷମାନଙ୍କ ବିଷୟରେ ମଧ୍ୟ ଏ ଭଳି ତଥ୍ୟମାନ ପ୍ରଚଳିତ କରାଯାଇଥାଏ, ଯଥା ଯୀଶୁଖ୍ରୀଷ୍ଟଙ୍କର ମରିବା ପରେ ଜୀଇଁବା, ମହମ୍ମଦଙ୍କର ପକ୍ଷୀରାଜ ଘୋଡ଼ାରେ ଚଢ଼ି ସ୍ୱର୍ଗକୁ ଯିବା ଇତ୍ୟାଦି ।

ନିକଟ ଅତୀତରେ ଅନେକ ଲୋକ ଗାନ୍ଧୀଙ୍କ ପାଖକୁ ରୋଗୀ ନେଇ ଆସୁଥିଲେ ସେ ଛୁଇଁ ଦେଲେ ରୋଗ ଭଲ ହୋଇଯିବ ବୋଲି । ସାଇବାବାଙ୍କ ପାଖରେ ଭଲ ହୋଇଯିବା ଆଶାରେ ରୋଗୀଙ୍କ ଭିଡ଼ ଜମୁଥିଲା । ମଦର ଟେରେସା ଏକ ଅସାଧ୍ୟ ରୋଗକୁ ଭଲ କରିଥିଲେ ବୋଲି ତଥ୍ୟ ଦିଆଗଲା କାରଣ ମିରାକ୍‌ଲ୍ କରିଥିବା ଚର୍ଚ୍ଚ ଦ୍ୱାରା ସେଣ୍ଟ୍ ପଦବୀ ଦେବାର ଗୋଟିଏ ସର୍ତ୍ତ । ଆମର ମଧୁବାବୁଙ୍କ ବିଷୟରେ ମଧ୍ୟ ନିମ୍ନଲିଖିତ କାହାଣୀ ଅଛି :

ଜଣେ ଲୋକ ପିତଳ ପାତ୍ରଟିଏ ଧରି ତାଙ୍କ ପାଖକୁ ଆସି କହିଲା, ଏ ପାତ୍ରରେ ଆପଣ ଆଙ୍ଗୁଠିଟିକୁ ବୁଡ଼ାଇ ଦିଅନ୍ତୁ । ମୋ ସ୍ତ୍ରୀ ଅତ୍ୟନ୍ତ ଗର୍ଭକଷ୍ଟ ପାଉଛି । ମଧୁବାବୁ ସେ ପାଣିରେ ଆଙ୍ଗୁଠି ବୁଡ଼ାଇଲେ ଓ ଗର୍ଭିଣୀ ତାହା ପାନ କରିବା ପରେ ଶିଶୁଟିଏ ନିରାପଦରେ ଜନ୍ମ ଗ୍ରହଣ କଲା ।(ସୂର୍ଯ୍ୟନାରାୟଣ ଦାଶ, ଦେଶପ୍ରାଣ ମଧୁସୂଦନ) ସେହିପରି ଅରବିନ୍ଦଙ୍କ ବିଷୟରେ କୁହାଯାଏ ଯେ ସେ କୁଆଡ଼େ ନିଜର ଯୋଗ ସାଧନା ଦ୍ୱାରା ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଷ୍ଟାଲିନଗ୍ରାଡ୍ ଓ ବ୍ରିଟେନର ଯୁଦ୍ଧରେ ହସ୍ତକ୍ଷେପ କରିଥିଲେ ।

ଅଲୌକିକ କଥାରେ ସାଧାରଣଙ୍କର ସବୁବେଳେ ଆଗ୍ରହ ଥାଏ ଏବଂ କୌଣସି ବାବାଙ୍କର ଏ ବିଦ୍ୟା କଥା ଅତି ଶୀଘ୍ର ପ୍ରସାରିତ ହୋଇଯାଏ । ସେପ୍ଟେମ୍ବର ୧୯୯୫ରେ ଗଣେଶ ମୂର୍ତ୍ତି ଦୁଧ ପିଉଥିବା ଖବର ଗୋଟିଏ ଦିନରେ ସାରା ପୃଥିବୀରେ ପ୍ରସାରିତ ହୋଇ ଚହଳ ପକାଇଥିଲା । ଯେତେବେଳେ ରେଡିଓ

ଟେଲିଭିଜନ ଇଣ୍ଟରନେଟ୍ ଇତ୍ୟାଦି ନ ଥିଲା, ସେତେବେଳେ ମଧ୍ୟ ମୁହଁରୁ ମୁହଁ କଥା ଯାଇ ଏ ଭଳି ଖବର ଅତି ଶୀଘ୍ର ସବୁଆଡ଼େ ପହଞ୍ଚି ଯାଉଥିଲା । ୧୯୫୦ ବେଳକୁ ଅନୁଗୁଳର ମଫସଲ ଗାଁ ରନ୍ତଲାଇରେ ଗୋଟିଏ ପିଲାକୁ ନେପାଳୀ ବାବା ଆଖ୍ୟା ଦେଇ କିଛି ଭଣ୍ଡ ଲୋକ ଓଡ଼ିଶା ବାହାରୁ ମଧ୍ୟ ସେଠାକୁ ଭକ୍ତ ଆଣି ପାରିଥିଲେ ।

ଯେଉଁ ଲୋକମାନଙ୍କର ଜୀବିକାରେ ଅଧିକ ଅନିଶ୍ଚୟତା ଥାଏ, ଯଥା ନେତା, ଅଭିନେତା ଓ ବ୍ୟବସାୟୀ, ସେମାନେ ସହଜରେ ଏ ଭଳି ବାବାମାନଙ୍କର ଶିକାର ହୋଇଥାନ୍ତି । ନିର୍ବାଚନ ଆଗରୁ ନେତାମାନଙ୍କ ସହିତ ଏମାନଙ୍କର ସଂପର୍କ ଆହୁରି ଘନିଷ୍ଠ ହୋଇଯାଏ । ଆମେରିକାର ରାଷ୍ଟ୍ରପତି ରେଗାନ୍‌ଙ୍କ ସ୍ତ୍ରୀ ନାନ୍‌ସି ତାଙ୍କ ପାଇଁ ଜ୍ୟୋତିଷଙ୍କର ପରାମର୍ଶ ନେଉଥିବା ସର୍ବବିଦିତ । ଆମ ଦେଶର ଅନେକ ନେତାଙ୍କର ଘରୋଇ ଗୁରୁ ଓ ଜ୍ୟୋତିଷ ଅଛନ୍ତି ଯାହାଙ୍କ ଉପଦେଶ ନେଇ ସେମାନେ ଦେଶକୁ ଚଳାନ୍ତି ।

ଏହି ବାବା ବା ଗୁରୁମାନଙ୍କର ନିଜ ଶିଷ୍ୟଙ୍କ ଉପରେ ଅସମ୍ଭବ କର୍ତ୍ତୃତ୍ୱ ଥାଏ, ଯାହାଦ୍ୱାରା ଗୁରୁ ଯାହା କହନ୍ତି ଭକ୍ତମାନେ ବିନା ପ୍ରଶ୍ନରେ ମାନିନିଅନ୍ତି । ବିଭିନ୍ନ ଆଶ୍ରମରେ ଚେଲାମାନେ ଗୁରୁଙ୍କ ଆଦେଶରେ ତାଙ୍କର ଶତ୍ରୁମାନଙ୍କୁ ହତ୍ୟା କରିବାର ଅନେକ ଦୃଷ୍ଟାନ୍ତ ଅଛି । ୧୯୭୮ରେ ଗୁରୁ ଜିମ୍ ଜୋନ୍‌ସ୍‌ଙ୍କର ଆଜ୍ଞାରେ ଦକ୍ଷିଣ ଆମେରିକାରେ ତାଙ୍କର ନ' ଶହ ଅନୁଗାମୀ ଆତ୍ମହତ୍ୟା କରିଥିଲେ । ଭଗବାନ ରଜନୀଶ ତାଙ୍କ ଫାଟକ ପାଖରେ ଠିକ ଲେଖିଥିଲେ, ଭିତରକୁ ଆସିବା ଆଗରୁ ବାହାରେ ଜୋତା ଓ ବୁଦ୍ଧିକୁ ଛାଡ଼ି ଆସ ।

ଭବିଷ୍ୟତ ବିଷୟରେ ଜାଣିବା ପାଇଁ ସମସ୍ତଙ୍କର ଆଗ୍ରହ ଥାଏ ଏବଂ ଏହା ହିଁ ହେଉଛି ଜ୍ୟୋତିଷମାନଙ୍କର ସଫଳତା ଓ ଲୋକପ୍ରିୟତାର ମୂଳ । ଖବରକାଗଜମାନଙ୍କରେ ସେଥିପାଇଁ ପ୍ରତିଦିନ ରାଶିଫଳ ପ୍ରକାଶ ପାଏ ଏବଂ ଅନେକେ ଆଗ୍ରହର ସହିତ ଏହାକୁ ପଢ଼ନ୍ତି, ଯଦି ଓ ସମସ୍ତେ ଜାଣନ୍ତି ପ୍ରତିଟି ରାଶିର ଫଳାଫଳ ପୃଥିବୀର ବାର ଭାଗରୁ ଏକ ଭାଗ ଲୋକଙ୍କ ପାଇଁ ପ୍ରଯୁଜ୍ୟ ହୋଇ ନପାରେ । ଏ ଭଳି ଜ୍ୟୋତିଷ ବିଦ୍ୟାକୁ ସମାଲୋଚନା କରି ବୈଜ୍ଞାନିକ ମେଘନାଦ ସାହା ଗଣକମାନଙ୍କ ବିଷୟରେ ଏପରି ମନ୍ତବ୍ୟ କରିଛନ୍ତି : ଗଣିକା ଓ ଗଣକ ଦୁହିଙ୍କର ଧର୍ମ ଏକ । ଦୁହେଁ ନିଜର ପଞ୍ଜାଙ୍ଗ ଦେଖାନ୍ତି । ଉଭୟେ ଲୋକଙ୍କ ମନକୁ ମୋହଗ୍ରସ୍ତ କରନ୍ତି । ବିଧାତା ଏହି ବିତ୍ତହରଣକାରୀଙ୍କୁ ତିଆରି କରିଛନ୍ତି ।

ଭବିଷ୍ୟଦ୍‌ବାଣୀର ଏକ ଚୂଡ଼ାନ୍ତ ଉଦାହରଣ ହେଲା ନସ୍‌ଟ୍ରାଡାମସ୍‌(୧୬ଶ ଶତାବ୍ଦୀ)ଙ୍କର ଚାରିଧାଡ଼ିଆ ପଦ୍ୟାବଳୀ, ଯେଉଁଥିରେ ସେ ହିଟଲର, ବିଶ୍ୱଯୁଦ୍ଧ ଓ ଏପରିକି ୨୦୦୧ର ୯/୧୧ କଥା ଲେଖାଯାଇଛନ୍ତି ବୋଲି କୁହାଯାଏ । ଏ ସବୁ ଲେଖା ଅସ୍ପଷ୍ଟ ଓ ଅନିର୍ଦ୍ଦିଷ୍ଟ ଭଙ୍ଗୀରେ ଲେଖାଯାଇଥାଏ ଯେଉଁଥିରୁ ବିଭିନ୍ନ ଅର୍ଥ ବାହାର କରାଯାଇପାରେ । ଆମର **ଅଚ୍ୟୁତାନନ୍ଦ ମାଳିକା**ରେ ମଧ୍ୟ ଭବିଷ୍ୟଦ୍‌ବାଣୀ କରାଯାଇଛି, ଯାହାର ଗୋଟିଏ ଉଦାହରଣ ହେଲା :

ଦେଖୁ ଦେଖୁ ସୈନ୍ୟବଳ ପଶିବେ ଧସାଇ
ଦିହୁଡ଼ି ଲାଗିବ ଦିନେ ଅଚ୍ୟୁତି କହଇ ।
ଧରି ମାରୁଥିବେ ଜଣେ ଜଣେ ସୈନ୍ୟ ବଳ
ଧ୍ୱଂସିବେ ଯବନ ବଳ କରି ରଣଗୋଳ ।

ଏହାକୁ ଟାଣିଓଟାରି ସେପ୍ଟେମ୍ବର ୨୯, ୨୦୧୬ ରାତିରେ କାଶ୍ମୀର ସୀମାନ୍ତରେ ହୋଇଥିବା ସର୍ଜିକାଲ ଷ୍ଟ୍ରାଇକ୍‌ର ଭବିଷ୍ୟଦ୍‌ବାଣୀ ବୋଲି କୁହାଯାଇପାରେ ।

ଏହି ବାବାଜୀମାନେ ଭବିଷ୍ୟଦ୍‌ବାଣୀ କହିବା ବ୍ୟତୀତ ଆହୁରି ଏକ ବିପଜ୍ଜନକ କାମ ମଧ୍ୟ କରିଥାନ୍ତି, ତା ହେଲା ରୋଗ ପାଇଁ ଔଷଧ ଦେବା । ସେମାନେ ଦେଉଥିବା ଜଡ଼ିବୁଟି, ଟୁଣ୍ଟୁଣୁକା ଉପରେ କୌଣସି ସରକାରୀ ନିୟନ୍ତ୍ରଣ ନାହିଁ ଏବଂ ଗାଁ ଗହଳରେ ଝଡ଼ାଫୁଙ୍କା ଅତି ପ୍ରଚଳିତ । ଓଡ଼ିଶାରେ ପ୍ରତିଦିନ ଖବର ମିଳେ ଛୋଟ ପିଲାଙ୍କୁ ଚେଙ୍କ ଦିଆ ଯାଉଥିବାର । ସହରମାନଙ୍କରେ ମଝିରେ ମଝିରେ ଖ୍ରୀଷ୍ଟିଆନ୍ ଫେଥ୍ ହିଲର ବା ଆସ୍ଥା ଚିକିତ୍ସକ ଦେଖା ଦିଅନ୍ତି ଯେଉଁମାନେ ମନ୍ତ୍ର ପଢ଼ି ଅସାଧ୍ୟ ରୋଗକୁ ଉପଶମ କରିବାର ଦାବୀ ରଖନ୍ତି । ଓଡ଼ିଶାରେ ପାଦୁକା, ଚରଣାମୃତ, ମନ୍ତୁରା ଜଳର ଅବାଧ ପ୍ରଚଳନ ଅଛି । ସାପ କାମୁଡ଼ିଲେ ଓ ବର୍ତ୍ତମାନ ଜାପାନିଜ୍ ଏନ୍‌ସେଫାଲାଇଟିସ୍ ପାଇଁ ଲୋକେ ଡାକ୍ତରଖାନା ନ ଯାଇ ଗୁଣିଆ ଓ ଦିଶାରି ପାଖକୁ ଯାଉଛନ୍ତି ।

ଆଜିକାଲି ଆଲୋପାଥି ବଦଳରେ ଅଲ୍‌ଟରନେଟ୍ ବା ବିକଳ୍ପ ଔଷଧ କଥା କୁହାଯାଉଛି ଯେଉଁଥିରେ ଆୟୁର୍ବେଦ, ୟୁନାନୀ ଓ ହୋମିଓପାଥି ଇତ୍ୟାଦି ଅନ୍ତର୍ଭୁକ୍ତ । ଏ ସବୁ ପଦ୍ଧତିର ଯଥେଷ୍ଟ ଗବେଷଣା ଓ ବିକାଶ ହୋଇନାହିଁ ଏବଂ ବ୍ୟବହାର ଓ ପରୀକ୍ଷା ଦ୍ୱାରା ଏହି ପ୍ରଣାଳୀମାନ ପ୍ରମାଣିତ ହୋଇନାହାନ୍ତି । ଆଜିର ଆୟୁର୍ବେଦ ଓ ହଜାର ବର୍ଷ ତଳର ଆୟୁର୍ବିଜ୍ଞାନ ଭିତରେ କୌଣସି ପ୍ରଭେଦ ନାହିଁ । ହୋମିଓପାଥିର

ମୂଳ ତତ୍ତ୍ୱ ହେଲା ଯେ ଯେତେ ପାଣି ମିଶାଇବ ଔଷଧର ଶକ୍ତି ସେତିକି ବଢ଼ିବ । ଏ କଥା ଅବୈଜ୍ଞାନିକ ଏବଂ ଏହା ରସାୟନ ଓ ପଦାର୍ଥ ବିଜ୍ଞାନର ମୌଳିକ ତଥ୍ୟର ବିରୋଧୀ । ବର୍ତ୍ତମାନ ଆୟୁର୍ବେଦକୁ ଲୋକପ୍ରିୟ କରିବା ପାଇଁ ଉଗ୍ର ପ୍ରଚେଷ୍ଟା କରାଯାଉଛି । ନିକଟରେ ଉତ୍ତରାଖଣ୍ଡ ସରକାର ହନୁମାନ ବ୍ୟବହାର କରିଥିବା ମୃତ ସଂଜୀବନୀ ଗଛ ଖୋଜି ବାହାର କରିବା ପାଇଁ ଗୋଟିଏ କମିଟି ତିଆରି କରିଛନ୍ତି । ଯୋଗଗୁରୁ ରାମଦେବ ଏହି ଗଛର ସନ୍ଧାନ ପାଇବା ପରେ ଏହାର ପେଟେଣ୍ଟ ପାଇଁ ଦରଖାସ୍ତ କରିଛନ୍ତି ।

ଆମ ଦେଶରେ ପ୍ରାଚୀନ କାଳରେ ଔଷଧ ଭଳି ଅନ୍ୟାନ୍ୟ ବିଷୟରେ ମଧ୍ୟ ଜ୍ଞାନ ଉପଲବ୍ଧ ଥିଲା । ଏ ବିଷୟରେ ବର୍ତ୍ତମାନ ଉତ୍ତେଜିତ ଆଲୋଚନା ହେଉଛି । ଭାରତୀୟ ବିଜ୍ଞାନର ଇତିହାସ ଅତି ପୁରୁଣା ଏବଂ ଏଥିରେ ସନ୍ଦେହ ନାହିଁ ଯେ ଏକ ସମୟରେ ଆମର ଜ୍ୟୋତିର୍ବିଦ୍ୟା, ଗଣିତ ଓ ଔଷଧ ଶାସ୍ତ୍ର ସାରା ପୃଥିବୀରେ ଅଗ୍ରଣୀ ଥିଲା ଏବଂ ଏ ସବୁ ପରେ ୟୁରୋପରେ ପହଞ୍ଚିଲା, ଆରବିକ ଅନୁବାଦ ମାଧ୍ୟମରେ । ଆମର ପ୍ରାଚୀନ ବିଜ୍ଞାନର କେତେକ କୃତିତ୍ୱ ହେଲା ଗଣିତ( ଭାସ୍କରାଚାର୍ଯ୍ୟଙ୍କ ସମୟରେ ତାଙ୍କ ଭଳି ଗଣିତଜ୍ଞ ସାରା ପୃଥିବୀରେ କେଉଁଠାରେ ନଥିଲେ ।) ଅଥର୍ବ ବେଦର ଚରକ ସଂହିତାରେ ମଣିଷ ଦେହର ଅଙ୍ଗପ୍ରତ୍ୟଙ୍ଗର ଜ୍ଞାନ, ଛାନ୍ଦୋଗ୍ୟ ଉପନିଷଦ୍‌ରେ ପ୍ରାଣୀମାନଙ୍କର ଶ୍ରେଣୀ ବିଭାଗ, ଶଲ୍ୟ ଶାସ୍ତ୍ର, ପାଳି କରି ଶସ୍ୟ ରୋପଣ, ଇତ୍ୟାଦି । ଏ ସବୁ ବିଷୟରେ ଗର୍ବ ଅନୁଭବ କରିବା ବଦଳରେ ଆମେ ଉଦ୍‌ଭଟ ଦାବୀ କରୁଛୁ ଯେ ପ୍ରାଚୀନ କାଳରେ ଆମର ଉଡ଼ାଜାହାଜ, କଂପ୍ୟୁଟର୍ ଓ ଆଣବିକ ଅସ୍ତ୍ର ଥିଲା । ଏଥିପାଇଁ ପୁଷ୍ପକ ବିମାନ ଓ ମହାଭାରତ ଯୁଦ୍ଧରେ ଅଶ୍ୱତ୍‌ଥାମା ଭବିଷ୍ୟତ ବଂଶଧରଙ୍କୁ ନିପାତ କରିବା ପାଇ ଅସ୍ତ୍ର ପ୍ରୟୋଗ କରିବା କଥା କୁହାଯାଏ । ଯଦି ବି ଯୁକ୍ତି ଛଳରେ ଏ କଥା ମାନିନିଆଯାଏ, ଶାସ୍ତ୍ରରେ ଏ ଭଳି କୌଣସି ବୈଜ୍ଞାନିକ ବ୍ୟାଖ୍ୟା ନାହିଁ ଯାହା ଦ୍ୱାରା ଉଡ଼ାଜାହାଜ ବା କଂପ୍ୟୁଟର ତିଆରି କରାଯାଇପାରିବ । ୧୯୫୦ ଦଶକରେ ଏକ ବୈମାନିକ ଶାସ୍ତ୍ର ମିଳିଥିବାର ଦାବୀ କରାଯାଉଛି ଯେଉଁଥିରେ ଉଡ଼ାଜାହାଜ ତିଆରି କରିବା କଥା ଅଛି, ଏବଂ କର୍ଣ୍ଣାଟକ ସରକାର ଏହି ବିଷୟରେ ଗବେଷଣାକୁ ସାହାଯ୍ୟ କରୁଛନ୍ତି । ଆୟୁର୍ବେଦ ପାଇଁ ବର୍ତ୍ତମାନ କୁହାଯାଉଛି ଯେ ଏହାଦ୍ୱାରା କ୍ୟାନ୍‌ସର( ଏବଂ ସମଲିଙ୍ଗୀ 'ରୋଗ') ଭଲ କରି ଦିଆଯାଇପାରିବ ।

ଅନ୍ୟ ଦିଗରେ କିଛି ହିନ୍ଦୁ ମୌଳବାଦୀ ବିରୋଧୀ ଆମର ପ୍ରାଚୀନ ସଫଳତାକୁ ମାନିବାକୁ ପ୍ରସ୍ତୁତ ନୁହନ୍ତି । ଯଦିଓ ଶୂନ ଏବଂ ଦଶମିକ ପଦ୍ଧତି ଭାରତବର୍ଷରୁ ଆରମ୍ଭ ହୋଇଥିଲା ବୋଲି ସର୍ବବିଦିତ, ବର୍ତ୍ତମାନ କିଛି ଲୋକ ଚୀନ୍‌କୁ ଏହାର ଜନ୍ମଦାତା ବୋଲି କହୁଛନ୍ତି ।

ଆମ ଦେଶରେ ବିଜ୍ଞାନର ପ୍ରଗତି ନ ହେବାର କାରଣ ହେଉଛି ଶାସ୍ତ୍ର ଓ ଗୁରୁଜନଙ୍କୁ ବିନା ପ୍ରଶ୍ନ ମାନିନେବାର ପରଂପରା । ବିଜ୍ଞାନ ସମୃଦ୍ଧ ହୁଏ ଗବେଷଣା କରି, ପରୀକ୍ଷା ନିରୀକ୍ଷା କରି ଏବଂ ବିଶେଷରେ ପ୍ରଶ୍ନ କରି । ଆମର ପୁରାତନୀ ପ୍ରଥାରେ ଗୁରୁଜନମାନଙ୍କୁ ପ୍ରଶ୍ନ କରାଯାଏ ନାହିଁ । ଗାର୍ଗୀ ବାରମ୍ବାର ପ୍ରଶ୍ନ କରିବାରୁ ଗୁରୁ ଯାଜ୍ଞବଲ୍କ୍ୟ କହିଲେ, ବେଶି ପ୍ରଶ୍ନ କଲେ ତମେ ତମର ମୁଣ୍ଡ ହରାଇବ ! ପ୍ରଶ୍ନ କରୁ ନଥିବାରୁ ଆମେମାନେ ଅମୁକ ଲୋକ କାହାର ପାଦୋଦକ ପିଇ ରୋଗମୁକ୍ତ ହୋଇଗଲା ସେଇ ଉଡ଼ା ଖବରରୁ ବାବାଙ୍କ ଡାକ୍ତରୀ ଦକ୍ଷତା ବିଷୟରେ ନିଃସନ୍ଦେହ ହୋଇଯାଉ ।

ଏ ଭଳି ପ୍ରଚଳନ ବିରୁଦ୍ଧରେ ବୁଦ୍ଧ କହିଥିଲେ, କୌଣସି ବିଷୟ କୁହାଯାଇଛି ବୋଲି ବା ସେଇଟି ପରଂପରାଭିତ୍ତିକ ବୋଲି ସେଥିରେ ବିଶ୍ୱାସ କରିବ ନାହିଁ; ଶିକ୍ଷକ ଯାହା କହୁଛନ୍ତି କେବଳ ତାଙ୍କୁ ସମ୍ମାନ ଦେଖାଇବା ପାଇଁ ସେଥିରେ ବିଶ୍ୱାସ କରିବ ନାହିଁ । ଗାନ୍ଧୀ ମଧ୍ୟ କହିଥିଲେ, ଯଦି ମତେ କୁହାଯାଏ ଯେ କୌଣସି ଶାସ୍ତ୍ର ଅସ୍ପୃଶ୍ୟତାକୁ ସମର୍ଥନ କରୁଛି, ମୁଁ ସେ ଶାସ୍ତ୍ରକୁ ପ୍ରତ୍ୟାଖ୍ୟାନ କରିବି । ଏ ବିଷୟରେ ନେହରୁ ସବୁବେଳେ ସାଇଣ୍ଟିଫିକ୍ ଟେମ୍ପର୍ ବା ବୈଜ୍ଞାନିକ ଦୃଷ୍ଟିକୋଣ କଥା କହୁଥିଲେ ଯାହା ବର୍ତ୍ତମାନ ଆମ ସମ୍ବିଧାନର ୫୧ କ ଅନୁଚ୍ଛେଦରେ ସ୍ଥାନ ପାଇଛି ।

ମଜାର କଥା ଯେ ସେହି ନେହରୁ ୧୯୪୪ରେ ଝିଅ ଇନ୍ଦିରାଙ୍କ ପାଖକୁ ଚିଠି ଲେଖିଥିଲେ ନବଜାତ ରାଜୀବ ପାଇଁ ଗୋଟିଏ ଶୁଦ୍ଧ ଜନ୍ମପତ୍ରୀ ତିଆରି କରିବାକୁ । ଏବଂ ଶେଷ ଜୀବନରେ ତାଙ୍କ ଜାଣତରେ ତାଙ୍କର ଆୟୁଷ ବଢ଼ାଇବା ପାଇଁ ପୂଜାପାଠ କରାଯାଇଥିଲା । ପରବର୍ତ୍ତୀ ସମୟରେ ଉଭୟ ଇନ୍ଦିରା ଓ ରାଜୀବ ଗାନ୍ଧୀ ବାବାମାନଙ୍କ ପାଖକୁ ଯାଉଥିଲେ । ଦୁହେଁ ୨୫୦ ବର୍ଷ ବୟସ୍କ ବୋଲି କୁହାଯାଉଥିବା ଦେଓରାହ ବାବାଙ୍କ ପାଦକୁ ନିଜ ମୁଣ୍ଡ ଉପରେ ରଖି ତାଙ୍କର ଆଶୀର୍ବାଦ ନେଇଥିବାର ଖବର ଅଛି ।

ଶିକ୍ଷା ସୂଚନାର ପ୍ରଗତି ସତ୍ତ୍ୱେ କିନ୍ତୁ ଆମ ଦେଶରେ ବୈଜ୍ଞାନିକ ଦୃଷ୍ଟିକୋଣର ଯଥାଯଥ ବିକାଶ ହୋଇନାହିଁ ଏବଂ ଆମେ ପୌରାଣିକ କଥାକୁ ବିଜ୍ଞାନ ସହିତ

ସମାନ ଆସନ ଦେଉ । ୨୦୧୪ରେ ଏକ ଭାଷଣରେ ପ୍ରଧାନମନ୍ତ୍ରୀ ମୋଦି କହିଥିଲେ ଯେ ଭାରତରେ ପ୍ଲାଷ୍ଟିକ୍ ସର୍ଜରି ଥିବା ପ୍ରମାଣିତ ହୁଏ ଗଣେଶଙ୍କ ଦୃଷ୍ଟାନ୍ତରୁ । ୨୦୧୫ ଭାରତୀୟ ବିଜ୍ଞାନ କଂଗ୍ରେସରେ ଜଣେ ଦାବୀ କଲେ ଯେ ବୈଦିକ ସମୟରେ ଜଣେ ଋଷି ଉଡ଼ାଜାହାଜ ଉଦ୍‌ଭାବନ କରିଥିଲେ । ଏ ସବୁ ଦେଖି ନୋବେଲ ବିଜେତା ରାମକୃଷ୍ଣନ ୨୦୧୬ ବିଜ୍ଞାନ କଂଗ୍ରେସକୁ ଗୋଟିଏ ସର୍କସ ଆଖ୍ୟା ଦେଇଥିଲେ, ଯେଉଁଠାରେ ଅତି କମ ବିଜ୍ଞାନ ଆଲୋଚିତ ହୁଏ । ସେଥିପାଇଁ କେତେକ ବୈଜ୍ଞାନିକ ଏହି କଂଗ୍ରେସକୁ ଭାଙ୍ଗି ଦେବାର ପ୍ରସ୍ତାବ ଦେଇଥିଲେ ।

ବୈଜ୍ଞାନିକ ଦୃଷ୍ଟିକୋଣରେ ବିଶ୍ୱାସ ରଖିଥିବା ଲୋକକୁ ଅନେକ ସମୟରେ ବ୍ୟକ୍ତିଗତ ପ୍ରଶ୍ନ ପଚରା ଯାଇଥାଏ, ଯଥା : ଆପଣ କଣ ମନ୍ଦିରକୁ ଯାନ୍ତି, ଆପଣ ଖବର କାଗଜରେ ରାଶି ଫଳ ଦେଖନ୍ତି କି, କେବେ ହୋମିଓପାଥି ଔଷଧ ଖାଇଛନ୍ତି, ଭୂତପ୍ରେତକୁ କଣ ଆପଣଙ୍କ ଭୟ ନାହିଁ, ଇତ୍ୟାଦି । ଏହାର ଉତ୍ତର ହଁ ନା କେବେ କେବେ ବା ସଙ୍ଗ ଦୋଷରୁ ହୋଇପାରେ । ଭୂତରେ ବିଶ୍ୱାସ ନଥାଇ ମଧ୍ୟ ଜଣେ ଅନ୍ଧାରରେ ତଥାକଥିତ ଭୂତକୁ ଡରିପାରେ । ଗୁରୁଜନଙ୍କ ମେଳରେ ମନ୍ଦିରକୁ ଯାଇ ଠାକୁରଙ୍କୁ ହାତ ଯୋଡ଼ିବା ଈଶ୍ୱର ବିଶ୍ୱାସର ପ୍ରମାଣ ନୁହେଁ । ହୋମିଓପାଥି ଔଷଧ ମିଠା ଲାଗେ ବୋଲି ଖିଆ ଯାଇପାରେ । ଏବଂ ମୋଟ କଥା ହେଲା ଯେ ଏଇ ଲୋକଟି କଣ କଲା ନକଲା ବୈଜ୍ଞାନିକ ସତ୍ୟର ତା ସହିତ କୌଣସି ସଂପର୍କ ନାହିଁ ।

କୁହାଯାଏ ଯେ ପରମାଣୁ ବୋମାର ଅନ୍ୟତମ ଉଦ୍‌ଭାବକ ଓ ନୋବେଲ ବିଜେତା ନୀଲ୍‌ସ୍ ବ'ର୍‌ଙ୍କ କବାଟ ବନ୍ଧରେ ଗୋଟିଏ ଘୋଡ଼ା ନାଲ ଲାଗିଥିଲା ଯାହା ଶୁଭଂକରୀ ବୋଲି ଧରାଯାଇଥାଏ । ଏହି କୁସଂସ୍କାରରେ ସେ ବିଶ୍ୱାସ କରନ୍ତି କି ବୋଲି ଜଣେ ତାଙ୍କୁ ପ୍ରଶ୍ନ କରିବାରେ ସେ କୁଆଡ଼େ କହିଥିଲେ, ମୁଁ ଶୁଣିଛି ଯେ ତମେ ବିଶ୍ୱାସ କର ବା ନକର, ଏଥିରୁ ଭଲ ଫଳ ମିଳିଥାଏ ।

ଏହି କାଳ୍ପନିକ ମଜା କଥାରେ ଯେଉଁ ସାରତତ୍ତ୍ୱ ଅଛି ତା ହେଲା, ବୈଜ୍ଞାନିକ ସତ୍ୟ କୌଣସି ବ୍ୟକ୍ତିବିଶେଷର ବିଶ୍ୱାସ ଅବିଶ୍ୱାସର ବଶବର୍ତ୍ତୀ ନୁହେଁ ।

*ନଭେମ୍ବର, ୨୦୧୬*

# ଚୁପ ରହିବାର ଅପରାଧ

ଅନେକ ସମୟରେ ଖବରକାଗଜ ବା ଟେଲିଭିଜନରେ ପ୍ରସାରିତ କିଛି ଫଟୋ ଓ ଭିଡିଓ କାଳକ୍ରମେ 'ଆଇକନ୍' ବା ପ୍ରତିମାର ମର୍ଯ୍ୟାଦା ପାଇଥାନ୍ତି । ପୃଥିବୀର ମିଡିଆ ଇତିହାସରେ ଏ ଭଳି କେତୋଟି ଆଇକନିକ ଚିତ୍ରର ଉଦାହରଣ ହେଲା:

- ଜୁନ ୧୯୬୩ରେ ସାଇଗନ୍‌ର ରାସ୍ତା ଉପରେ ଜଣେ ବୌଦ୍ଧ ସନ୍ନ୍ୟାସୀଙ୍କର ନିଜକୁ ନିଆଁରେ ଜାଳି ଦେଉଥିବାର ଦୃଶ୍ୟ ।

- ଜୁନ ୧୯୮୯ରେ ବେଜିଂର ଟିଆନାନ୍‌ମେନ୍ ସ୍କୋୟାର୍‌ରେ ଜଣେ ସାଧାରଣ ଲୋକ ଧାଡ଼ିବାନ୍ଧି ଆସୁଥିବା ସାମରିକ ଟ୍ୟାଙ୍କମାନଙ୍କ ଗତିରୋଧ କରିଦେଉଥିବାର ଭିଡିଓ ।

-ମାର୍ଚ୍ଚ ୧୯୯୩ରେ ସୁଦାନରେ ଗୋଟିଏ କଂକାଳସାର ଶିଶୁ ଓ ଅନତିଦୂରରେ ତାର ମରିବାକୁ ଅପେକ୍ଷା କରି ରହିଥିବା ଶାଗୁଣାର ଚିତ୍ର । ଇତ୍ୟାଦି ।

ତା ସହିତ ଯୋଡ଼ି ଦିଆଯାଇପାରେ ନିକଟରେ ଘଟିଥିବା ଓଡ଼ିଶାର ଏକ ପ୍ରତିମା- ନିଜ ସ୍ତ୍ରୀଙ୍କର ଶବକୁ କାନ୍ଧରେ ବୋହି ଧରିଥିବା ଦାନ ମାଝିଙ୍କର ପଦଯାତ୍ରା । ୧୯୧୬ ଅଗଷ୍ଟ ୨୪ ତାରିଖ ସକାଳ ଗୋଟାଏ ବେଳେ କଳାହାଣ୍ଡିର ଭବାନୀପାଟଣା ହସପିଟାଲରେ ଦାନ ମାଝିଙ୍କର ସ୍ତ୍ରୀଙ୍କର ମୃତ୍ୟୁ ହେଲା । ଦାନଙ୍କର ସ୍ତ୍ରୀ ଚାହୁଁଥିଲେ ମୃତ୍ୟୁ ପରେ ତାଙ୍କର ସତ୍କାର ହେବ ନିଜ ଗାଁରେ । ଶବକୁ ଗାଡ଼ିରେ ନେବା ପାଇଁ ଦାନଙ୍କ ପାଖରେ ପଇସା ନଥିଲା ଏବଂ ତାଙ୍କୁ କେହି ସାହାଯ୍ୟ କରିବାକୁ ଆସିଲେ ନାହିଁ । ତେଣୁ ସେ ସକାଳ ପାଞ୍ଚଟା ବେଳେ ସ୍ତ୍ରୀଙ୍କର ଶବକୁ କାନ୍ଧରେ ଧରି ଚାଲିବାକୁ ଆରମ୍ଭ କଲେ । ତାଙ୍କ ସହିତ ତାଙ୍କ ପାଦରେ ପାଦ ଦେଇ ଚାଲୁଥିଲା ଶୋକରେ ଜଡ଼ ହୋଇଯାଇଥିବା ତାଙ୍କର ବାର

ବର୍ଷର ଝିଅ । ଦଶ କିଲୋମିଟର ଚାଲିବା ପରେ ସେମାନେ ଶଗଡ଼ା ଚେକ୍ ପୋଷ୍ଟ ପାଖରେ ପହଞ୍ଚିଲେ । ଏତେବେଳେ କେହି ସେମାନଙ୍କୁ ଦେଖି ପାଖର ସମ୍ବାଦଦାତାଙ୍କୁ ଖବର ଦେଲା ଏବଂ ସେଠାରେ କ୍ୟାମେରାମ୍ୟାନ ଆସି ପହଞ୍ଚିଗଲେ ।

ବହୁଳ ପ୍ରଚାରିତ ଓ ପ୍ରସାରିତ ସ୍ଥିର ଓ ଚଳଚ୍ଚିତ୍ରରେ ଆମେ ଦେଖିବାକୁ ପାଉ ଯେ ଦାନ ମାଝି ତଳୁ ସ୍ତ୍ରୀଙ୍କର ଶବ ଉଠାଇ ଚାଲିଛନ୍ତି (ଯାହା ବୋଧହୁଏ ଫଟୋଗ୍ରାଫରଙ୍କ ନିର୍ଦ୍ଦେଶରେ ହୋଇଥିଲା) । ଏବଂ ତାଙ୍କ ପାଖରେ ଚାଲୁଛି ହାତରେ ଥଳି (ଯେଉଁଥିରେ ବୋଧହୁଏ ଅଛି ତାଙ୍କର ସବୁ ସମ୍ପତ୍ତି) ଧରି ଛୋଟ ଝିଅଟି । ରାସ୍ତା ପାଖରେ ଧାଡ଼ି ହୋଇ ଏ ଦୃଶ୍ୟ ଦେଖୁଛନ୍ତି କିଛି ଦେଖଣାହାରି ।

ଏ ଚିତ୍ର ଦେଖିଲେ ଦାନ ମାଝି ଜଣା ପଡ଼ନ୍ତି ଜଣେ ସ୍ୱାଭିମାନୀ, ଦୃଢ଼ ସଂକଳ୍ପ, ପ୍ରତିଜ୍ଞାବଦ୍ଧ, ନିଜ ଉପରେ ଆସ୍ଥା ରଖିଥିବା ଓ ବିପଦରେ ବିଚଳିତ ହେଉ ନଥିବା ଯୋଦ୍ଧା ଏବଂ ତାଙ୍କର ଝିଅ ନିଜର ଅପ୍ରମିତ ଦୁଃଖ ଓ ଯନ୍ତ୍ରଣା ସତ୍ତ୍ୱେ ସାଥି ଦେଉଥିବା ସାହସୀ ଅବଲମ୍ବ । ରାସ୍ତା କଡ଼ରେ ଛିଡ଼ା ହୋଇଥିବା ଲୋକଙ୍କୁ ଦେଖିଲେ ବୋଧ ହୁଏ ସେମାନେ ହେଉଛନ୍ତି ସ୍ପୃହାହୀନ, ଖେଳ ଦେଖିବାକୁ ଆସିଥିବା କୌତୂହଳୀ ଦର୍ଶକ ମାତ୍ର ।

ଖବର ଓ ସୋସାଲ ମିଡ଼ିଆରେ ଏହି ଆଇକନିକ ଛବିଟି ପ୍ରଚାରିତ ହେବାରେ ହଠାତ୍ ସମସ୍ତେ ଚଳଚଞ୍ଚଳ ହୋଇଉଠିଲେ । ସାରା ଓଡ଼ିଶାରେ, ଓଡ଼ିଶା ବାହାରେ ଏବଂ ବିଦେଶରେ ଏହି ଚିତ୍ର ବହୁଳ ପ୍ରସାରିତ ହେଲା । ନିଦରୁ ଉଠି ସରକାର କୈଫିୟତ ମାଗିଲେ କାହିଁକି ମହାପ୍ରୟାଣ ଯୋଜନାରେ ଶବ ପରିବହନ ପାଇଁ ଗାଡ଼ି ଯୋଗାଇ ଦିଆହେଲା ନାହିଁ । ଦିଲ୍ଲୀରୁ ପ୍ରଧାନମନ୍ତ୍ରୀ ଓଡ଼ିଶା ସରକାରଙ୍କ ପାଖରୁ ରିପୋର୍ଟ ମାଗିଲେ । ଖବରକାଗଜର ବର୍ଣ୍ଣନା ଅନୁସାରେ ଜିଲ୍ଲା କର୍ତ୍ତୃପକ୍ଷ ଲୋକ ପଠାଇ ସ୍ତ୍ରୀଙ୍କର ଶୁଦ୍ଧିକର୍ମରେ ବ୍ୟସ୍ତ ଥିବା ଦାନ ମାଝିଙ୍କୁ ଧରି ଆଣି ସାଦା କାଗଜରେ ତାଙ୍କର ଦସ୍ତଖତ ନେଇନେଲେ । ବିରୋଧୀ ଦଳ ନେତାମାନେ ଦାନ ମାଝିଙ୍କ ମେଲଘରା ଗାଁରେ ପହଞ୍ଚିଗଲେ ଏବଂ ଦାନ ପାଲଟି ଗଲେ ରାଜନୀତି ପଶାପାଲିର ଦାନ ।

ତା ପରେ ଚାଲିଲା ସାହାଯ୍ୟର ଲୋକ ଦେଖାଣିଆ ସୁଅ । ସରକାର ଦାନଙ୍କୁ

କ୍ଷତିପୂରଣ ଦେଲେ । ବିଭିନ୍ନ ସଂସ୍ଥା ସାହାଯ୍ୟ ପାଇଁ ଟଙ୍କା ପଠାଇଲେ । ଶିକ୍ଷାନୁଷ୍ଠାନ ଦାନଙ୍କ ପିଲାମାନଙ୍କର ପଢ଼ାଶୁଣାର ଦାୟିତ୍ୱ ନେବେ ବୋଲି ପ୍ରତିଶ୍ରୁତି ଦେଲେ । ଏ ସବୁ ସାହାଯ୍ୟ ମୂଳରେ ସ୍ୱାର୍ଥ ଥିଲା ନିଜକୁ ବିଜ୍ଞାପିତ କରିବା । ବାହରେନ୍‌ର ପ୍ରଧାନମନ୍ତ୍ରୀ ନ' ଲକ୍ଷ ଟଙ୍କାର ସାହାଯ୍ୟ ଦେଲେ । କିନ୍ତୁ ଯେଉଁ ଟଙ୍କା ସିଧା ସଳଖ ଦାନ ମାଝିଙ୍କ ପାଖକୁ ପଠାଇ ଦିଆଯାଇ ପାରିଥାନ୍ତା, ସେ ଚେକ୍‌ଟି ଆଣିବା ପାଇଁ ଦାନ ଦିଲ୍ଲୀକୁ ଟଣା ହେଲେ, ଚେକ୍‌ଟିକୁ ହାତରେ ଧରିଥିବା ଫଟୋ ଉଠାଯାଇପାରିବ ବୋଲି ।

ଘଟଣାର ତିନିମାସ ପରେ ମଧ ଦାନମାଝି ଖବରରୁ ବିସ୍ମୃତ ହୋଇ ନାହାନ୍ତି । ତାଙ୍କ ଉପରେ କବିତା ଲେଖା ହେଉଛି ଏବଂ ଅନ୍ତତଃ ଗୋଟିଏ ନାଟକ ମଞ୍ଚସ୍ଥ ହୋଇଛି । (ଗୋଟିଏ କବିତାର ଦାର୍ଶନିକ ପଂକ୍ତି : ପ୍ରତ୍ୟେକକୁ କାନ୍ଧରେ ଶବର ଭାର ନେବାକୁ ପଡ଼େ, ନିଜ ଶବର ମଧ, ଏବଂ ନିରନ୍ତର ଯିବାକୁ ପଡ଼େ ଅହପଞ୍ଚ ଦିଗନ୍ତର ଲକ୍ଷ୍ୟ ସ୍ଥଳକୁ) । ସଭା ସମିତିରେ ବିପକ୍ଷ ଦଳର ନେତାମାନେ ନିଶ୍ଚୟ ଏ ପ୍ରସଙ୍ଗ ଉଠାଉଛନ୍ତି । ଦାନ ମାଝିଙ୍କ ଫଟୋ ଓ ଭିଡିଓ ଏ ପର୍ଯ୍ୟନ୍ତ ଜନମାନସକୁ ଆଚ୍ଛନ୍ନ କରିରଖିଛି ।

ଏ ସବୁ ଭିତରେ ଆଉ ଗୋଟିଏ ମର୍ମନ୍ତୁଦ ଘଟଣା ଘଟିଲା ଯାହା ସମସ୍ତଙ୍କୁ ବୋଧହୁଏ ସମାନ ମାତ୍ରାରେ ବ୍ୟଥିତ କରିଥାନ୍ତା, କିନ୍ତୁ ତା ଲୋକ ଲୋଚନକୁ ଆସି ପାରିଲା ନାହିଁ । ଦାନ ମାଝି ଘଟଣାର ମାସକ ଭିତରେ ସେହି କଳାହାଣ୍ଡିର ଡୋକ୍ରିପଡ଼ା ଗାଁରେ ବିଧବା କନକ ଦାଶଙ୍କର ମୃତ୍ୟୁ ହେଲା । ତାଙ୍କର ଶବସତ୍କାର ପାଇଁ ଗାଁର କେହି ନ ବାହାରିବାରୁ ଶେଷରେ ଶବକୁ ଖଟିଆରେ ଶୁଆଇ ତାଙ୍କର ଚାରିଝିଅ ଶ୍ମଶାନକୁ ନେଲେ । କାଠ କିଣିବା ପାଇଁ ସେମାନଙ୍କ ପାଖରେ ପଇସା ନଥିଲା, ତେଣୁ ସେମାନେ ଶେଷକୁ ନିଜର ଚାଳି ଘରର ଛାତ ଭାଙ୍ଗି ସେହି କାଠରେ ଜୁଇ ଜଳାଇଲେ ।

ଏହି ଘଟଣାର ଚିତ୍ର ଓ ଭିଡ଼ିଓ ୟୁଟ୍ୟୁବ୍‌ରେ ଉପଲବ୍ଧ, କିନ୍ତୁ ଏହା ଓଡ଼ିଆ କାଗଜରେ ବିଶେଷ ଭାବରେ ପ୍ରସାରିତ ବା ଆଲୋଚିତ ହେଲା ନାହିଁ । ତାର କାରଣ ବୋଧହୁଏ ଦାନ ମାଝିଙ୍କ ଖବରକୁ ଜୀବିତ ରଖିବା ପାଇଁ ଅନ୍ୟ ଖବରକୁ ପ୍ରଶ୍ରୟ ଦିଆଗଲା ନାହିଁ । ଆଉ ଗୋଟିଏ ବିଶେଷ କାରଣ ହେଲା ଯେ ଏହାକୁ କୌଣସି ଖବରକାଗଜ ସମ୍ବାଦଦାତା ବା ଟେଲିଭିଜନ ଲିପିବଦ୍ଧ କରି ନ ଥିଲେ ।

ସୋସାଲ ମିଡିଆରେ ଚାରିଜଣ ଝିଅ କାନ୍ଧରେ ଖଟିଆକୁ ବୋହୁଥିବାର ଓ ଉଜୁଡ଼ା ଛାତର ଯେଉଁ ଚିତ୍ର ଦେଖିବାକୁ ମିଳେ ସେଇଟି କାହାର ସେଲ୍‌ଫୋନ୍‌ରେ ନିଆଯାଇଥିଲା; ଫଟୋ ଓ ଭିଡ଼ିଓଟି ସେଥିପାଇଁ ନିମ୍ନମାନର ଥିଲା ଓ ସେଥିପାଇଁ ବୋଧହୁଏ ଖବରକାଗଜ ପୃଷ୍ଠା ଓ ଟେଲିଭିଜନ ପର୍ଦାର ଅଯୋଗ୍ୟ ମନେ କରାଗଲା । ସେ ଯାହା ହେଉ ଏହି କରୁଣ କାହାଣୀଟି ମୋଟାମୋଟି ଅଜଣା ରହିଗଲା ।

ସରକାର ଏ ଘଟଣାରେ କାହାର କୈଫିୟତ ମାଗିଛନ୍ତି କି ନା ଜଣା ନାହିଁ । ଭବାନୀପାଟଣାରୁ ପ୍ରକାଶିତ ଗୋଟିଏ କାଗଜ ଅନୁସାରେ ଘଟଣାର ଦୁଇ ମାସ ପରେ ମଧ୍ୟ ସେ ଅଞ୍ଚଳର ବିଧାୟକ ସେଠାକୁ ଯାଇ ନଥିଲେ, ଯଦିଓ ବିଧାୟକଙ୍କ ନିର୍ବାଚନ ବେଳର ପ୍ରଚାରପତ୍ର ସେ ଘର ବାହାରେ ସେ ପର୍ଯ୍ୟନ୍ତ ଲାଗି ରହିଥିଲା ।

ଏ ପ୍ରସଙ୍ଗରେ ଗୋଟିଏ ପ୍ରଶ୍ନ ଉଠେ, ସବୁ ଦାୟିତ୍ୱ କ'ଣ ସରକାରଙ୍କର ନା ନାଗରିକ ଓ ସମାଜର ଅଂଶ ଭାବରେ ଆମର ମଧ୍ୟ କିଛି ଦାୟିତ୍ୱ ଓ କର୍ତ୍ତବ୍ୟ ଅଛି । ଆମର ପଡ଼ୋଶୀର ବିପଦ ଆପଦ ବେଳେ ଆମେ କଣ ବାହାରେ ଠିଆ ହୋଇ ସେ ଦୃଶ୍ୟକୁ ଦେଖୁଥିବା ଓ ଦୁର୍ଦ୍ଦିନର ଟୁରିଷ୍ଟ ଭଳି କେବଳ ତାର ଫଟୋ ଉଠାଉଥିବା ? ଏକ ସମୟରେ ଆମ ସମାଜରେ ଶବସତ୍କାରକୁ ଏକ ପୁଣ୍ୟ କାମ ବୋଲି ବିଚାର କରା ହେଉଥିଲା ଏବଂ ସହର ଓ ଗାଁମାନଙ୍କରେ ଯୁବକମାନେ ସଂଘ ସମିତି କରି ଏ ଦାୟିତ୍ୱ ନେଉଥିଲେ । ବର୍ତ୍ତମାନ ଓଡ଼ିଶାରେ ସେ ପରଂପରା ଆଉ ନାହିଁ । ଗତ ମହାବାତ୍ୟା ସମୟରେ ସ୍ଥାନୀୟ ଲୋକମାନେ ଶବ ନ ଉଠାଇବାରୁ ଓଡ଼ିଶା ବାହାରୁ ଆନନ୍ଦମାର୍ଗୀମାନେ ଆସି ଏ ଦାୟିତ୍ୱ ହାତକୁ ନେଇଥିଲେ । ଏବଂ ସରକାର ମହାରାଷ୍ଟ୍ରରୁ ମୁର୍ଦ୍ଦାଫରାଶ ମଗାଇଥିଲେ । ବର୍ତ୍ତମାନ ସରକାର ଏକ ହରିଶ୍ଚନ୍ଦ୍ର ମହାପ୍ରୟାଣ ଯୋଜନା ମଧ୍ୟ କରିଛନ୍ତି ଯାହା ଫଳରେ ଲୋକେ ଭାବୁଛନ୍ତି ଏ ବିଷୟରେ ସେମାନଙ୍କର ଆଉ କୌଣସି ଦାୟିତ୍ୱ ନାହିଁ ।

ଏ ଭଳି ପରିସ୍ଥିତିମାନଙ୍କରେ ଦର୍ଶକର କର୍ତ୍ତବ୍ୟ କଣ ସେ ବିଷୟରେ ବିଭିନ୍ନ ସମୟରେ ଆଲୋଚନା ହୋଇଛି । ପ୍ରଥମରେ ଯେଉଁ କେତୋଟି ଆଇକନିକ ଚିତ୍ର

ବିଷୟରେ କୁହାଯାଇଛି ତାର ଫଟୋଗ୍ରାଫରଙ୍କୁ ଏ ବିଷୟରେ ପ୍ରଶ୍ନ କରାଯାଇଥିଲା । ସାଇଗନ ଚିତ୍ରର ଫଟୋଗ୍ରାଫର ମାଲକମ୍ ବ୍ରାଉନ କହିଥିଲେ ଯେ ସେ ଏହି ଆତ୍ମହତ୍ୟାକୁ ବନ୍ଦ କରିପାରି ନଥାନ୍ତେ କାରଣ ସେହି ବୌଦ୍ଧ ସନ୍ନ୍ୟାସୀଙ୍କୁ ଦୁଇ ଶହ ଶ୍ରମଣ ଘେରି ରହିଥିଲେ । ସେ କିନ୍ତୁ ମାନିଥିଲେ ଯେ ଏହି ଆତ୍ମହତ୍ୟା ପାଇଁ ସେ କିଛି ପରିମାଣରେ ଦାୟୀ କାରଣ ସେମାନେ ଯଦି ଦେଖିଥାନ୍ତେ ଯେ କୌଣସି ଖବରକାଗଜବାଲା ଘଟଣାର ଫଟୋ ନେଇ ବାହାର ପୃଥିବୀକୁ ଜଣାଇବାକୁ ସେଠାରେ ଉପସ୍ଥିତ ନାହାନ୍ତି, ତେବେ ବୌଦ୍ଧ ସନ୍ନ୍ୟାସୀ ବୋଧହୁଏ ଆତ୍ମହତ୍ୟାର ପଦକ୍ଷେପ ନେଇ ନଥାନ୍ତେ ।

ସୁଦାନରେ ଫଟୋ ନେଇଥିବା କେଭିନ କାର୍ଟର ଜଣାଇଥିଲେ ଯେ ସେ ମୃତପ୍ରାୟ ଶିଶୁଟିର ଦଶ ମିଟର ଦୂରରେ ଥିଲେ । ସେ ସେଠାକୁ ଯାଇଥିଲେ ଦୁର୍ଭିକ୍ଷଗ୍ରସ୍ତ ଲୋକଙ୍କ ପାଇଁ ସାହାଯ୍ୟ ନେଇ ଆସିଥିବା ଜାତିସଂଘର ହେଲିକପ୍ଟରରେ ଯାହା ତିରିଶ ମିନିଟରେ ଫେରିଯିବାର ଥିଲା । ଏଇ ସମୟ ଭିତରେ ସେ କେବଳ ଶାଗୁଣାଟିକୁ ଘଉଡ଼ାଇ ଦେବାରେ ସମର୍ଥ ହୋଇଥିଲେ । ଏ ଘଟଣାର ବର୍ଷକ ପରେ ମାତ୍ର ୩୩ ବର୍ଷ ବୟସରେ କେଭିନ ଆତ୍ମହତ୍ୟା କଲେ । ସୁଇସାଇଡ ନୋଟ୍‌ରେ ସେ ଲେଖିଥିଲେ, ହତ୍ୟା ଶବ କ୍ରୋଧ ଓ ଯନ୍ତ୍ରଣାର ସ୍ମୃତି... କ୍ଷୁଧାର୍ତ୍ତ କ୍ଷତ ବିକ୍ଷତ ଶିଶୁ ମତେ ବ୍ୟସ୍ତ ବିବ୍ରତ କରିଦେଉଛନ୍ତି ।

ଦାନମାଝିଙ୍କ ଘଟଣାରେ ଦେଖଣାହାରି ସମ୍ବାଦଦାତା ଫଟୋଗ୍ରାଫରଙ୍କୁ ଏ ଭଳି ପ୍ରଶ୍ନ କରା ହୋଇଥିଲା କି ନାହିଁ ଏବଂ ସେମାନଙ୍କ ପାଖରୁ କି ଉତ୍ତର ମିଳିଥିଲା ଜଣାନାହିଁ । ଏଠାରେ ଚିନ୍ତା କରିବାର କଥା ଏ ଭଳି ପରିସ୍ଥିତିରେ ଅନ୍ୟମାନେ କଣ କରିପାରନ୍ତି । ଦାନ ମାଝିଙ୍କ ଭଳି ଘଟଣାରେ ଯୁବକମାନେ ନିଜର କାନ୍ଧ ଲଗାଇ ପାରିଥାନ୍ତେ । ଲୋକଙ୍କ ପାଖରୁ ପଇସା ସଂଗ୍ରହ କରି ଗାଡ଼ିର ବ୍ୟବସ୍ଥା କରାଯାଇପାରିଥାନ୍ତା । ମିଡ଼ିଆକୁ ଖବର ଦେବା ଅପେକ୍ଷା ଏହା ହିଁ ହୋଇଥାନ୍ତା ଅଧିକ ମାନବିକ କାମ ।

ଆମମାନଙ୍କ ସମାଜରୁ ଆସ୍ତେ ଆସ୍ତେ ମାନବିକତା କମିଯାଉଛି । ଟେଲିଭିଜନରେ ଆସୁଥିବା ଦୁଃଖଦ ଦୃଶ୍ୟ ଦେଖି ଆମେ ଜଡ଼ ହୋଇଯାଇଛୁ ଓ

ଦୁଃଖ ଦୁର୍ଦ୍ଦଶାକୁ ଆମେ ସ୍ପେକ୍ଟାଟର ସ୍ପୋର୍ଟ ବା ଦର୍ଶନୀୟ ଖେଳକୁଦ ଭଳି ଗ୍ରହଣ କରୁଛୁ । ନଈବଢ଼ିରେ ଭାସି ଆସୁଥିବା ଶବ, ଜଳିଯାଉଥିବା ଘର, ଦୁର୍ଘଟଣାରେ ଛଟପଟ ହେଉଥିବା ଲୋକ- ଏମାନେ ଯେପରି ଆମର ଆମୋଦର ବସ୍ତୁ ଓ ଫଟୋ ଉଠାଇବାର ବିଷୟ ।

ଅନ୍ୟାୟ ଅବିଚାର ଓ ଅନ୍ୟର ଦୁର୍ଦ୍ଦଶାରେ ନିଷ୍କ୍ରିୟ ରହିବା ଭଳି ଚୁପ୍ ରହିବା ମଧ ଏକ ଅକ୍ଷମଣୀୟ ଅପରାଧ । ଦ୍ରୌପଦୀଙ୍କ ବସ୍ତ୍ରହରଣ ବେଳେ ରାଜସଭାରେ ବରିଷ୍ଠ ସଭାସଦମାନେ ଚୁପ୍ ରହିଲେ । ଯୀଶୁଖ୍ରୀଷ୍ଟଙ୍କ ବିଚାର ବେଳେ କେହି ପ୍ରତିବାଦ କଲେ ନାହିଁ । ହିଟଲରଙ୍କ ଇହୁଦୀ ସଂହାରକୁ ଖ୍ରୀଷ୍ଟିଆନମାନେ ମାନିନେଲେ । ଏ ସବୁ ମଧ ପାପରେ ଗଣା- ଚୁପ ରହିବାର ପାପ ।

ମହାଭାରତରେ ଋଷି କଶ୍ୟପ କହିଥିଲେ, ସଜ୍ଜନମାନେ ଯେତେବେଳେ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉଠାନ୍ତି ନାହିଁ, ସେମାନେ ଧର୍ମକୁ ଅପମାନ କରନ୍ତି ଏବଂ ଏଥିପାଇଁ ସେମାନେ ଦଣ୍ଡନୀୟ । କୌଣସି ଅପରାଧରେ ଦୋଷୀ ଯେତିକି ଦଣ୍ଡ ପାଇବ, ତାର ଏକ ଚତୁର୍ଥାଂଶ ପାଇବ ତାର ସହକର୍ମୀ ଓ ଆଉ ଏକ ଚତୁର୍ଥାଂଶ ଏ ବିଷୟରେ ମୌନ ରହିଥିବା ଲୋକ ।

ହିଟଲରଙ୍କ କନ୍‌ସେଣ୍ଟ୍ରେଶନ କ୍ୟାମ୍ପରୁ ଜୀବନ ନେଇ ବାହାରିଥିବା ଲେଖକ ଓ ପରବର୍ତ୍ତୀ ସମୟରେ ନୋବେଲ ବିଜେତା ଏଲି ୱିଜେଲ ନିଜର ଦୁଃଖଦ ଅଭିଜ୍ଞତାକୁ ମନେ ପକାଇ କହିଥିଲେ, ଆମକୁ ସବୁବେଳେ ପକ୍ଷ ନେବାକୁ ପଡ଼ିବ । ନିଷ୍ପକ୍ଷ ରହିଲେ ଅତ୍ୟାଚାରୀକୁ ହିଁ ସାହାଯ୍ୟ କରାହୁଏ, କେବେ ହେଲେ ଅତ୍ୟାଚାରିତକୁ ନୁହେଁ ।

ଭଲ ଲୋକ ଯେତେବେଳେ ମୁହଁ ଖୋଲନ୍ତି ନାହିଁ ତାହା ଦୁରାଚାରୀକୁ ତାର ମନ୍ଦ କାମରେ ସାହାଯ୍ୟ କରେ ଓ ସଫଳତା ଦିଏ । ଚୁପ୍ ରହିବାର ଅନ୍ତିମ ପରିଣତି ବିଷୟରେ ନିମ୍ନଲିଖିତ ଲେଖାଟି ଲେଖିଥିଲେ ହିଟଲରଙ୍କୁ ବିରୋଧ କରୁଥିବା ଖ୍ରୀଷ୍ଟିଆନ୍ ଧର୍ମଗୁରୁ ମାର୍ଟିନ ନିମୋଲର୍ :

ପ୍ରଥମେ ସେମାନେ କମ୍ୟୁନିଷ୍ଟଙ୍କୁ ଧରିବାକୁ ଆସିଲେ,<br>
କିନ୍ତୁ ମୁଁ ପ୍ରତିବାଦ କଲିନାହିଁ, କାରଣ ମୁଁ କମ୍ୟୁନିଷ୍ଟ ନ ଥିଲି ।<br>
ତା ପରେ ସେମାନେ କ୍ୟାଥୋଲିକଙ୍କୁ ଧରିବାକୁ ଆସିଲେ,<br>
କିନ୍ତୁ ମୁଁ ପ୍ରତିବାଦ କଲି ନାହିଁ, କାରଣ ମୁଁ ପ୍ରଟେଷ୍ଟାଣ୍ଟ ଥିଲି ।

ତା ପରେ ସେମାନେ ଇହୁଦୀଙ୍କୁ ଧରିବାକୁ ଆସିଲେ,
କିନ୍ତୁ ମୁଁ ପ୍ରତିବାଦ କଲି ନାହିଁ, କାରଣ ମୁଁ ଇହୁଦୀ ନଥିଲି ।
ତା ପରେ ସେମାନେ ମତେ ଧରିବାକୁ ଆସିଲେ
ଏବଂ ସେତେବେଳକୁ ପ୍ରତିବାଦ କରିବାକୁ ଆଉ କେହି ନଥିଲେ ।

ଏହା ଆମକୁ ପ୍ରେରଣା ଓ ସାହସ ଦେଉ ଚୁପ ଓ ନିଷ୍କ୍ରିୟ ନ ରହି ଦୁରାଚାର ଓ ଦୁର୍ଦ୍ଦଶା ସମୟରେ ହାତ ଉଠାଇବା ପାଇଁ ଓ ହାତ ବଢ଼ାଇବା ପାଇଁ ।

*ନଭେମ୍ବର ୨୦୧୬*

# ପୁରସ୍କାରକୁ ନମସ୍କାର

ସବୁ ପ୍ରକାରର ପୁରସ୍କାର ସବୁବେଳେ ବିବାଦାସ୍ପଦ, ତେବେ ସାହିତ୍ୟ ପାଇଁ ପୁରସ୍କାର ଏ ଦିଗରେ ସବୁଠାରୁ ଆଗରେ । ଜଣେ କେହି ପୁରସ୍କାର ପାଇଲେ ସେ ଯଦି ଗୋଟିଏ ପାଖରେ ଅଭିନନ୍ଦନର ଜୁଆରରେ ଭାସୁଥାଏ, ଅନ୍ୟ ପାଖରେ ସମାଲୋଚନା ଓ କୁତ୍ସାର ବନ୍ୟାରେ ତାର ବୁଡ଼ିଯିବାର ଅବସ୍ଥା ।

ପୁରସ୍କାର କିଏ ପାଇବ, ଘୋଷଣା ତାରିଖ ଆଗରୁ ତା ନେଇ କଳ୍ପନା ଜଳ୍ପନା ହୋଇଥାଏ । ପ୍ରତିଟି ପୁରସ୍କାରର ଏକ ନିର୍ବାଚନ ପ୍ରକ୍ରିୟା ଥାଏ, ତେବେ ଏ ବିଷୟରେ ଜନସାଧାରଣ ଆଗରୁ ବିଚାରବିମର୍ଶ ଆରମ୍ଭ କରିଦିଅନ୍ତି । ବୁକର ଭଳି ପୁରସ୍କାର କ୍ଷେତ୍ରରେ କେଉଁ କେଉଁ ବହି ଛୋଟ ତାଲିକାରେ ରହିବ ଓ ଶେଷରେ କିଏ ଜିତିବ ସେ ବିଷୟରେ କ୍ରିକେଟରେ ବାଜି ଭଳି ବାଜି ମଧ୍ୟ ଲଗାଯାଏ ।

ସାହିତ୍ୟରେ ପୃଥିବୀର ସବୁଠାରୁ ଶ୍ରେଷ୍ଠ ପୁରସ୍କାର ନୋବେଲ ସେ ବର୍ଷ କିଏ ପାଇବ ତାକୁ ନେଇ ଲୋକଙ୍କର ସବୁଠାରୁ ବେଶି ଉତ୍କଣ୍ଠା ରହିଥାଏ । ଏତେ ବର୍ଷ ପରେ ମଧ୍ୟ ଆଲୋଚନା ଜାରି ରହିଛି କାହିଁକି କିଛି ଅନାମଧେୟ ଲେଖକ ଏହା ପାଇଲେ ଏବଂ କାହିଁକି ଟଲଷ୍ଟୟ, ପ୍ରୁସ୍ତ ଏବଂ କନରାଡ୍‌ଙ୍କୁ ଏ ପୁରସ୍କାର ମିଳିଲା ନାହିଁ ।

ରବୀନ୍ଦ୍ରନାଥ ଠାକୁରଙ୍କ ୧୯୧୩ର ନୋବେଲ ପୁରସ୍କାର ବିଷୟରେ ଆଲୋଚନା ଏ ପର୍ଯ୍ୟନ୍ତ ଶେଷ ହୋଇନାହିଁ ଏବଂ ଏହାର ଶତବାର୍ଷିକୀ ଅବସରରେ ପୁଣି ଥରେ ଏ କଥାର ବିଶ୍ଳେଷଣ ହୋଇଥିଲା । ରବୀନ୍ଦ୍ରନାଥ ଏ ପୁରସ୍କାର ପାଇବା ବେଳେ ତାଙ୍କର କେବଳ ଗୋଟିଏ ବହି- ୧୦୩ଟି କବିତା ଥିବା ଗୀତାଞ୍ଜଳି- ଇଂରେଜୀରେ ଉପଲବ୍ଧ ଥିଲା ଏବଂ ଏହାରି ଭିତ୍ତିରେ ସେ ପୁରସ୍କାରଟି ପାଇଥିଲେ । ଏହାକୁ ସମାଲୋଚକମାନେ ସଂପୂର୍ଣ୍ଣ ଅସଂଗତ ଓ ଅଯୌକ୍ତିକ ବୋଲି କହୁଛନ୍ତି, ବିଶେଷରେ

ଯେତେବେଳେ ସେ ବର୍ଷ ପୁରସ୍କାରଟି ପାଇଁ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ ଟମାସ ହାର୍ଡି ଓ ଆନାତୋଲ ଫ୍ରାନ୍ସ ଭଳି ପ୍ରଖ୍ୟାତ ଲେଖକ ।

ବଙ୍ଗାଳୀ ବିଦ୍ୱାନ୍ ନିତ୍ୟପ୍ରିୟ ଘୋଷଙ୍କ ମତରେ ନୋବେଲ ପୃଷ୍ଟପୋଷକ ସ୍ୱିଡେନର କ୍ରାଉନ ପ୍ରିନ୍ସ ୧୯୧୨ ମସିହାରେ କଲିକତା ଆସି ଜୋଡାସାଁକୋରେ ଠାକୁର ପରିବାର ଦ୍ୱାରା ଆପ୍ୟାୟିତ ହୋଇଥିଲେ ଏବଂ ସେ ହିଁ ଫେରିଯାଇ ରବୀନ୍ଦ୍ରନାଥଙ୍କ ପାଇଁ ଲବି କରିଥିଲେ । ୧୯୦୫ରେ ନରୱେ ସ୍ୱିଡେନରୁ ବାହାରି ଯାଇ ଇଂଲାଣ୍ଡ ରାଜାଙ୍କ ଜାମାତାଙ୍କୁ ରାଜଗାଦିରେ ବସାଇଥିଲା ଏବଂ ସେଥିପାଇଁ ସ୍ୱିଡେନର ରାଗ ଥିଲା ଇଂଲଣ୍ଡ ଉପରେ । ଏହି ରାଗ ସୁଝାଇବାକୁ ଇଂଲାଣ୍ଡ ରାଜାଙ୍କର ଜଣେ ପ୍ରଜାଙ୍କୁ (ଯେ କି ବଙ୍ଗ ଭଙ୍ଗ ସମୟରେ ବ୍ରିଟିଶ ବିରୋଧୀ ଆନ୍ଦୋଳନରେ ଭାଗ ନେଇଥିଲେ) ଏହି ପୁରସ୍କାରଟି ଦିଆଯାଇଥିଲା ।

ଏ ପୁରସ୍କାର ପାଇବା ବେଳକୁ ରବୀନ୍ଦ୍ରନାଥ ଯଦିଓ ବଙ୍ଗଳାରେ ଲେଖକ ଭାବରେ ସୁପ୍ରତିଷ୍ଠ ଥିଲେ, ତାଙ୍କୁ ଅତି ରୂକ୍ଷ ଭାବରେ ସମାଲୋଚନା କରା ହେଉଥିଲା ଏବଂ ଏଥିପାଇଁ ସେ ବ୍ୟଥିତ ଥିଲେ । ୧୯୧୩ ନଭେମ୍ବର ୧୩ ତାରିଖରେ ନୋବେଲ ପୁରସ୍କାର ଘୋଷଣା ପରେ କିନ୍ତୁ ସମସ୍ତେ ତାଙ୍କର ସ୍ତୁତିଗାନ କରିବାକୁ ଆରମ୍ଭ କଲେ । ନଭେମ୍ବର ୨୩ ତାରିଖ ଦିନ ତାଙ୍କର ପାଞ୍ଚ ଶହ ସ୍ତାବକଙ୍କୁ ନେଇ ଗୋଟିଏ ସ୍ପେଶାଲ ଟ୍ରେନ୍ କଲିକତାରୁ ବୋଲପୁର ଗଲା । ଟ୍ରେନଟି ସେହିଦିନ ଫେରିବାକୁ ଥିବାରୁ ଖରାବେଳେ ଶାନ୍ତିନିକେତନରେ ଏକ ଉଚ୍ଛ୍ୱସିତ ସଂବର୍ଦ୍ଧନା ସଭା କରାଗଲା । ଏହି ସଭାରେ ରବୀନ୍ଦ୍ରନାଥ କ୍ଷୋଭର ସହିତ କହିଲେ, ଆଜି ଆପଣମାନେ ଆଦର କରି ଯେଉଁ ସୁରାପାତ୍ର ମୋ ଆଗରେ ଧରିଛନ୍ତି, ତା' ମୁଁ ମୋର ଓଠ ପର୍ଯ୍ୟନ୍ତ ନେବି, କିନ୍ତୁ ଏ ମଦିରା ମୁଁ ଅନ୍ତରରେ ଗ୍ରହଣ କରି ପାରିବି ନାହିଁ । ଠିକ୍ ସେହିପରି ୧୯୧୪ ଫେବ୍ରୁଆରିରେ ଆଉ ଗୋଟିଏ ଅଭିନନ୍ଦନର ପ୍ରତ୍ୟୁତ୍ତରରେ ସେ କହିଲେ, କୁକୁର ଲାଞ୍ଜରେ ଝୁମୁକା ବାନ୍ଧିଲେ ତା ପଛରେ ଭିଡ଼ ଜମେ; ସେହି ଭଳି ତାଙ୍କ ନାଁ ପଛରେ ଏକ ଝୁମୁକା ବନ୍ଧା ଯାଇଛି, କିନ୍ତୁ ସେ କୌତୁକରେ ଯୋଗ ଦେବା ପାଇଁ ତାଙ୍କର ଆଦୌ ଉତ୍ସାହ ନାହିଁ ।

ନୋବେଲ ପୁରସ୍କାର ଇତିହାସରେ ଗୋଟିଏ ରୋଚକ ଘଟଣା ହେଉଛି ଗୋଟିଏ ଚାପୁଡ଼ା ଯାହାର ଶବ୍ଦ ସାରା ପୃଥିବୀକୁ ଶୁଭିଥିଲା ବୋଲି କୁହାଯାଇଥାଏ । ୧୯୩୦ରେ ପୁରସ୍କାର ପାଇଁ ଦୁଇଜଣ ଆମେରିକା ଲୋକଙ୍କ ନାଁ ଶେଷ ପର୍ଯ୍ୟାୟରେ ଥିଲା, ସିନ୍‌କ୍ଲେୟାର

ଲୁଇସ ଓ ଥିଓଡର ଡ୍ରାଇଜର । ଶେଷକୁ ଲୁଇସ ପୁରସ୍କାର ପାଇଲେ ଏବଂ ନିଜର ନୋବେଲ ଅଭିଭାଷଣରେ ଡ୍ରାଇଜରଙ୍କୁ ପ୍ରଶଂସା ମଧ କଲେ । ତଥାପି ଗୋଟିଏ ବନ୍ଧୁମିଳନରେ ଡ୍ରାଇଜର ତାଙ୍କୁ ଗୋଟିଏ ଚାପୁଡ଼ା ପକାଇଲେ, ଯଦିଓ ପରେ ସେ କହିଥିଲେ ଏଇଟି ଥିଲା ଲୁଇସ୍ ତାଙ୍କୁ ଲେଖା ଚୋରି କରିଥିବାର ଆକ୍ଷେପ କରିଥିବାରୁ ।

ଆମ ଓଡ଼ିଆରେ ମଧ ପୁରସ୍କାର ନେଇ ବାଦବିବାଦର ଅନେକ ଉଦାହରଣ ଅଛି । ସେଥିରୁ କେତୋଟି ହେଲା : ଗୋପୀନାଥ ମହାନ୍ତି କହିଥିଲେ ମୋର ଧାରଣା ବିର୍ଲା ଫାଉଣ୍ଡେସନର ତିନି ଲକ୍ଷ ଟଙ୍କାର ସରସ୍ୱତୀ ସମ୍ମାନ ମୋତେ ମିଳିବ ନାହିଁ, କାରଣ ସୁପାରିଶ କରିବା କ୍ରିଟିକକୁ ବହୁତ ପରିଶ୍ରମ କରିବାକୁ ପଡ଼ିବ, ସେ ଏତେ କାହିଁକି ଖଟିବେ ?(ସୁବର୍ଣ୍ଣଶ୍ରୀ ଦଶମ ବର୍ଷ, ଦଶମ ସଂଖ୍ୟା, ୨୦୧୦) । ସଚ୍ଚି ରାଉତରାୟ କହିଲେ, ମୁଁ ଭାବେ ମାଟିମଟାଳ(ଗୋପୀନାଥ ମହାନ୍ତିଙ୍କ ଜ୍ଞାନପୀଠ ସମ୍ମାନପ୍ରାପ୍ତି ବହି) ଏକ ମିଡିଓକର୍ କୃତୀ । (ସୁବର୍ଣ୍ଣଶ୍ରୀ ସେହି ସଂଖ୍ୟା) ନିତ୍ୟାନନ୍ଦ ମହାପାତ୍ର କହିଥିଲେ, ଜଣେ ପଦସ୍ଥ ଓଡ଼ିଆ ମୋ ବିରୁଦ୍ଧରେ ଚକ୍ରାନ୍ତ କରି ମୋତେ ଏଥିରୁ(ଜ୍ଞାନପୀଠ ପୁରସ୍କାରରୁ) ବଞ୍ଚିତ କରିଛନ୍ତି ।(କାଦମ୍ବିନୀ ଅଗଷ୍ଟ ୨୦୧୧)

ଅନେକ ଲେଖକ- ଉଭୟ ପୁରସ୍କାର ପ୍ରାପ୍ତ ଓ ପୁରସ୍କାର ଆଶାୟୀ- କହିଥାନ୍ତି, ପୁରସ୍କାରରେ କିଛି ଯାଏ ଆସେ ନାହିଁ, ଲେଖା ହିଁ ସବୁ କିଛି । ଏହା ନିଶ୍ଚୟ ଉପରଠାଉରିଆ କଥା କାରଣ ପୁରସ୍କାର ପାଇଁ କେତେ ପରିମାଣରେ ଏବଂ କି ପ୍ରକାରର ଲବି ଓ ପ୍ରଚେଷ୍ଟା ହୋଇଥାଏ ତା ସମସ୍ତଙ୍କୁ ଜଣା । ଏପରିକି ଏଥିଯୋଗୁ ସାହିତ୍ୟ ଏକାଡେମି ନିୟମ କରିଛନ୍ତି ଯେ ଲେଖକ ଯଦି କାନ୍‌ଭାସ୍ କରେ ତାର ବହି ପୁରସ୍କାର ପାଇଁ ଅଯୋଗ୍ୟ ବିବେଚିତ ହେବ । ତେବେ ଏ ବିଷୟରେ ଓଡ଼ିଆ ଲେଖକମାନେ ସଚ୍ଚୋଟ ଓ ସ୍ପଷ୍ଟବାଦୀ କାରଣ ସେମାନେ ପୁରସ୍କାରର ଉପଯୋଗିତା ବିଷୟରେ କହିବାକୁ କୁଣ୍ଠିତ ନୁହନ୍ତି । ପୁରସ୍କାର ପ୍ରାପ୍ତି ଅବସରରେ ଆମର କିଛି ଲେଖକ ନିମ୍ନମତେ ମତ ରଖିଛନ୍ତି :

ରାମପ୍ରସାଦ ମହାନ୍ତି- ଯଦି ୭୦ କି ୭୫ ବର୍ଷ ତଳେ ଏହା ମିଳିଥାନ୍ତା, ମୋତେ ସାହିତ୍ୟ ସାଧନାରେ ଅଗ୍ରସର ହେବା ପାଇଁ ପ୍ରେରଣା ଓ ଉତ୍ସାହ ଯୋଗାଇଥାନ୍ତା ।(ଚନ୍ଦନ ନବବର୍ଷ ସଂଖ୍ୟା ୨୦୧୩)

ଚନ୍ଦ୍ରଶେଖର ରଥ- ମୋ ଲେଖକ ଜୀବନରେ ଯଦି 'ଯନ୍ତାରୂଢ଼' ଉପନ୍ୟାସ ଓଡ଼ିଶା ସାହିତ୍ୟ ଏକାଡେମି ଦ୍ୱାରା ପୁରସ୍କୃତ ହୋଇଥାନ୍ତା, ତେବେ ତେଣିକି ହୁଏ ତ ମୁଁ ଉପରକୁ ଉପରକୁ ଆକାଶମାର୍ଗେ କୁଆଡ଼େ କୁଆଡ଼େ ପହଞ୍ଚି ପାରିଥାନ୍ତି ।(ଆମ ସମୟର ସୃଜନୀ, ପ୍ରଥମ ସଂଖ୍ୟା ୨୦୦୭)

ବ୍ରଜନାଥ ରଥ - ବହୁ ପୁରସ୍କାର ମୁଁ ପାଇଛି ଯାହା ମୋ ଲେଖନୀକୁ ଗତିଶୀଳ କରିବା ପାଇଁ ମୋତେ ପ୍ରେରଣା ଯୋଗାଇଛି ।(ସମ୍ବାଦ ୨୧.୭.୨୦୧୩)

ବିଜୟ ମିଶ୍ର- ପୁରସ୍କାର ଲେଖକକୁ ଉତ୍ସାହିତ କରେ । କିନ୍ତୁ ଏ ପୁରସ୍କାର ଯଦି ଦଶ ପନ୍ଦର ବର୍ଷ ପୂର୍ବରୁ ମିଳିଥାନ୍ତା, ତେବେ କାମ କରିବା ପାଇଁ ବୋଧହୁଏ ଆହୁରି ଉତ୍ସାହ ଓ ଶକ୍ତି ମିଳିଥାନ୍ତା ।(ଧରିତ୍ରୀ ୨୨.୧୨. ୨୦୧୩)

ଗୌରହରି ଦାସ- ସାହିତ୍ୟିକ ପାଇଁ ପୁରସ୍କାର ଏକ ବଡ଼ ପ୍ରୋତ୍ସାହନ । ଏହା ତାକୁ ସାମାଜିକ ପ୍ରତିଷ୍ଠା ସହ ଆତ୍ମବିଶ୍ୱାସ ଦେଇଥାଏ । (କାଦମ୍ବିନୀ ଡିସେମ୍ବର ୨୦୧୫)

ସୁଜିତ କୁମାର ପଣ୍ଡା - ଆଗକୁ ଏହି ପୁରସ୍କାର ମୋର ସାହିତ୍ୟ ସାଧନା ଓ ଲେଖନୀ ପାଇଁ ଉତ୍ସାହିତ କରିବ ।(ସମ୍ବାଦ ୧୯.୧୧.୨୦୧୫)

ଏ ସବୁରୁ ଜଣାପଡ଼ିବ ଯେ ପୁରସ୍କାରର ଏକ ଗଠନାତ୍ମକ ଦିଗ ଅଛି ଏବଂ ଏହା ଠିକ ସମୟରେ ଦିଆଗଲେ ସାହିତ୍ୟିକକୁ ଅନୁପ୍ରାଣିତ ଓ ଉଦ୍ଦୀପିତ କରିଥାଏ । ଏ ପ୍ରସଙ୍ଗରେ ବର୍ତ୍ତମାନ ଓଡ଼ିଶାରେ ଦିଆଯାଉଥିବା ହଜାର ସଂଖ୍ୟାରେ ନ ହେଲେ ମଧ ଶହ ଶହ ସାହିତ୍ୟ ପୁରସ୍କାର ବିଷୟରେ ଉଲ୍ଲେଖ କରାଯାଇପାରେ । ଏ ପୁରସ୍କାରମାନ କି ପରିମାଣରେ ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକଙ୍କୁ ଉତ୍ସାହିତ ଓ ପରିପୁଷ୍ଟ କରୁଛି, ତା ଗବେଷଣା ସାପେକ୍ଷ ।

ପୁରସ୍କାର ପାଇଲେ ଲେଖକ ଖୁସି ହେବା ହେବା ସ୍ୱାଭାବିକ, କିନ୍ତୁ ମୁଁ ଭାବୁନାହିଁ ଯେ ପୁରସ୍କାର ଆଗରୁ ପାଇଥିଲେ ସେ ଲେଖକ ଆହୁରି ଅଧିକ ବା ଉତ୍ତମ ଲେଖିଥାନ୍ତେ ବା ପୁରସ୍କାର ନ ପାଇବାରେ ଲେଖା ବନ୍ଦ କରିଦେଇଥିଲେ ବା କରିଦେଇଥାନ୍ତେ । ଓଲଟା, ଅନେକ କ୍ଷେତ୍ରରେ ପୁରସ୍କାର ପାଇବା ପରେ ଲେଖକ ସେହି ସମ୍ମାନ ଉପରେ ଭରା ଦେଇ ନିଷ୍କ୍ରିୟ ହୋଇଯାନ୍ତି । ୧୯୪୮ରେ ନୋବେଲ ପୁରସ୍କାର ପାଇବା ପରେ ଇଲିଅଟ କହିଥିଲେ, ଏ ପୁରସ୍କାର ନିଜର ଶବଯାତ୍ରା ପାଇଁ ଟିକେଟ, ଏହା ପାଇବା ପରେ କେହି କିଛି କରିନାହାନ୍ତି । ସେହିପରି ବିଳମ୍ବରେ ପୁରସ୍କାର ପାଇବା ବିଷୟରେ

ମଧ୍ୟ ଲେଖକମାନେ ଅସନ୍ତୋଷ ପ୍ରକାଶ କରିଛନ୍ତି । ୬୯ ବର୍ଷ ବୟସରେ ନୋବେଲ ପୁରସ୍କାର ପାଇବା ପରେ ବର୍ଣ୍ଣାର୍ଡ ଶ' କହିଥିଲେ, ଏହା ପହଁରାଳୀ କୂଳରେ ପହଞ୍ଚିବା ପରେ ତା ପାଖକୁ ଲାଇଫବେଲ୍‌ଟ୍ ଫିଙ୍ଗିବା ଭଳି କଥା !

ପୁରସ୍କାର ନିନ୍ଦିତ ହେଉଥିବାର ଗୋଟିଏ କାରଣ ହେଉଛି ଯେ ଅନେକ ପୁରସ୍କାରର ନିର୍ବାଚନ ପ୍ରକ୍ରିୟାରେ ସ୍ୱଚ୍ଛତା ନଥାଏ । ପୁରସ୍କାର ପାଇଁ ଲବି ହେଉଥିବା ମଧ୍ୟ ଜଣାଶୁଣା କଥା । ପୁରସ୍କାର ଚୟନ କର୍ତ୍ତାମାନେ ଅନେକ ସମୟରେ ବିଭିନ୍ନ କାରଣରୁ ନିରପେକ୍ଷତା ଅବଲମ୍ବନ କରନ୍ତି ନାହିଁ ଓ ପ୍ରିୟାପ୍ରୀତି ତୋଷଣ କରନ୍ତି । ଅନେକ ସମୟରେ ସାହିତ୍ୟର ମହନ୍ତ ଏବଂ ସେମାନଙ୍କର ଚେଲା ଚାମୁଣ୍ଡା ଏ ଭଳି ଚୟନ ମଣ୍ଡଳୀରେ ବର୍ଷ ବର୍ଷ ଧରି ରହି କିଏ କିଏ କେଉଁ କେଉଁ ବର୍ଷ ପୁରସ୍କାର ପାଇବେ ସେ କଥା ଆଗରୁ ନିର୍ଣ୍ଣୟ କରିଦିଅନ୍ତି । ସେଥିପାଇଁ କୌଣସି ଲେଖକ ବା ବହି ପୁରସ୍କାର ପାଇବା ସଙ୍ଗେ ସଙ୍ଗେ ତାର ଶବ ବ୍ୟବଚ୍ଛେଦ ଆରମ୍ଭ ହୋଇଯାଏ । ଏ ସବୁ ସମାଲୋଚନା ବିଭିନ୍ନ ପ୍ରକାରର, ଯଥା :

ବହି ବା ଲେଖକ ପୁରସ୍କାର ପାଇବାର ଯୋଗ୍ୟ ନୁହନ୍ତି । ନିୟମ ଅନୁସାରେ ଏ କୃତୀକୁ ବିଚାରକୁ ଦିଆଯିବାର ନ ଥିଲା । ପୁରସ୍କାରଟି ଅମୁକଙ୍କର ଉଚିତ ପ୍ରାପ୍ୟ ଥିଲା । ସମୁକ ଆଉ ବେଶି ଦିନ ବଞ୍ଚିବେ ନାହିଁ, ତେଣୁ ତାଙ୍କୁ ଦେଇଥିଲେ ଭଲ ହୋଇଥାନ୍ତା । ବହିଟି ସାହିତ୍ୟ ନୁହେଁ, ଏହା ସମାଜତତ୍ତ୍ୱ ଧର୍ମଗ୍ରନ୍ଥ ଇତିହାସ । ବହିଟି ଅନ୍ୟ ଏକ ଭାଷାର ବହିର ଅନୁକରଣରେ ଲେଖା । ଏଥିରେ ଅଶ୍ଲୀଳତା, ଦେଶଦ୍ରୋହର କଥା ଅଛି ଇତ୍ୟାଦି । ଏପରି ଉପରଠାଉରିଆ ସମାଲୋଚକ କିନ୍ତୁ କୌଣସି ବହି ବା ଲେଖକକୁ ଅନ୍ୟ ବହି ଓ ଲେଖକ ସହିତ ତୁଳନାତ୍ମକ ଆଲୋଚନା କରି କହନ୍ତି ନାହିଁ ଗୋଟିଏ ଅନ୍ୟଠାରୁ ଉତ୍କୃଷ୍ଟ ବା ନିକୃଷ୍ଟ । କଥା କୋର୍ଟ କଚେରୀକୁ ଯାଏ, କିନ୍ତୁ ତାର ବିଚାର ପାଇଁ କୌଣସି ସାହିତ୍ୟିକ ଆଲୋଚନା ହୁଏ ନାହିଁ ।

ଅନ୍ୟାନ୍ୟ ଭାଷାମାନଙ୍କରେ କୌଣସି ବହି ପୁରସ୍କୃତ ହେଲେ ତାର ବିକ୍ରି ସଂଖ୍ୟା ବଢ଼ିଯାଏ, କିନ୍ତୁ ଆମ ଓଡ଼ିଆରେ ଏପରି ହୁଏ ନାହିଁ । ପୁରସ୍କାର ପାଇଲେ ଆମର ଲେଖକଙ୍କ ପାଇଁ ସମ୍ବର୍ଦ୍ଧନା ସଭା ହୁଏ, ଖବରକାଗଜରେ ଫଟୋ ବିବରଣୀ ସାକ୍ଷାତ୍‌କାର ବାହାରେ, କିନ୍ତୁ ପୁରସ୍କୃତ ବହିକୁ ଅଧିକ ଲୋକ ପଢ଼ନ୍ତି ନାହିଁ; ଅନେକ

ସମୟରେ ବହିର ଆଲୋଚନା ମଧ୍ୟ ହୁଏ ନାହିଁ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ପୁରସ୍କାରର ଆର୍ଥିକ ଓ ସାମାଜିକ ପ୍ରଭାବ ବ୍ୟତୀତ ଆଉ ଗୋଟିଏ କ୍ଷମତା ମଧ୍ୟ ଅଛି; ସେଇଟି ହେଲା ତାକୁ ଫେରାଇ ଦେଇ ପ୍ରତିବାଦ କରିବାର ଶକ୍ତି । ୧୯୧୯ରେ ଇଂରେଜମାନଙ୍କ ଦ୍ୱାରା ଜାଲିଆଁବାଲା ବାଗ୍ ଗଣହତ୍ୟାର ପ୍ରତିବାଦରେ ରବୀନ୍ଦ୍ରନାଥ ତାଙ୍କର ନାଇଟ୍ ଉପାଧି ଫେରାଇ ଦେଇଥିଲେ । ନିକଟରେ କିଛି ସାହିତ୍ୟିକ ସମାଜରେ ଅସହିଷ୍ଣୁତାର ପ୍ରତିବାଦରେ ସେମାନଙ୍କର ପୁରସ୍କାର ଫେରସ୍ତ କରିଦେଇଥିଲେ । ପୁରସ୍କାରର କାଗଜ ଟୁକୁଡ଼ା ଫେରାଇ ଦେଇ ପୁରସ୍କାର ଟଙ୍କା ନ ଫେରାଇବାର ଉଦାହରଣ ମଧ୍ୟ ବିରଳ ନୁହେଁ ।

ଏ ସବୁରୁ ଜଣାପଡ଼ିବ ଯେ ସାହିତ୍ୟ ପୁରସ୍କାରର ନିଶ୍ଚୟ ଅନେକ ଉପକାରୀ ପ୍ରଭାବ ଅଛି, କିନ୍ତୁ ପୁରସ୍କାର ପ୍ରକ୍ରିୟାରେ ସ୍ୱଚ୍ଛତାର ଅଭାବ, ପ୍ରିୟାପ୍ରୀତି ତୋଷଣ, ପ୍ରଚାର ପ୍ରଚେଷ୍ଟା ସୁପାରିଶର ପ୍ରଭାବ ଇତ୍ୟାଦି ଯୋଗୁ ଏହା ଅନେକ ସମୟରେ ବିବଦମାନ ହୋଇ ନିଜର ସମ୍ମାନ ହରାଏ । ପୁରସ୍କାର ଚୟନ ପ୍ରକ୍ରିୟା ବିଷୟରେ ଲୋକଙ୍କର ଧାରଣା କଣ, ତାର ଏକ ହାସ୍ୟାସ୍ପଦ କରୁଣ ଏବଂ ଚୂଡ଼ାନ୍ତ ଉଦାହରଣ ହେଉଛି ନିମ୍ନଲିଖିତ ଘଟଣା ।

ମହାନଦୀ ବିହାରରେ ରେଭେନ୍ସା ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ପ୍ରଫେସର ତଥା ଲେଖକ ଡ. ସୁଦର୍ଶନ ପଟ୍ଟନାୟକଙ୍କ ସହିତ ରମେଶଙ୍କ ଜଣାଶୁଣା ହୋଇଥିଲା । ଏହି ଜଣାଶୁଣା ହେବା ପରେ ସୁଦର୍ଶନଙ୍କୁ ଓଡ଼ିଶା ସାହିତ୍ୟ ଏକାଡେମି ପୁରସ୍କାର କରାଇଦେବେ ବୋଲି କହି ରମେଶ ବିଭିନ୍ନ ସମୟରେ ୨୦୧୨ ଜାନୁଆରୀରୁ ଡିସେମ୍ବର ମଧ୍ୟରେ ତାଙ୍କଠାରୁ ଏକ ଲକ୍ଷ ପାଞ୍ଚ ହଜାର ଟଙ୍କା ନେଇଥିଲେ । ଏପରିକି ତାଙ୍କୁ ଜ୍ଞାନପୀଠ ପୁରସ୍କାର କରାଇ ଦେବାକୁ ମଧ୍ୟ ପ୍ରତିଶ୍ରୁତି ଦେଇଥିଲେ ।... ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ କରିବା ପରେ ପୁରସ୍କାର ନ ମିଳିବାରୁ... ସୁଦର୍ଶନ ଲାଲବାଗ ଥାନାରେ ଘଟଣା ସଂପର୍କରେ ଲିଖିତ ଅଭିଯୋଗ କରିଥିଲେ ।(ଧରିତ୍ରୀ ୨୧.୫.୨୦୧୩)

ଶେଷରେ ଏ ବିଷୟରେ ଏକ ସହଜ ନିଷ୍କର୍ଷ କରାଯାଇପାରେ ଯେ ପୁରସ୍କାରର ଥିବା ନଥିବା ସହିତ ସାହିତ୍ୟ ସୃଷ୍ଟିର କୌଣସି ସଂପର୍କ ନାହିଁ ।

*(ଡିସେମ୍ବର, ୨୦୧୬)*

# ଛାପାଖାନା ଲୋକେ ନିହାତି ମନ୍ଦ

ଅନ୍ୟ ଭାଷାର ଲେଖକମାନଙ୍କୁ ପ୍ରଶ୍ନ କରାଯାଏ, ଆପଣ ବହିରୁ କେତେ ଟଙ୍କା ପାଇଲେ ? ଓଡ଼ିଆ ଲେଖକଙ୍କୁ କିନ୍ତୁ ଲୋକେ ପଚାରୁଛନ୍ତି, ଆପଣ ଏ ବହି ପାଇଁ କେତେ ଟଙ୍କା ଖର୍ଚ୍ଚ କଲେ ? ଯଦିଓ ଏ କଥା କୌଣସି ଲେଖକ ମାନିବାକୁ ପ୍ରସ୍ତୁତ ନୁହନ୍ତି, ସମସ୍ତଙ୍କୁ ଜଣା ଯେ ବର୍ତ୍ତମାନ ଓଡ଼ିଶାରେ ପ୍ରକାଶନ ବ୍ୟବସାୟ ଲେଖକଙ୍କ ପୁଞ୍ଜି ଲଗାଣରେ ଚଳୁଛି, ଯେଉଁଥିରୁ ଲେଖକମାନେ ପଇସାଟିଏ ମଧ୍ୟ ଲାଭ ପାଉନାହାନ୍ତି ।

ପାଶ୍ଚାତ୍ୟ ଦେଶରେ ମଧ୍ୟ କିଛି ଲେଖକ ସେଲ୍‌ଫ୍ ପବ୍ଲିଶିଂ ବା ସ୍ୱୟଂ ପ୍ରକାଶନ କରନ୍ତି । ଭର୍ଜିନିଆ ଉଲ୍‌ଫ୍, ମାର୍କ ଟ୍ୱେନ୍, ଜେମ୍ସ ଜୟେସ ଓ ୱାଲ୍‌ଟ୍ ହ୍ୱିଟମ୍ୟାନଙ୍କ ଭଳି ଲେଖକ ବିଭିନ୍ନ ସମୟରେ ନିଜର ବହି ନିଜେ ଛପାଇଛନ୍ତି । କବି ଉଇଲିଆମ୍ ବ୍ଲେକ୍ ନିଜର ସବୁ ବହି ନିଜେ ଛପାଉଥିଲେ । ବର୍ଣ୍ଣାଡ୍ ଶ' ମଧ୍ୟ ପ୍ରଥମ ସମୟରେ ନିଜର ନାଟକ ନିଜ ଖର୍ଚ୍ଚରେ ପ୍ରକାଶ କରୁଥିଲେ । ଅଧିକାଂଶ କ୍ଷେତ୍ରରେ କିନ୍ତୁ ଅଳ୍ପ କେତୋଟି ବହି ନିଜେ ଛପାଇବା ପରେ ବଡ଼ ପ୍ରକାଶକ ସେମାନଙ୍କ ବହିକୁ ଲୋଡୁଥିଲେ ।

ଏହା ବ୍ୟତୀତ ଆଉ ଏକ ପ୍ରକାରର ପ୍ରକାଶନ ହେଲା ଭ୍ୟାନିଟି ପବ୍ଲିଶିଂ ବା ଅହମ୍ମନ୍ୟ ପ୍ରକାଶନ, ଯାହା ଅଲେଖକ ବା ସ୍ୱଳ୍ପ ପ୍ରତିଭାର ଲେଖକ ନିଜର ଆତ୍ମଗରିମା ପାଇଁ ପ୍ରକାଶକଙ୍କୁ ଟଙ୍କା ଦେଇ ଛପାଇଥାନ୍ତି । ଏ ଭଳି ବହିକୁ କୌଣସି ସାହିତ୍ୟିକ ମୂଲ୍ୟ ଦିଆଯାଇ ନ ଥାଏ ।

ଅନେକ କ୍ଷେତ୍ରରେ କବିତା ବହି ପାଇଁ ପ୍ରକାଶକ ମିଳୁ ନଥିବାରୁ ଅନ୍ତତଃ ପ୍ରଥମ ବହି ପାଇଁ କବି ପ୍ରକାଶକକୁ ଟଙ୍କା ଦେବା ପ୍ରାୟ ନିୟମ ଭଳି ଥିଲା । ଏକ ସମୟରେ ଭାରତରେ ଥିବା ବିଦେଶୀ ପ୍ରକାଶକ ଭାରତୀୟ ଇଂରେଜୀ ଲେଖକଙ୍କ ବହି ପ୍ରକାଶରେ ଆଗ୍ରହ ଦେଖାଉ ନ ଥିବାରୁ ପି. ଲାଲ କଲିକତାରେ ରାଇଟର୍ସ ୱର୍କଶପ୍ ପ୍ରକାଶନ ସଂସ୍ଥା କରି ଟଙ୍କା ନେଇ ଏହି ଲେଖକମାନଙ୍କର ବହି ଛାପୁଥିଲେ ।

ଆମର ଅଧିକାଂଶ ଇଣ୍ଡୋ-ଇଂଲିଶ ଲେଖକ, ଯଥା ଇଜିକିଲ, ଜୟନ୍ତ ମହାପାତ୍ର, ବିକ୍ରମ ସେଠ ପ୍ରମୁଖଙ୍କୁ  ପି. ଲାଲ ହିଁ ପ୍ରଥମେ ପ୍ରକାଶ କରିଥିଲେ ।

ଓଡ଼ିଶାରେ ଲେଖକ ଦ୍ୱାରା ନିଜର ବହିର ପ୍ରକାଶନରେ ଟଙ୍କା ଲଗାଣ ପ୍ରଥା ଅତି ପୁରୁଣା । ଫକୀର ମୋହନ ସେନାପତି ୨୧.୧୦.୧୯୧୫ରେ ବିଶ୍ୱନାଥ କରଙ୍କୁ ଦେଇଥିବା ଚିଠିରେ ଏ ଭଳି ଲେଖିଥିଲେ : "କୌଣସି ରୂପେ ଯଦି କିଛି ବଇ ବାହାରିଯାଏ, ଆନନ୍ଦର କଥା କାରଣ ମାମୁ ଖଣ୍ଡ ଅସଂପୂର୍ଣ୍ଣ ଭାବରେ ଲେଖା ହୋଇଛି । ସଂପୂର୍ଣ୍ଣ ଭାବରେ ଲେଖା ହୋଇଥିଲେ ଛାପା ଖର୍ଚ୍ଚ ପାଞ୍ଚଶତ ଟଙ୍କା ପର୍ଯ୍ୟନ୍ତ ଲାଗିଥାନ୍ତା । ବ୍ୟୟ ଲାଘବ ନିମନ୍ତେ ୩/୪ ପରିଚ୍ଛେଦ କାଟି ଦେଇଛି । ସୁତରାଂ ଅନେକ ନାୟକ ନାୟିକା ଚରିତ୍ର ଫୁଟିଲେ ନାହିଁ ।'' ଏହା ନିଶ୍ଚୟ ଅତ୍ୟନ୍ତ ଦୁଃଖର ବିଷୟ ।

ଠିକ୍ ସେହିପରି ଗୋଟିଏ ଚିଠି ଗୋପୀନାଥ ମହାନ୍ତି ୧୮.୧୦.୧୯୪୮ରେ ଲେଖିଥିଲେ ଅନୁବାଦକ-ଲେଖକ ଲକ୍ଷ୍ମୀନାରାୟଣ ମହାନ୍ତିଙ୍କୁ : "ମୋର ଉପନ୍ୟାସ ଛପାଇବା ବିଷୟରେ ଆପଣ ଆଶା କରିଛନ୍ତି ଶୁଣି ଅତି ଖୁସି ହେଲି । ୨୨୦ ପୃଷ୍ଠା ବହିକୁ କାଗଜ କେତେ ? ଓ ତା ମିଳିବ କେଉଁଠୁ ? କେତେ ଦାମ ? ଛପା ଖର୍ଚ୍ଚ କେତେ ? ଅନ୍ୟାନ୍ୟ ଖର୍ଚ୍ଚ କେତେ ? ମୁଁ ସବୁ ତୁଲେଇଲେ ଆପଣମାନେ  ଛାପିବାର ସବୁ ବନ୍ଦୋବସ୍ତ କରି ପାରିବେ କି ? ମୋର ଇଚ୍ଛା ୨୦୦୦ ଛାପିବା । ଆପଣଙ୍କଠୁ ଉତ୍ତର ପାଇଲେ ଭାବିବି ।"

ଓଡ଼ିଶାରେ ଏକ ସମୟରେ ଏ ଭଳି ପଇସା ଦେଇ ବହି ଛପାଇବା ନିୟମ ନଥିଲା ଏବଂ ବହିରୁ ରୟାଲଟି ମିଳୁ ନ ମିଳୁ ଅନ୍ତତଃ ଲେଖକକୁ ଛାପା ଖର୍ଚ୍ଚ ଦେବାକୁ ହେଉ ନଥିଲା । କିଛି ଲେଖକ ବହି ଲେଖାରୁ ବେଶ ଟଙ୍କା ରୋଜଗାର ମଧ୍ୟ କରୁଥିଲେ । ଏ ବିଷୟରେ କିଛି ଉଦାହରଣ ମୁଁ ମୋ ହାତ ପାଖରେ ଥିବା ଦୁଇଟି ବହିରୁ ଦେଉଛି । ମୋର ବାପା ଶ୍ରୀଧର ଦାସଙ୍କ ଆତ୍ମଜୀବନୀ 'ସୁଅ ମୁହଁରେ ପତର'ରେ ଗୋଟିଏ ଅଧ୍ୟାୟ ଅଛି 'ପୁସ୍ତକ ଲେଖାରୁ ଆୟ' । ଏଥିରୁ ଆମେ ୧୯୩୦-୫୦ ସମୟର ପ୍ରକାଶନ ଓ ସେଥିରୁ ଲେଖକଙ୍କ ରୋଜଗାର ବିଷୟରେ ଏପରି ବିବରଣୀ ପାଉ : "ମୁଁ ପିଲାଙ୍କ ଶେକ୍ସପିଅର ବୋଲି ଯେଉଁ ବହିଟି ନିଜ ବ୍ୟୟରେ ପ୍ରକାଶ କରିଥିଲି, ତାହା ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜ

ଓ କବି ଶ୍ରୀ ପଦ୍ମଚରଣ ପଟ୍ଟନାୟକଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲା ଓ ସ୍କୁଲମାନଙ୍କରେ ପ୍ରାଇଜ ଓ ଲାଇବ୍ରେରି ବହି ରୂପେ ମଂଜୁରି ପାଇଥିଲା । କିନ୍ତୁ ଆର୍ଥିକ ଦୃଷ୍ଟିରୁ ମୋତେ କ୍ଷତି ସହିବାକୁ ପଡ଼ିଥିଲା । ତେଣୁ ବହି ଲେଖିବା ଓ ନିଜେ ଛପାଇବା ନିର୍ବୋଧତାର କାର୍ଯ୍ୟ ବୋଲି ସ୍ଥିର କରିଥିଲି ।... ଷ୍ଟୁଡେଣ୍ଟସ୍ ଷ୍ଟୋର୍ସର ମ୍ୟାନେଜରଙ୍କ ଅନୁରୋଧରେ ସାହିତ୍ୟ ପୁସ୍ତକ ପାଇଁ କେତୋଟି କବିତା ଓ ପ୍ରବନ୍ଧ ଲେଖିଥିଲି ଓ ସେ ପାଞ୍ଚ ପୃଷ୍ଠାର ଲେଖା ପାଇଁ ୧୦ ଟଙ୍କା ପାରିଶ୍ରମିକ ଦେଇଥିଲେ ।... ୧୯୩୫-୩୬ରେ ସେହି ମ୍ୟାନେଜରଙ୍କ ଅନୁରୋଧରେ ପଣ୍ଡିତ ନାରାୟଣ ମହାପାତ୍ରଙ୍କ ସାହାଯ୍ୟରେ ବ୍ୟାକରଣ ବହି ଦୁଇ ଖଣ୍ଡ ଲେଖିଥିଲି ଏବଂ ତାକୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂଶୋଧିତ କରାଇ ନେଲୁ । ବର୍ଷକ ପରେ ପ୍ରକାଶକଙ୍କଠାରୁ ପ୍ରାୟ ୮୦ଟଙ୍କା ରୟାଲଟି ମିଳିଲା ।... ମାଟ୍ରିକୁଲେଶନ ଶ୍ରେଣୀ ପାଇଁ ଖଣ୍ଡିଏ ବ୍ୟାକରଣ ବହି ଲେଖିବା ପାଇଁ ପ୍ରକାଶକ ଉତ୍ସାହିତ ହେଲେ । ଏହାକୁ ଗୋପାଳ ଚନ୍ଦ୍ର ପ୍ରହରାଜ ସଂଶୋଧନ କଲେ ଏବଂ ସେ ଏଥିପାଇଁ ଯେତେ ଘଣ୍ଟା ସମୟ ବ୍ୟୟ କଲେ, ସେଥି ପାଇଁ ଘଣ୍ଟାକୁ ପଚିଶ ଟଙ୍କା ଲେଖାଏଁ ନେଇ ।..."

ଅନ୍ୟ ଏକ ଉଦାହରଣଟି ହେଲା କାଶୀନାଥ ନାୟକଙ୍କ ଆତ୍ମଜୀବନୀ 'ଶିକ୍ଷକର ଜୀବନସ୍ମୃତି'ରୁ । ଏଥିରୁ ଜଣାପଡ଼େ ଯେ ୧୯୫୦ ଦଶକରେ କାଳିନ୍ଦୀ ଚରଣ ପାଣିଗ୍ରାହୀ, ନୀଳକଣ୍ଠ ଦାସ, ରାମକୃଷ୍ଣ ନନ୍ଦ, ଗୋଦାବରୀଶ ଆଦିଙ୍କ ସହିତ ତାଙ୍କର ବହି ମଧ୍ୟ ୩ୟ ଶ୍ରେଣୀ ସାହିତ୍ୟ ବହି ରୂପେ ମଂଜୁରୀ ପ୍ରାପ୍ତ ହୋଇଥିଲା ଏବଂ ଏଥିରୁ ସେ ୨୧୦୦ଟଙ୍କା ପାଇଥିଲେ (ଯେତେବେଳେ ତାଙ୍କର ମାସିକ ଆୟ ଥିଲା ୭/୮୦୦ଟଙ୍କା) । ପରବର୍ଷ ପାଠ୍ୟପୁସ୍ତକରୁ ସେ ପାଇଥିଲେ ୩୫୦୦ ଟଙ୍କା । ପରବର୍ତ୍ତୀ ସମୟରେ ଦାସ ବ୍ରଦର୍ସ ପାଠ୍ୟ ବହି ଲେଖିବା ପାଇଁ ତାଙ୍କୁ ୬୫୦୦ଟଙ୍କା ଅଗ୍ରୀମ ଦେଇଥିଲେ । ପାଠ୍ୟପୁସ୍ତକ ଜାତୀୟକରଣ ପରେ ଆଉ ଏ ପ୍ରକାର ଆୟ ରହିଲା ନାହିଁ ଏବଂ ଶ୍ରୀ ନାୟକ କିଛି ବହି ନିଜସ୍ୱ ବ୍ୟୟରେ ମୁଦ୍ରିତ କରି ସେଗୁଡ଼ିକୁ ପ୍ରିୟଜନ, ବିଶିଷ୍ଟ ବ୍ୟକ୍ତି ଓ ବିଭିନ୍ନ ସ୍କୁଲ କଲେଜ ଲାଇବ୍ରେରିକୁ ଦାନ କରିବା ଆରମ୍ଭ କଲେ ।

କାଳିନ୍ଦୀ ଚରଣ ପାଣିଗ୍ରାହୀ ଲେଖିଥିବା ପାଠ୍ୟ ପୁସ୍ତକ 'ନବ ସାହିତ୍ୟ' ଆମେମାନେ ସ୍କୁଲ ବେଳେ ପଢୁଥିଲୁ । ପରବର୍ତ୍ତୀ ସମୟରେ ଏ ବିଷୟରେ ଗୋଦାବରୀଶ ମହାପାତ୍ର ତାଙ୍କୁ ଆକ୍ଷେପ କରି ଏ ଭଳି ଲେଖିଥିଲେ (ଯାହା ମୁଁ ସ୍ମରଣରୁ ଲେଖୁଛି)

: ବନ୍ଦୀ ହେଲ କି ଆହେ କାଳିନ୍ଦୀ ପାଣିଗ୍ରାହୀ, ପାଠ୍ୟ କିତାବ ଲେଖିବାରେ; ମସିରୁ କାହିଁକି ଅସି ଯେ ବାହାର ହୁଏ ନାହିଁ, ଦେଶର ଏ ଦଶା ଦେଖିବାରେ ।

ଏଥିରୁ ଜଣାପଡ଼ିବ ଯେ ଅନ୍ତତଃ ପାଠ୍ୟପୁସ୍ତକ ଲେଖାରୁ ପଇସା ମିଳୁଥିଲା । କିନ୍ତୁ ଏଥିରୁ ଯେ ବିଶେଷ ସମ୍ମାନ ମିଳୁ ନଥିଲା, ତା ଜଣା ପଡ଼ିବ କୁଞ୍ଜବିହାରୀ ଦାଶଙ୍କ 'ମୋ କାହାଣୀ'(୧୯୮୦, ପୃଷ୍ଠା ୧୯୧)ରୁ : "ସେତେବେଳେ ମୋର ସହକର୍ମୀ ଥିଲେ ଶ୍ରୀଧର ଦାସ... ସାହିତ୍ୟିକ ମହଲରୁ ସେ ଖସି ଆସିଥିଲେ ପାଠ୍ୟ ରଚୟିତାଙ୍କ ସ୍ତରକୁ । ଅର୍ଥ ପ୍ରଚୁର ମିଳିଲା, ମିଳି ପାରିଲା ନାହିଁ ପ୍ରତିଷ୍ଠା ।"

ଅବଶ୍ୟ ଓଡ଼ିଶାରେ ରାଧାନାଥ ରାୟ, ମଧୁସୂଦନ ରାଓଙ୍କଠାରୁ ଆରମ୍ଭ କରି ଅନେକ ଲେଖକ ପାଠ୍ୟ ପୁସ୍ତକ ଲେଖିବାର ଉଦାହରଣ ଅଛି । ରାଧାନାଥ ଓ ମଧୁସୂଦନ(ସେତେବେଳର ଓଡ଼ିଶା ଶିକ୍ଷା ବିଭାଗର ବଡ଼ଲାଟ ଛୋଟଲାଟ) ପାଠ୍ୟ ପୁସ୍ତକ ଲେଖି ଓ ତାକୁ ପ୍ରଚଳିତ କରାଇ ଲାଭବାନ ହେଉଥିଲେ ବୋଲି ସେତେବେଳେ ସମାଲୋଚନାର ଶରବ୍ୟ ହୋଇଥିଲେ । ତଥାପି ଏହି ଆୟରେ ସନ୍ତୁଷ୍ଟ ନହୋଇ ରାଧାନାଥ ଲେଖିଥିଲେ, "ମୋହୋ ପକ୍ଷରେ ଓଡ଼ିଆ ଓ ବଙ୍ଗଳା ଉଭୟ ଭାଷା ସମାନ । ବଙ୍ଗରେ ମୁଁ ପାଠ୍ୟପୁସ୍ତକ ଲେଖିଥିଲେ ମୋହୋର ଆର୍ଥିକ ଅବସ୍ଥା ଭିନ୍ନ ପ୍ରକାରର ହୋଇଥାନ୍ତା ।"(ଗଙ୍ଗାଧର ମେହେରଙ୍କୁ ପତ୍ର ୬.୯.୧୮୯୮)

ଆମେ ବିଦେଶୀ ଲେଖକମାନଙ୍କର ରୋଜଗାର ବିଷୟରେ ଯେତେ ଜାଣୁ, ଭାରତୀୟ ଲେଖକ ଓ ବିଶେଷରେ ଓଡ଼ିଆ ଲେଖକମାନେ ଲେଖାରୁ କି ଭଳି ପଇସା ପା'ନ୍ତି, ସେ ବିଷୟରେ ଆଦୌ ଜାଣୁ ନା । ତେବେ ନିକଟରେ (୨୪ ଜୁଲାଇ ୨୦୧୬) ଆମର ସବୁଠାରୁ ଜନପ୍ରିୟ ଓ ବେଶି ବିକ୍ରି ହେଉଥିବା ଲେଖକ ମନୋଜ ଦାସ ଅସିତ ମହାନ୍ତିଙ୍କୁ ଦେଇଥିବା ପତ୍ରରେ ଏପରି ବିବରଣୀ ଦେଇଥିଲେ : ୨୦୦୨ରେ 'week' ପତ୍ରିକା ତାଙ୍କର ଗୋଟିଏ ଗଳ୍ପ ପାଇଁ ୧୦,୦୦୦ଟଙ୍କା ଓ ୨୦୧୩-୧୪ରେ 'ପ୍ରତିନିଧି' ପତ୍ରିକା ଦୁଇଟି ପ୍ରବନ୍ଧ ପାଇଁ ତାଙ୍କୁ ୧୦,୦୦୦ଟଙ୍କା ଦେଇଥିଲେ । ୨୦୧୧ରେ ବିଦେଶୀ ଓ ଭାରତୀୟ ଇଂରେଜୀ ଦୈନିକରୁ ୬ଟି ପ୍ରବନ୍ଧ ପାଇଁ ସେ ଏକ ଲକ୍ଷ ଟଙ୍କା ପାଇଥିଲେ ।

ମୁଁ ବର୍ତ୍ତମାନ ମୋର ଗୋଟିଏ ନିଜର ଉଦାହରଣ ଦେଉଛି । ଶହେଟି କବିତା ଥିବା ମୋର କବିତା ବହି 'ଅନ୍ୟ ଦେଶ ଭିନ୍ନ ସମୟ' ପ୍ରକାଶ ପାଇଥିଲା

୧୯୮୨ରେ । ବହିର ଦାମ ଥିଲା ଚଉଦ ଟଙ୍କା । କହିବା ବାହୁଲ୍ୟ ମୁଁ ଏ ବହି ପାଇଁ କିଛି ପଇସା ପାଇ ନ ଥିଲି । ଏ ବହିର ପଚାଶଟି କବିତା ଇଂରେଜୀରେ ଅନୂଦିତ ହୋଇ ପ୍ରକାଶ ପାଇଲା ୧୯୮୦ରେ । (ତଥ୍ୟ ଭୁଲ ନୁହେଁ; ଓଡ଼ିଆ ବହିର ପାଣ୍ଡୁଲିପି ପ୍ରକାଶକଙ୍କ ପାଖରେ ପଡ଼ି ରହିଥିଲା ଏତେ ଦିନ ।) ଏହି ଇଂରେଜୀ ବହି- Timescapes, Arnold-Heinemann, ମୂଲ୍ୟ ୨୫ଟଙ୍କା-ରୁ ମୁଁ ରୟାଲଟି ପାଇଥିଲି ୨୫୦୦ଟଙ୍କା । ୧୯୮୯ରେ ଆମେରିକାର Roth Publishing ଏଥିରୁ ୮ଟି କବିତା ତାଙ୍କର Twentieth Century Asian Verse ବହିରେ ପ୍ରକାଶ କରି ରୟାଲିଟି ଦେଇଥିଲେ ୧୫୦୦ଟଙ୍କା । ଏହି ଶହେ କବିତାର ହିନ୍ଦୀ ଅନୁବାଦ 'ଲୌଟତେ ସମୟ'(ଜ୍ଞାନପୀଠ, ୧୯୮୯, ମୂଲ୍ୟ ୪୫ଟଙ୍କା) ପାଇଁ ମୁଁ ପାଇଥିଲି ୧୫୦୦ଟଙ୍କା । ଏହା ଉପରେ କୌଣସି ଟିପ୍ପଣୀ ନିଷ୍ପ୍ରୟୋଜନ । ମୋର ଆଉ ମଧ୍ୟ ମନେ ଅଛି ଯେ ୧୯୭୫ରେ ମୁଁ ତିନିଶହ ଟଙ୍କାରେ ଗୋଟିଏ ସେକେଣ୍ଡ ହ୍ୟାଣ୍ଡ ଟାଇପରାଇଟର କିଣିଥିଲି ଏବଂ Shankar's Weekly ପତ୍ରିକାରେ ଚାରିଟି middle ଲେଖି ସେ ଖର୍ଚ୍ଚ ଉଠାଇଥିଲି । ଏଥିରୁ ଜଣାପଡ଼ିବ ଯେ ଲେଖାରୁ ଆୟ ଅତି ସମାନ୍ୟ ଥିଲା ଏବଂ ଓଡ଼ିଆ ଲେଖାରୁ ସେତିକି ମଧ୍ୟ ମିଳି ନ ଥାନ୍ତା ।

ଏଥିରୁ ଧାରଣା ହେବ ଯେ ଇଂରେଜୀ ପ୍ରକାଶନରୁ ଅନ୍ତତଃ କିଛି ଟଙ୍କା ମିଳେ ଓ ବିଦେଶୀ ପ୍ରକାଶକ ବେଶି ଟଙ୍କା ଦିଅନ୍ତି । ଏ କଥା ଆଂଶିକ ସତ । ଇଂରେଜୀରେ ଲେଖୁଥିବା ସବୁ ଭାରତୀୟ ଲେଖକଙ୍କର ଅବସ୍ଥା ଏକା ଭଳି ନୁହେଁ । ଏମାନଙ୍କ ଭିତରେ ଏକ ଜାତିପ୍ରଥା ଅଛି ଏବଂ କେବଳ ଉପନ୍ୟାସ ଲେଖକ ହିଁ ଚତୁର୍ବର୍ଣ୍ଣର ଅନ୍ତର୍ଭୁକ୍ତ । କବିମାନେ ଏଠାରେ ଅସ୍ପୃଶ୍ୟ । ବିକ୍ରମ ସେଠ ଓ ଅମିତାଭ ଘୋଷଙ୍କ ଭଳି ଲେଖକ ବ୍ରାହ୍ମଣ ଓ ଅନ୍ୟମାନେ ନୀଚ ବର୍ଣ୍ଣର ।

ଭାରତୀୟ ଇଂରେଜୀ ଲେଖକ ବହି ପାଇଁ ମୋଟା ଅଗ୍ରୀମ ପାଇବା ଉଦାହରଣ ହେଉଛି ବିକ୍ରମ ସେଠ ୧୯୯୨ରେ A Suitable Boy ପାଇଁ ପାଇଥିବା ତିନି କୋଟି ଟଙ୍କା । ତାଙ୍କର ପରବର୍ତ୍ତୀ ପ୍ରଯୋଜିତ ବହି A Suitable Girl ପାଇଁ ସେ ଅଗ୍ରୀମ ପାଇଥିଲେ ଦଶ କୋଟି ଟଙ୍କା । କିଛି ଅନ୍ୟ ଲେଖକ, ସେମାନଙ୍କୁ ସାହିତ୍ୟରେ ଭଲ ଲେଖକ ହୋଇଥିବାର ସ୍ୱୀକୃତି ମିଳୁ ନ ମିଳୁ, ବେଶ ରୋଜଗାର କରନ୍ତି । ଇଣ୍ଟରନେଟରୁ ଉପଲବ୍ଧ ତଥ୍ୟ ଅନୁସାରେ ଚେତନ ଭଗତଙ୍କର ବହିରୁ ବାର୍ଷିକ

ଆୟ ୩.୨୯ କୋଟି ଟଙ୍କା, ଅମିଶ ତ୍ରିପାଠୀଙ୍କର ଦୁଇ ବର୍ଷର ଆୟ ଥିଲା ୧୬ କୋଟି ଟଙ୍କା !

ଏହା ଯଦି ଖୁବ୍ ବଡ଼ ମାତ୍ରାର ଭଳି ଜଣାପଡୁଛି, କିଛି ଆମେରିକୀ ଲେଖକଙ୍କ ଉଦାହରଣ ଦେଖାଯାଉ । ନିଜର ଗୋଟିଏ ଗଳ୍ପ ପାଇଁ କବି Elizabeth Bishop(୧୯୧୧-୭୯) The New Yorker ପତ୍ରିକାରୁ ପାଇଥିବା ଟଙ୍କାରେ ଗୋଟିଏ ମୋଟର ଗାଡ଼ି କିଣିଥିଲେ । କ୍ରାଇମ ଉପନ୍ୟାସ ଲେଖିକା Mary Higgins Clark ପ୍ରତିଟି ଉପନ୍ୟାସ ପାଇଁ ୧୨ ନିୟୁତ ଡଲାର(୮୧ କୋଟି ଟଙ୍କା) ପାଇଥାନ୍ତି । ୧୯୨୯ରେ F. Scott Fitzerald ତାଙ୍କର ପ୍ରତିଟି ଗଳ୍ପ ପାଇଁ The Saturday Evening Postରୁ ୪୦୦୦ ଡଲାର ପାଉଥିଲେ ବର୍ତ୍ତମାନ ଯାହାର ମୂଲ୍ୟ ହେବ ୫୫,୩୨୭ ଡଲାର ବା ୩୬.୬୨ ଲକ୍ଷ ଟଙ୍କା !

ସେହିପରି ଗବେଷଣା କରି ବହି ଲେଖିବା ପାଇଁ ପାଶ୍ଚାତ୍ୟ ଦେଶରେ ଲେଖକମାନଙ୍କୁ ପ୍ରଚୁର ଅର୍ଥ ମିଳିଥାଏ । ଆମ ଏଠାରେ କିନ୍ତୁ ଲେଖକକୁ ଘରୁ ଖାଇ ଘୋଡ଼ା ଆଗରେ ଦଉଡ଼ିବାକୁ ପଡ଼ିଥାଏ । ଲାପିଏର ଓ କଲିନ୍ସ ସେମାନଙ୍କ Freedom at Midnight ପାଇଁ ଗବେଷଣା କରିବା ବେଳେ ଦିଲ୍ଲୀର ସମ୍ଭ୍ରାନ୍ତ ଶାନ୍ତିପଥର ଦୁଇଟି ବଙ୍ଗଳା ଭଡ଼ାରେ ନେଇ ରହିଥିଲେ । ସେମାନଙ୍କ ବ୍ୟବହାର ପାଇଁ ଲଣ୍ଡନରୁ ଗୋଟିଏ ରୋଲସ୍ ରୟେସ୍ ଗାଡ଼ି ଜାହାଜରେ ଆସିଥିଲା । ତାଙ୍କ ସେବା ପାଇଁ ବଙ୍ଗଳାରେ ନିଯୁକ୍ତି ଥିଲେ ବେହେରା, ଖାନସାମା, ରାନ୍ଧୁଣି, ଧୋବା, ମେହେନ୍ତର, ମାଳି ଓ ଚୌକିଦାର । ଏହି ଭଳି ବିଲାତୀ ଔପନିବେଶିକ ସାହେବ ଭଳି ରହି ସେମାନେ ବହିଟି ପାଇଁ ଗବେଷଣା କରିଥିଲେ । ବହିରୁ ରୋଜଗାର ତୁଳନାରେ ଏ ଖର୍ଚ୍ଚ ନିଶ୍ଚୟ ଉପଯୁକ୍ତ ଥିଲା ।

ଗବେଷଣା କାର୍ଯ୍ୟରେ ମୋର ଅଭିଜ୍ଞତା ହେଲା ଯେ 'ଦେଶ କାଳ ପାତ୍ର' ଲେଖିବା ପାଇଁ ବିଭିନ୍ନ ଜାଗା ଓ ଲାଇବ୍ରେରିକୁ ଯିବାଆସିବା, ବହି କିଣିବା, ଡାକ ଖର୍ଚ୍ଚ ଇତ୍ୟାଦିରେ ମୁଁ ବେଶ କିଛି ଟଙ୍କା ଖର୍ଚ୍ଚ କରିଥିଲି, କିନ୍ତୁ ମୁଁ ସେ ବହିରୁ ଫଟୋ କପିରେ ହୋଇଥିବା ଖର୍ଚ୍ଚ ମଧ୍ୟ ପାଇ ନଥିଲି ।

ଏ ଅବସ୍ଥାରେ କାହାରିକୁ ଦାୟୀ କରିବା ବା ଗାଳିମନ୍ଦ କରି କିଛି ଲାଭ ନାହିଁ । ପ୍ରକାଶକଙ୍କ କହିବା କଥା ହେଲା ଯେ ଯେତେବେଳେ ବହି ବିକ୍ରି ହେଉଥିଲା,

ସେମାନେ ଲେଖକଙ୍କୁ ରୟାଲ୍‌ଟି ଦେଉଥିଲେ । ବର୍ତ୍ତମାନ କିନ୍ତୁ କେହି ବହି କିଣୁନାହାନ୍ତି । ବହି ପାଇଁ କେବଳ ରାଜା ରାମମୋହନ ରାୟ ଭରସା ଥିବାରୁ ସେମାନେ ଦୁଇଟି ନମୁନା ବହି ତିଆରି କରି ତାକୁ ଦାଖଲ କରନ୍ତି, ଯଦି ବହିର ଅର୍ଡର ଆସେ ତେବେ ତାକୁ ଛାପନ୍ତି । ଏହା ନିଶ୍ଚୟ ଏକ କରୁଣ ପରିସ୍ଥିତି ।

ଲେଖକ ଓ ପ୍ରକାଶକଙ୍କ ବ୍ୟବସାୟିକ ସଂପର୍କ ସବୁବେଳେ ସଂଶୟର ବଳୟ ଭିତରେ ରହି ଆସିଛି । ଲେଖକ ସବୁବେଳେ ଭାବେ ଯେ ପ୍ରକାଶକ ତାର ବହିରୁ ଅଜସ୍ର ରୋଜଗାର କରିବା ସତ୍ତ୍ୱେ ତାକୁ ତାର ପ୍ରାପ୍ୟ ଦେଉ ନାହାନ୍ତି । ଫକୀରମୋହନ ସେଥିପାଇଁ ସେମାନଙ୍କୁ ମନ୍ଦ ଆଖ୍ୟା ଦେଇଥିଲେ । ଲେଖକମାନଙ୍କୁ ପ୍ରକାଶକଙ୍କ କବଳରୁ ବଞ୍ଚାଇବା ପାଇଁ ସବୁଜ ଗୋଷ୍ଠୀର କବିମାନେ ୧୯୩୧ରେ ସବୁଜ ସାହିତ୍ୟ ସମିତି ଗଢ଼ି ପୁସ୍ତକ ପ୍ରକାଶନ ଆରମ୍ଭ କରିଥିଲେ । ଏହି ସମିତିର ପ୍ରମୁଖ ଅଭିଳାଷ ବିଷୟରେ ସଭ୍ୟ ଶରତଚନ୍ଦ୍ର ମୁଖାର୍ଜୀ ଲେଖିଥିଲେ, ''ମୋର ଦୃଢ଼ ପଣ ହୋଇଥିଲା ଯେ ଆମ ଦେଶରେ ଏପରି ଗୋଟିଏ ସାହିତ୍ୟିକମାନଙ୍କର ସଂସ୍ଥା ଗଢ଼ିବା ଯାହା ଫଳରେ କେବଳ ସୁସାହିତ୍ୟ ସୃଷ୍ଟି ହେବ ନାହିଁ, ବରଂ ଲେଖକମାନେ ବି ପଇସା ଉପାର୍ଜନ କରିବେ ।'' ଦୁଃଖର କଥା ଯେ ଏହି ପ୍ରକାଶନ ସଂସ୍ଥା ମାତ୍ର ତିନି ବର୍ଷ କାର୍ଯ୍ୟକାରୀ ରହିଥିଲା ଓ ୩୫ଟି ବହି ପ୍ରକାଶ କରିଥିଲା ।

ନିଜ ଖର୍ଚ୍ଚରେ ବହି ଛାପିବାର ଖରାପ ଦିଗଟି ହେଲା ଯେ ଏହି ଆଖଡ଼ାରେ ଧୁଆ ମୂଳା ଅଧୁଆ ମୂଳା ସମାନ । ଆଗ କାଳରେ ନିଜ ଖର୍ଚ୍ଚରେ ଛାପା ବହି ଅତି ନିମ୍ନମାନର ଛପା ହେଉଥିଲା ଏବଂ ସହଜରେ ପ୍ରକାଶକଙ୍କ ବହିରୁ ବାରି ହୋଇ ଯାଉଥିଲା । ବର୍ତ୍ତମାନ କିନ୍ତୁ ମଧ୍ୟବିତ୍ତ ଲୋକଙ୍କ ହାତକୁ ଟଙ୍କା ଆସିବାରୁ ଏବଂ ଛାପା ପ୍ରଣାଳୀ ଉନ୍ନତ ଓ ଶସ୍ତା ହୋଇଯିବାରୁ ସବୁ ବହି ଅତି ସୁନ୍ଦର ଭାବରେ ପ୍ରକାଶ ପାଉଛି । ପ୍ରକାଶନ ବ୍ୟବସାୟ କଟକରୁ ବାହାରି ଯାଇ ଭୁବନେଶ୍ୱର ଓ ଅନ୍ୟାନ୍ୟ ସହରକୁ ବ୍ୟାପି ଗଲାଣି । ଡିଟିପି ଓ ଛାପା କାମ ସବୁଠାରେ ସହଜରେ ଉପଲବ୍ଧ ହେଉଥିବାରୁ ତଥାକଥିତ ଲେଖକଙ୍କୁ ଆଉ କଟକ ଭୁବନେଶ୍ୱର ଯିବାକୁ ହେଉନାହିଁ । ବହି ବିକ୍ରିରୁ ପଇସା ମିଳୁ ନଥିବାରୁ 'ପ୍ରକାଶକ' ଭାବରେ ତିଷ୍ଠିବା ପାଇଁ 'ଯେ ପଇସା ଦେବ ତା ବହି ଛପା ହେବ' ନିୟମ ହୋଇଗଲାଣି, ଏବଂ ଏହାକୁ କେହି ନିନ୍ଦନୀୟ ମନେ କରୁନାହାନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ପରବର୍ତ୍ତୀ ସମୟରେ ପି. ଲାଲଙ୍କ ରାଇଟର୍ସ ୱର୍କଶପ ମଧ୍ୟ ଏହି ପନ୍ଥା ଗ୍ରହଣ କରି

ପ୍ରକାଶକ କମ ମୁଦ୍ରାକର ବେଶି ପାଲଟି ଯାଇଥିଲେ ଓ ବହିର ଉତ୍କର୍ଷ ପ୍ରତି ଦୃଷ୍ଟି ଦେଉ ନଥିଲେ ।

ତଥାକଥିତ ଲେଖକ, ତଥାକଥିତ ପ୍ରକାଶକ ଓ ତଥାକଥିତ ସାହିତ୍ୟର କୁଟିଳ ଚକ୍ରରୁ ବାହାରିବାର ଏକମାତ୍ର ରାସ୍ତା ହେଉଛି ନିଷ୍ପକ୍ଷ ଓ ନିଷ୍ପାପର ପୁସ୍ତକ ଆଲୋଚନା ଓ ସମୀକ୍ଷା । ତା ହେଲେ ଅନ୍ତତଃ କିଛି ପାଠକ ଭଲ ମନ୍ତବ୍ୟ ପାଇଥିବା ବହି କିଣିବେ, ଏବଂ ତାକୁ ମାଗଣାରେ ଲେଖକଙ୍କ ପାଖରୁ ପାଇଥିବା ବହିଟିକୁ ଘରକୁ ଆସି ଅଳିଆ ଗଦାରେ ପକାଇ ଦେବା ଭଳି ଫିଙ୍ଗି ଦେବେ ନାହିଁ । ଓଡ଼ିଆରେ ଯେ ମାଳ ମାଳ ପତ୍ରିକା ପ୍ରକାଶ ପାଉଛି ତା ଭିତରୁ କିଛି ଅନ୍ତତଃ ଏ ଦାୟିତ୍ୱ ନିଅନ୍ତୁ ଏବଂ ଅପ୍ରିୟ ହେବାକୁ ଭୟ ନକରି ପ୍ରିୟାପ୍ରୀତି ତୋଷଣମୁକ୍ତ ନିର୍ଭୀକ ଓ ଯଥାର୍ଥ ସମାଲୋଚନା ପ୍ରକାଶ କରନ୍ତୁ । ତା ହେଲେ ସାହିତ୍ୟ ହାଟରେ ଗ୍ରାହକମାନେ ଭଲ ଜିନିଷ କିଣିବାର ସୁଯୋଗ ପାଇବେ ।

ଏବଂ ଆମେ ସ୍ୱପ୍ନ ଦେଖିପାରିବା ଯେ ସୁଦୂର ଭବିଷ୍ୟତରେ ଅନ୍ତତଃ କିଛି ଓଡ଼ିଆ ଲେଖକ କେବଳ ସାହିତ୍ୟ ନେଇ ଜୀବିକା ନିର୍ବାହ କରିବେ । ବର୍ତ୍ତମାନ କିନ୍ତୁ ହାଟବାହୁଡ଼ା ଲେଖକ ପାଇଁ 'ଦେଶି ସାହିତ୍ୟ ଯେ ବଣିଜ କଲା, ଜାଣିଥିବ ସେହି ଲୋକଟା ମଲା' ।

*ଫେବ୍ରୁଆରି ୨୦୧୭*

# ଲେଖନର କାୟାକଳ୍ପ ଓ ଇ-ସାହିତ୍ୟ

''ସାଇବର୍ ପୃଥିବୀରେ କେହି ଜାଣନ୍ତି ନାହିଁ ଯେ
ମୁଁ ଗୋଟିଏ ଜନ୍ତୁ ।''

-ନିଉୟର୍କର୍ ପତ୍ରିକାର କାର୍ଟୁନରେ କଂପ୍ୟୁଟର ଆଗରେ ବସିଥିବା କୁକୁର

ପ୍ରାଚୀନ ସମୟରେ ଲେଖାର ପ୍ରଚଳନ ନ ଥିଲା ଏବଂ ସବୁ ହେଉଥିଲା ଶ୍ରୁତିରେ । ଏପରିକି ଅମର ପ୍ରଥମ ଧର୍ମଗ୍ରନ୍ଥ ଓ ସାହିତ୍ୟ ବେଦକୁ କେବଳ ଶୁଣି ଶୁଣି ସ୍ମୃତିରେ ମନେ ରଖି ଅନ୍ୟମାନଙ୍କୁ ଶୁଣାଇବାକୁ ହେଉଥିଲା, ଯେଉଁଥି ପାଇଁ ବେଦର ଅନ୍ୟ ନାମ ଥିଲା ଶ୍ରୁତି । ପୃଥିବୀର ଅନ୍ୟତ୍ର ମଧ୍ୟ ଏହି ସମୟରେ ଶାସ୍ତ୍ର ସବୁ ଶ୍ରୁତି ନିର୍ଭର ଥିଲା ।

ଯେତେବେଳେ ଲେଖାର ଉଦ୍‌ଭାବନ ହେଲା, କେତେକ ତାହାର ବିରୋଧ କରିଥିଲେ, ଯଥା ପ୍ଲେଟୋ(ଖ୍ରୀ.ପୂ. ୪୨୮-୩୪୭) । ସେ ତାଙ୍କର ଗୁରୁ ସକ୍ରେଟିସ୍(ଖ୍ରୀ.ପୂ. ୪୬୯-୩୯୯)ଙ୍କ ମୁହଁରେ ଲେଖିବା ବିରୁଦ୍ଧରେ ଏ ଭଳି ଯୁକ୍ତି ଦେଇଛନ୍ତି :

- ଏହା ମାନବ ସୁଲଭ ନୁହେଁ । ଯାହା ମନ ଭିତରେ ଅଛି, ଲେଖା ତାକୁ ବାହାରକୁ ଆଣିବାର ଦୁଃସାହସ କରେ । ଏହା ସ୍ୱାଭାବିକ ନୁହେଁ, ଗୋଟିଏ ଗଢ଼ା ହୋଇଥିବା ଜିନିଷ ମାତ୍ର ।

- ଏହା ଦ୍ୱାରା ସ୍ମୃତିଶକ୍ତି ହ୍ରାସ ପାଏ ।

- ଗୋଟିଏ ଲିଖିତ ପାଠ ପ୍ରତିକ୍ରିୟା ଜଣାଇବାକୁ ବା ଉତ୍ତର ଦେବାକୁ ସକ୍ଷମ ନୁହେଁ ଏବଂ ସେଥିପାଇଁ ନିଜକୁ ସମାଲୋଚନାରୁ ରକ୍ଷା କରିପାରିବ ନାହିଁ ।

- ଚିନ୍ତା ଓ କଥନ ଭିତରେ ସବୁବେଳେ ପରସ୍ପରର ଆଦାନ ପ୍ରଦାନ ଚାଲିଥାଏ; ଚିନ୍ତା ଓ ଲେଖା ଭିତରେ ତା ସମ୍ଭବ ନୁହେଁ ।

ଏ ସବୁ ଦୃଷ୍ଟିରୁ ସକ୍ରେଟିସଙ୍କ ମତରେ ଲେଖା ନିଶ୍ଚେଷ୍ଟ, କୃତ୍ରିମ ଓ ଅବାସ୍ତବ । ଏଠାରେ ଲକ୍ଷଣୀୟ ଯେ ଏ ଯୁକ୍ତିମାନ କଂପ୍ୟୁଟର ବିରୁଦ୍ଧରେ ମଧ୍ୟ ସମାନ ଭାବରେ ପ୍ରଯୁଜ୍ୟ ।

ଗ୍ରୀସ୍‌ରେ ହୋମର(ଖ୍ରୀ.ପୂ. ୮ମ ଶତାବ୍ଦୀ)ଙ୍କ ସମୟରୁ ଯେଉଁ ଶ୍ରୁତି ଓ ସ୍ମୃତି ନିର୍ଭର ମୌଖିକ ସଂସ୍କୃତି ଚଳି ଆସୁଥିଲା, ସକ୍ରେଟିସଙ୍କ ବେଳକୁ ତା'ର ଶେଷ ହୋଇ ଲିଖିତ ପାଠ ଆରମ୍ଭ ହେଲା । ଏହି ପରିବର୍ତ୍ତନ ସପକ୍ଷରେ କୁହାଗଲା, ମୁଖରେ ଉଚ୍ଚାରିତ ଶବ୍ଦ ଉଡ଼ିଯାଏ, ଲିଖିତ ଶବ୍ଦ ହିଁ ରହିଥାଏ ।

ପ୍ରଥମ ସମୟରେ ଲେଖା ହେଉଥିଲା ହାତରେ ଏବଂ ଏହାର ମାଧ୍ୟମ ଥିଲା ପାପିରସ୍ ଭୂର୍ଜପତ୍ର ତାଳପତ୍ର ପଥର ତମ୍ବାପଟା ଓ ଶେଷରେ କାଗଜ । ଏହାକୁ ହାତରେ କାଳିକଲମ ଓ ଲୁହାର ଲେଖନୀ ଧରି ଲେଖୁଥିଲେ ଲିପିକାରମାନେ । ସେଥିପାଇଁ ସେତେବେଳେ ବହିର ସଂଖ୍ୟା ସୀମିତ ଓ ନଗଣ୍ୟ ଥିଲା । ଏ ପରିସ୍ଥିତି ଥିଲା ସାରା ପୃଥିବୀରେ ।

ଏଥିରେ ଗୋଟିଏ ଯୁଗାନ୍ତକାରୀ ପରିବର୍ତ୍ତନ ଆସିଲା ପଞ୍ଚଦଶ ଶତାବ୍ଦୀରେ ଗୁଟେନବର୍ଗ ଚଳନ୍ତି ଅକ୍ଷର ଉଦ୍‌ଭାବନ କରିବା ପରେ । ଏହା ଦ୍ୱାରା ହାତ ଲେଖା ପରିବର୍ତ୍ତେ ଯାନ୍ତ୍ରିକ ପ୍ରକ୍ରିୟାରେ ହଜାର ହଜାର ବହି ଛପା ହୋଇ ଲୋକଙ୍କ ପାଖରେ ପହଞ୍ଚିଲା । ଆଗରୁ ହାତ ଲେଖା ବହିର ସଂଖ୍ୟା କମ ଥିବାରୁ ଓ ଦାମ ବେଶି ଥିବାରୁ କେତେ ଅଳ୍ପସଂଖ୍ୟକ ଧନୀ ଲୋକ ତାକୁ କିଣି ପାରୁଥିଲେ । ବର୍ତ୍ତମାନ କିନ୍ତୁ ସାଧାରଣ ଲୋକ ଅଳ୍ପ ଦାମରେ ଛାପା ବହି କିଣି ପାରିଲେ । ହିସାବ କରି ଦେଖାଯାଇଛି ଯେ ଗୁଟେନବର୍ଗ ତାଙ୍କର ବାଇବଲ୍ ଛାପିବା ପୂର୍ବରୁ ସମଗ୍ର ଇଉରୋପରେ ମାତ୍ର ୩୦,୦୦୦ ବହି ଉପଲବ୍ଧ ଥିଲା । ପଚାଶ ବର୍ଷ ଭିତରେ ଏହି ସଂଖ୍ୟା ଏକ କୋଟି ଉପରେ ପହଞ୍ଚିଲା ।

ଆମ ଓଡ଼ିଶାରେ ଲେଖିବା ପାଇଁ ତାଳପତ୍ର ବ୍ୟବହାର ହେଉଥିଲା ଏବଂ ଏହା ଉପରେ ଲୁହାର ମୁନିଆ ଲେଖନୀ ସାହାଯ୍ୟରେ ଲେଖିବା କାମରେ ବିଶେଷ କରଣମାନେ ନିଯୁକ୍ତ ଥିଲେ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ବେଳକୁ ଚୀନରେ କାଗଜର

ବ୍ୟବହାର ଆରମ୍ଭ ହୋଇଥିଲା ଏବଂ ଏକାଦଶ ଶତାବ୍ଦୀ ବେଳକୁ ଇଉରୋପରେ ଏବଂ ୧୨ଶ ଶତାବ୍ଦୀରେ ଭାରତରେ କାଗଜର ଚଳନ ହେଲା । ଓଡ଼ିଶାରେ କିନ୍ତୁ ଏହାର ବ୍ୟବହାର ହେଲା ଅନେକ ଡେରିରେ ଏବଂ ହାତଲେଖା ତାଳପତ୍ର ପୋଥି ଚଳିଲା ଅନ୍ତତଃ ବିଂଶ ଶତାବ୍ଦୀର ପ୍ରଥମ ଭାଗ ପର୍ଯ୍ୟନ୍ତ । ଏହି ସମୟରେ ଆମର କବି ଚିନ୍ତାମଣି ମହାନ୍ତି(୧୮୬୭-୧୯୪୩) ତାଙ୍କର 'ତାଳପତ୍ର' କବିତାରେ ତାଳପତ୍ରକୁ ସମ୍ବୋଧନ କରି ଲେଖିଥିଲେ :

ତୋ ସଙ୍ଗେ ଏବେ କାକତ
ପ୍ରତିଯୋଗିତାରେ ରତ
ମାତ୍ର ଉତ୍କଳେ ତୋ ଶକ୍ତି ସଦା ଅକ୍ଷତ ॥

ଓଡ଼ିଶାରେ କାକତ ବା କାଗଜ ସହିତ ତାଳପତ୍ରର ବ୍ୟବହାର ଅନେକ ଦିନ ପର୍ଯ୍ୟନ୍ତ ରହିଲା । କେତେକ ତାଳପତ୍ର ପୋଥିଚିତ୍ରରେ ଦିଜଣ ସାଧୁ ପାଖାପାଖି ବସି ପଢୁଛନ୍ତି, ଜଣକ ହାତରେ ତାଳପତ୍ର ପୋଥି ବିଡ଼ା ଆଉ ଜଣଙ୍କ ହାତରେ କାଗଜ(ଚିତ୍ରପୋଥି, ୧୯୮୫ ଦ୍ରଷ୍ଟବ୍ୟ) ।

୧୯୭୩ରେ କେନାଲ ରେଭେନ୍ୟୁ ସୁପରିନ୍‌ଟେଣ୍ଡେଣ୍ଟ ଟୟନବୀ ଲେଖିଛନ୍ତି କିପରି ଓଡ଼ିଆ ମୋହରିରମାନେ ତାଳପତ୍ର ଉପରେ ଲେଖନୀରେ ଲେଖିବାରେ ଅଭ୍ୟସ୍ତ ଥିଲେ, କିନ୍ତୁ ଗୋଟିଏ ସାଧାରଣ କଲମରେ କାଗଜ ଉପରେ ଲେଖିବାକୁ ଅସମର୍ଥ ଥିଲେ । ମାୟାଧର ମାନସିଂହ ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସରେ ବ୍ୟକ୍ତିଗତ ଅନୁଭୂତିରୁ ଲେଖିଛନ୍ତି ଯେ ତାଙ୍କର ପିଲାଦିନେ ସେ ତାଙ୍କ ଗାଁ'ର ଚଷାକୁ କଷ୍ଟ କରି ତାଳପତ୍ର ଉପରେ ଭାଗବତ ଉତାରିବାର ଦେଖିଥିଲେ, ଯଦିଓ ସେ ସମୟରେ ଛପା ଭାଗବତ ଉପଲବ୍ଧ ଥିଲା । ସେହି ନିରୀହ ଚଷାଟି ପାଇଁ କାଗଜ ଇତର ଜିନିଷ ଥିଲା ଏବଂ ସେଥିରେ ତାଳପତ୍ରରେ ଥିବା ପବିତ୍ରତାର ମହକ ନ ଥିଲା ।

ଓଡ଼ିଶାରେ ଅନେକ ଦିନ ତାଳପତ୍ର ଚଳିବାର ଆଉ ଏକ କାରଣ ଥିଲା କାଗଜ ବହି ପଢ଼ିଲେ ଜାତି ଯିବାର ଭୟ । କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କର 'ମୋ ସମୟର ଓଡ଼ିଶା' ବହିରେ ଲେଖିଛନ୍ତି କିପରି ପୁରୀର ବ୍ରାହ୍ମଣ ଗାଁ'ରେ ଥିବା ସ୍କୁଲରେ କାଗଜର ବ୍ୟବହାର ହେଉଥିବାରୁ ବ୍ରାହ୍ମଣମାନେ ସ୍କୁଲ ଭାଙ୍ଗିଦେଲେ ଏବଂ ପିଲାମାନଙ୍କୁ ଲଣ୍ଡା କରି ଗୋବର ପାଣି ପିଆଇଲେ ।

ଛାପା ବହିକୁ ତାଳପତ୍ରରେ ଉତାରିବାର ମଧ୍ୟ ଉଦାହରଣ ଅଛି । ନ୍ୟାଶନାଲ ମ୍ୟୁଜିୟମରେ ଥିବା ଶ୍ରୀ ବଳାହକ ଚଉତିଶା ପୋଥିର ପୁଷ୍ପିକାରେ ଏ ଭଳି ଲେଖା ଅଛି । ଖଡ଼ିଆଳ ଯୁବରାଜ ଶ୍ରୀ ଶ୍ରୀ ମହାରାଜ କୁମାର ଶ୍ରୀ ବ୍ରଜରାଜ ସିଂହଦେଓଙ୍କର କଟକ ପ୍ରିଣ୍ଟିଂ କମ୍ପାନୀ ପ୍ରେସ୍‌ରେ ୧୮୮୬ରେ ଛପା ହୋଇଥିବା ଓ ଶ୍ରୀ ସେକ୍ରେଟାରୀ ଗୌରୀଶଙ୍କର ରାୟଙ୍କ ଦ୍ୱାରା ସଂଶୋଧିତ ପୋଥି ନକଲ ହେଲା ।

ଶେଷକୁ କିନ୍ତୁ ତାଳପତ୍ର ଯାଇ କାଗଜ ହିଁ ଆମ ଲେଖାର ମାଧ୍ୟମ ହୋଇ ରହିଲା ।

ଓଡ଼ିଆରେ ବହି ଛପା ହେଲା ଅନେକ ଡେରିରେ, ୧୮୦୭ ମସିହାରେ, ଏବଂ ଏହାର ଶ୍ରେୟ ଯିବ ପାଦ୍ରିମାନଙ୍କର ଶ୍ରୀରାମପୁର ପ୍ରେସ୍‌କୁ । ଏ ପର୍ଯ୍ୟନ୍ତ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାରଙ୍କର ବାଇବଲ ଅନୁବାଦକୁ ପ୍ରଥମ ଛପା ବହିର ମର୍ଯ୍ୟାଦା ଦିଆଯାଉଥିଲା । ବର୍ତ୍ତମାନ ପଲ୍ ସଁପିଏଙ୍କର ଗବେଷଣାରୁ ଜଣାପଡ଼ିଛି ଯେ ପ୍ରଥମ ପୃଷ୍ଠାରେ ୧୮୦୭ ଲେଖା ହୋଇଥିଲେ ମଧ୍ୟ ବହିଟି ପ୍ରକୃତରେ ଛପା ହୋଇଥିଲା ୧୮୦୯ରେ । ଓଡ଼ିଆରେ ପ୍ରଥମ ଛପା ବହି ହେଉଛି ୧୮୦୭ରେ ଶ୍ରୀରାମପୁର ପ୍ରେସ୍‌ରେ ଛପା ପୀତାମ୍ବର ସିଂହଙ୍କ ଦ୍ୱାରା ବଙ୍ଗଳାରୁ ଅନୁବାଦିତ ୧୬ ପୃଷ୍ଠାର ବହି 'ଆଶ୍ରୟ ନିର୍ଣ୍ଣୟ' ।

କାଗଜ ଛପା ବହି ପରେ ଆଉ ଯେଉଁ ବିରାଟ ପରିବର୍ତ୍ତନ ଓ ପ୍ରବର୍ତ୍ତନ ଆସିଲା ତା' ହେଉଛି ଇଲେକ୍‌ଟ୍ରନିକ ଲେଖା । ଏଥିପାଇଁ କାଗଜ କାଳି ଓ ଛପାଇବା ପାଇଁ ପ୍ରେସ୍‌ର ଆବଶ୍ୟକତା ରହିଲା ନାହିଁ । ଲେଖା ଯାଇ ରହିଲା ସ୍ୱର୍ଗ ମର୍ତ୍ତ୍ୟ ପାତାଳ ବାହାରେ ସାଇବର୍ ଲୋକରେ, ଯାହାକୁ ପଢ଼ି ହେବ କଂପ୍ୟୁଟର ପର୍ଦ୍ଦାରେ ।

ସାଇବର ଏ ଭଳି ଗୋଟିଏ ପୃଥିବୀ ଯେଉଁଠାରେ କିଏ ସତ କିଏ ମିଛ କିଏ କାଳ୍ପନିକ ତା କଳନା କରିବା ଅସମ୍ଭବ(ଲେଖାର ଆରମ୍ଭରେ କୁକୁରର ସ୍ୱଗତୋକ୍ତି ଦ୍ରଷ୍ଟବ୍ୟ) । ଫେସ୍‌ବୁକର ପ୍ରେମ ଭଳି ଏହି ମହୀମଣ୍ଡଳରେ ସବୁକିଛି ଅବାସ୍ତବ, ବାୟବୀୟ, ହାଓ୍ୱା ହାଓ୍ୱାଇ । ତଥାପି ସମସ୍ତେ ଏହି କଳ୍ପଲୋକର ନାଗରିକ ହେବା ପାଇଁ ଆଗ୍ରହୀ । ସାହିତ୍ୟ ମଧ୍ୟ ଏଠାରେ ନିଜର ସ୍ଥାନ ଖୋଜି ନେଲାଣି ।

ପ୍ରତିଟି ନୂଆ ପ୍ରୟୋଗ ପରେ ଲୋକମାନେ ଯେପରି ପୁରୁଣା ଜିନିଷ ଛାଡ଼ିବାକୁ କୁଣ୍ଠିତ ହୁଅନ୍ତି (ଯଥା ତାଳପତ୍ରରୁ କାଗଜ), ସେହିପରି ବିଭିନ୍ନ ସମୟରେ ଶ୍ରୁତି ପରେ ଲିଖିତ ପାଠ, ହାତଲେଖା ପରେ ଛପାପାଠ ଓ ଛପା ବହି ପରେ ଇଲେକ୍‌ଟ୍ରନିକ ବା ଇ-ବହିକୁ ଦ୍ୱିଧାର ସହିତ ଗ୍ରହଣ କରାଯାଉଛି । ବର୍ତ୍ତମାନ ମଧ୍ୟ ଲୋକମାନେ ଛାପାବହି ଛାଡ଼ି ଦେଇ ଇ-ବହି ପଢ଼ିବାକୁ କୁଣ୍ଠିତ ।

ଉର୍ଦ୍ଦୁ କବି ଗୁଲଜାର ତାଙ୍କର 'କିତାବେଁ' କବିତାରେ କାଗଜ ବହି ଓ କଂପ୍ୟୁଟର ପର୍ଦ୍ଦାରେ ପଢ଼ିବାକୁ ତୁଳନା କରି ଲେଖିଛନ୍ତି କିପରି ବହି ସହିତ ଯେତେ ଘନିଷ୍ଠ ଆତ୍ମୀୟତା ସମ୍ଭବ, ମେଶିନରେ ତା ନାହିଁ । ବହିକୁ ଛାତି ଉପରେ ରଖି ହୁଏ, କୋଳକୁ ନେଇ ହୁଏ, କପାଳରେ ଛୁଇଁ ହୁଏ । ବହିର ପୃଷ୍ଠା ଭିତରୁ ବାହାରେ ଶୁଖିଲା ଫୁଲ, କାଗଜ ଚିରକୁଟ । ବହି ମାଗିଲା ବେଳେ, ତଳେ ପଡ଼ିଯାଇଥିବା ବହିକୁ ଉଠାଇବାର ବାହାନା କଲାବେଳେ ଯେଉଁ ସଂପର୍କ ଗଢ଼ି ଉଠୁଥିଲା, ବର୍ତ୍ତମାନ ତାର କଣ ହେବ ?

ଛପା ବହି ପାଇଁ ନସ୍‌ଟାଲଜିଆ ଏକ ରୋମାଣ୍ଟିକ ଭାବନା ନିଶ୍ଚୟ, କିନ୍ତୁ ଏବେ ରୋମାନ୍ସର ବ୍ୟାକରଣ ବି ବଦଳିଗଲାଣି । ଫେସ୍ ବୁକ୍, ଟ୍ୱିଟର, ଏସଏମ୍ଏସ୍‌ର ଦ୍ରୁତଗତି ସମୟରେ କାଗଜକୁ ଏବେ ପଚାରେ କିଏ ? ବର୍ତ୍ତମାନର ବାହାନା ହେଉଛି ଫେସ୍ ବୁକ୍‌ର ଲାଇକ ଓ ଫୋନରେ ମିସ୍‌ଡ୍ କଲ ।

ସବୁ ଯୁଗରେ ଏଇ ଭଳି ପୁରୁଣା ପ୍ରଥା, ଜିନିଷ, ପ୍ରୟୋଗ ପ୍ରତି କିଛି ଦିନ ଅତୀତ ପ୍ରୀତି ରହିଥାଏ । ଆମ ସମୟର ଲୋକମାନେ ଏ ପର୍ଯ୍ୟନ୍ତ ମାନୁଆଲ ଟାଇପରାଇଟର, ବିନାକା ଗୀତମାଲା, ଗୁଲଗୁଲା, କୋଇଲା ଚୁଲି, ମଧୁବାଲା ଓ ଚିତ୍ରହାର କଥା ମନେ ପକାଇ ଆଖି ଛଳ ଛଳ କରନ୍ତି ।

ବିଜ୍ଞାନର ବିସ୍ଫୋରଣ ହୋଇ ସଂବାଦ ସଂଚାରରେ ବର୍ତ୍ତମାନ ଯେଉଁ ଅସମ୍ଭବ ଉନ୍ନତି ଓ ପ୍ରଗତି ଆସିଛି, ବୃଦ୍ଧମାନେ ତାକୁ ଉପଯୋଗ କରିବା ପାଇଁ ପ୍ରସ୍ତୁତ ନୁହନ୍ତି । ସବୁ ସୂଚନା ବର୍ତ୍ତମାନ ହାତ ପାଖରେ, ଗୋଟିଏ ଟିପର ଦୂରତ୍ୱରେ । କାଗଜ କଲମ, ଛପା ଅଭିଧାନ, ବିଶ୍ୱକୋଷ, ଏପରିକି ସକାଳର ଖବର କାଗଜ ବଦଳରେ ବର୍ତ୍ତମାନ ଟେବୁଲ ଉପରେ ଗୋଟିଏ କଂପ୍ୟୁଟର ବା ହାତ ପାପୁଲିର ସ୍ମାର୍ଟ ଫୋନ୍ ହିଁ ଯଥେଷ୍ଟ । ଏହାର ସୁଯୋଗ ନ ନେବା ନିର୍ବୋଧତା ନିଶ୍ଚୟ । ଏହି

ପରିବର୍ତ୍ତନର ଆଉ ଗୋଟିଏ ଭଲ ଦିଗ ହେଲା ଯେ ଏଥି ଯୋଗୁ ଆମର ଜଙ୍ଗଲ ମଧ୍ୟ ରକ୍ଷା ପାଇଯିବ । ସୁଖର ବିଷୟ ଯେ ନୂଆ ପୀଢ଼ୀର ଲେଖକ ପାଠକ ଆସ୍ତେ ଆସ୍ତେ ଏହି ମାଧ୍ୟମକୁ ଆଦରି ନେଲେଣି ।

୧୯୮୦ରେ ଲେଖିଥିବା ଗୋଟିଏ ଗପରେ ମୁଁ କଳ୍ପନା କରିଥିଲି ଯେ ମୁଖ୍ୟ ଚରିତ୍ର ଭବନାଥ କାଗଜର ଲେଖାକୁ ଛାଡ଼ି ଦେଇ ଟେପ ରେକର୍ଡର ସମ୍ନାରେ ବସି ତା ସହିତ କଥାବାର୍ତ୍ତା କରୁଥିଲା କାରଣ ସେ କୋଉଠି ପଢ଼ିଥିଲା ଯେ ଭାବ ବିନିମୟ ମୁଖ୍ୟତଃ ହୋଇଥାଏ ସ୍ୱର ଓ ମୁହଁର ଭାବଭଙ୍ଗୀରେ । ତା ବିଷୟରେ ମୁଁ ଯଦି ବର୍ତ୍ତମାନ ଲେଖିଥାନ୍ତି, ତାଙ୍କୁ ଦେଖାଇ ଥାନ୍ତି ହାତରେ ସ୍ମାର୍ଟ ଫୋନ୍ ଧରି କଂପ୍ୟୁଟର ଆଗରେ ବସିଥିବାର ।

ବର୍ତ୍ତମାନ ଦେଖାଯାଉ ସାଇବର ଲୋକରେ ସାହିତ୍ୟର ସ୍ଥିତି କଣ ଓ ଆମ ଲେଖକମାନେ କିପରି ଏହି ନୂଆ ମାଧ୍ୟମର ଉପଯୋଗ କରୁଛନ୍ତି । ୨୦୧୪ରୁ ଉଇକି ପାଠାଗାର ନାମକ ଏକ ପ୍ରକଳ୍ପ ମାଧ୍ୟମରେ ସଂପୂର୍ଣ୍ଣ ଓଡ଼ିଆ ଭାଗବତ ଓ ଅନ୍ୟାନ୍ୟ ଅନେକ ବହି ଇଣ୍ଟରନେଟ୍‌ରେ ଉପଲବ୍ଧ । ଓଡ଼ିଶାର ଅଧିକାଂଶ ନୂଆ ପୀଢ଼ୀର ଲେଖକ କଂପ୍ୟୁଟର ବ୍ୟବହାରରେ ପାରଙ୍ଗମ । ସେଥିପାଇଁ ଆମେ ଦେଖୁ କଂପ୍ୟୁଟର ପର୍ଦ୍ଦାରେ ଓଡ଼ିଆ ସାହିତ୍ୟ, ବିଶେଷରେ ଓଡ଼ିଆ କବିତାର ପ୍ରାଚୁର୍ଯ୍ୟ । ଅଗଣିତ ଓଡ଼ିଆ କବି ଅସଂଖ୍ୟ କବିତା ଲେଖି କଂପ୍ୟୁଟର ପର୍ଦ୍ଦାକୁ ମଣ୍ଡିତ କରୁଛନ୍ତି । କେବେ କେବେ ଭୟ ହୁଏ ଯେ ଓଡ଼ିଆ କବିତାର ଭାରରେ କଂପ୍ୟୁଟର ବ୍ୟବସ୍ଥା କ୍ରାଶ୍ କରି ଅଚଳ ହୋଇଯିବ ।

ଜୁନ ୨୦୧୬ରେ ଭୁବନେଶ୍ୱରରେ ଏକ ଓଡ଼ିଆ ଫେସବୁକ ସାହିତ୍ୟ ଉତ୍ସବ ଅନୁଷ୍ଠିତ ହୋଇଯାଇଛି, ଯେଉଁଥିରେ ଏକ ଫେସ୍ ବୁକ୍ କବିତା ସଂକଳନ ପ୍ରକାଶିତ ହୋଇଥିଲା ଏବଂ ୭୨ଜଣ କବିଙ୍କୁ ସମ୍ମାନିତ କରା ହୋଇଥିଲା । ଏ ସଭାରେ କୁହାଯାଇଥିଲା, କାରିଗରୀ କୌଶଳ ସହିତ ସାହିତ୍ୟର ସନ୍ଧି ହେଉ ।

ବର୍ତ୍ତମାନ ସାଇବର ଦୁନିଆର ଇ-ସାହିତ୍ୟ ପାଇଁ କିଛି ନିଜସ୍ୱ ନୀତି ନିୟମ ମଧ୍ୟ ତିଆରି ହେଲାଣି । ଲେଖକମାନେ ଜାଣନ୍ତି ସାଇବର୍ କବି ହେବାକୁ ହେଲେ ପ୍ରଥମେ ଆବଶ୍ୟକ ନିଜ ଯୁବାବସ୍ଥାର କିଛି ସୁନ୍ଦର ଫଟୋ, ଯାହାକୁ ଫେସ୍‌ବୁକ ପୃଷ୍ଠାରେ ପ୍ରତି କିଛି ଦିନ ଅନ୍ତରରେ ବଦଳା ଯାଇପାରିବ । ତା' ପରେ କିଛି ବନ୍ଧୁ ତିଆରି କରିବାକୁ ହେବ, ଯେଉଁମାନେ କବିର ଲେଖାକୁ ଶତମୁଖରେ ପ୍ରଶଂସା କରିବା ପାଇଁ

ସଦା ସର୍ବଦା ପ୍ରସ୍ତୁତ ଓ ତତ୍ପର ଥିବେ । ବାକି ରହିଲା କବିତା କଥା । ଏଥିପାଇଁ ଶ୍ରମର ପ୍ରୟୋଜନ ନାହିଁ, ଦୁଇଟି ଶବ୍ଦର ତଥାକଥିତ କବିତା ହିଁ ଯଥେଷ୍ଟ, ଯଥା ମନନ ମନ୍ଥନ । ଏହି କବିତା ଲିପିବଦ୍ଧ ହେବା ସଙ୍ଗେ ସଙ୍ଗେ ଶହ ଶହ ଲାଇକ୍ ସହିତ ପ୍ରଶଂସକମାନଙ୍କ ମନ୍ତବ୍ୟ ମିଳେ : ଚମତ୍କାର ଚିନ୍ତନ, ଆଃ କି ମାର୍ମିକ, ଆପ୍ତ ବାକ୍ୟ, ଚିରନ୍ତନ ସତ୍ୟ, ନିଜ କଥା ?, ହଁ ଏକମତ, ବିନ୍ଦୁରେ ସିନ୍ଧୁ ଇତ୍ୟାଦି ଇତ୍ୟାଦି । ତା'ପରେ କବି ଗୋଟିଏ ଦୀର୍ଘ( ? ) କବିତା ପୋଷ୍ଟ କରନ୍ତି: ନକ୍ଷତ୍ର ଲୋକରୁ ବାହାର, ଉଜ୍ଜ୍ୱଳ ପ୍ରକାଶ ତାହାର । ଏହି କବିତାଟି ଯଦିଓ ଅର୍ଥହୀନ, ତା ପାଇଁ ଆହୁରି ଦୀର୍ଘ ଓ ରୋଚକ ମନ୍ତବ୍ୟମାନ ମିଳେ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏ ଭଳି ପ୍ରଶଂସକମାନଙ୍କ ଭିତରୁ କିଛି ହେଉଛନ୍ତି କବିଙ୍କର କା । କବି କେତାଟି ଭିନ୍ନ ଭିନ୍ନ ନାଁରେ ଅନ୍ୟ ଲୋକର ଫଟୋ, ମିଛ ପରିଚିତି ଯୋଡ଼ି ଏ ଭଳି ଲୋକକୁ ଗଢ଼ିଥାନ୍ତି । କବିଙ୍କର କବିତା ବାହାରିବା ମାତ୍ରେ ଏହି 'କା'ମାନେ କବିଙ୍କୁ ପ୍ରଶଂସାରେ ପୋତି ପକାନ୍ତି । ଫେସବୁକ୍‌ରେ ପୋଖତ ଲୋକ କିନ୍ତୁ ସହଜରେ କବିଙ୍କର ଏ ଛଳନାକୁ ଧରିପାରନ୍ତି ।

ଏହି ଇ-ଧାରା ବାହାରେ ସାହିତ୍ୟ ପଠନରେ ଆଉ ଗୋଟିଏ ନୂଆ ପ୍ରଥା ମଧ ଲକ୍ଷଣୀୟ । ବର୍ତ୍ତମାନ ବହି ପଢ଼ିବା ପାଇଁ ସମୟ ନଥିବାରୁ ଅନେକେ ବହିର ଅଡ଼ିଓ ସିଡ଼ି ଶୁଣିବାକୁ ପସନ୍ଦ କରୁଛନ୍ତି । ଗାଡ଼ି ଚଲାଇବା ବେଳେ ବହି ପଢ଼ି ହେବ ନାହିଁ, କିନ୍ତୁ ଶୁଣି ହେବ । ଫାରେନ୍‌ହାଇଟ ୪୫୧ ଉପନ୍ୟାସରେ( ୪୫୧ ହେଉଛି ଉତ୍ତାପ ଯେଉଁଥିରେ କାଗଜ ଜଳିଯିବ) ଲେଖକ ରେ ବ୍ରାଡବେରି କଳ୍ପନା କରିଛନ୍ତି ଯେ ଏକଛତ୍ରବାଦୀ ରାଷ୍ଟ୍ରରେ ଲୋକମାନଙ୍କୁ ପଢ଼ିବାକୁ ଦିଆଯାଉନାହିଁ ଓ ବହିକୁ ଜାଳି ଦିଆଯାଉଛି । ସେ ସମୟରେ କିଛି ବିଦ୍ରୋହୀ ବହିର ପାଠକୁ ଘୋଷି ମନେ ରଖି ସେ ଲେଖାକୁ ଜୀବିତ ରଖିବାକୁ ଚେଷ୍ଟା କରୁଛନ୍ତି । ଏଥିରୁ ମନେ ହୁଏ ଆମେ ଯେପରି ପୁଣି ସେହି ଶ୍ରୁତି ଓ ସ୍ମୃତିର ଯୁଗକୁ ଫେରିଯାଉଛୁ । ବର୍ତ୍ତମାନ ଭବନାଥର କାହାଣୀ ଲେଖିଲେ ମୁଁ ବୋଧହୁଏ ତାକୁ କଂପ୍ୟୁଟର ପର୍ଦା ଆଗରୁ ଉଠାଇ ଆଣି ପୁଣି ଅଡିଓ କ୍ୟାସେଟ ପାଖରେ ବସାଇ ଦେବି ।

ଓଡ଼ିଆ ଲେଖକମାନେ ନିଜ ଲେଖାର ପ୍ରସାର ପାଇଁ ଇ-ବ୍ୟବସ୍ଥାକୁ ବ୍ୟବହାର କରୁଛନ୍ତି ଏହା ନିଶ୍ଚୟ ଆନନ୍ଦର କଥା । ବୋଧହୁଏ ବେଶି ଲୋକ ଛପା ବହି

ଅପେକ୍ଷା ଏହି ଲେଖାକୁ ଦେଖୁଛନ୍ତି ଏବଂ, ଆଶା କରିବାର କଥା, ପଢୁଛନ୍ତି ମଧ୍ୟ । ତେବେ ହାତ ପାଖରେ ଲ୍ୟାପଟପ ବା ସ୍ମାର୍ଟ ଫୋନ୍ ଅଛି ବୋଲି ସମସ୍ତେ କବିତା ଲେଖିବେ ଏ ଭଳି କୌଣସି ବାଧ୍ୟବାଧକତା ନାହିଁ । ତେଣୁ କବିତା ଲେଖିବାର କାମଟିକୁ ପ୍ରକୃତ କବିଙ୍କ ହାତରେ ଛାଡ଼ି ଦିଆଯାଉ । ନ ହେଲେ ଏ ଭଳି ଅକବିତାର ଜଙ୍ଗଲ ଭିତରେ ସଚ୍ଚୋଟ କବିତା ମରି ହଜି ଯିବ । କାର୍ଟୁନ କୁକୁର କଥାରୁ ମୋର ମନେ ପଡ଼ିଲା ଯେ ସଂସ୍କୃତ କବି ବାଣଭଟ୍ଟ ତାଙ୍କର 'ହର୍ଷଚରିତ'ରେ ଏ ଭଳି ଲେଖିଛନ୍ତି : ନୀରସ କବି ଗୃହପାଳିତ କୁକୁର ଭଳି ଭୁକୁଥାନ୍ତି । ବିଦଗ୍ଧ କବି ଅଷ୍ଟପଦ ବିଶିଷ୍ଟ ଶରଭ ଭଳି ବିରଳ ।

ଯୁଗ ସହିତ ତାଳ ଦେଇ ଆମକୁ ଏହି ନୂଆ ମାଧ୍ୟମକୁ ବ୍ୟବହାର କରିବାକୁ ହେବ । ତେବେ ଏହାର ଅପବ୍ୟବହାର କରି ଇ-ସାହିତ୍ୟ ଅ-ସାହିତ୍ୟ ହୋଇ ନ ଯାଉ ।

*ଫେବ୍ରୁଆରି ୨୦୧୭*

# କାଦମ୍ବିନୀ ପତ୍ରିକା ସ୍ୱନକ୍ଷତ୍ର

ମୁଁ ପ୍ରଥମରୁ କହି ରଖେ ଯେ ମୁଁ ଯେଉଁ କେତୋଟି ଓଡ଼ିଆ ପତ୍ରିକା ନିୟମିତ ପଢ଼େ, ତା ଭିତରୁ କାଦମ୍ବିନୀ ଅନ୍ୟତମ । ବୋଧହୁଏ କାଦମ୍ବିନୀ ଅଳ୍ପ କିଛି ଓଡ଼ିଆ ପତ୍ରିକାରୁ ଗୋଟିଏ ଯାହା ନିୟମିତ ପ୍ରକାଶ ପାଏ । ବର୍ତ୍ତମାନ ଅଧିକାଂଶ ଓଡ଼ିଆ ପତ୍ରିକା ଅତି ଅନିୟମିତ ଭାବେ ପ୍ରକାଶ ପା'ନ୍ତି । ଏବଂ ବର୍ଷକରେ ଅଧିକାଂଶଙ୍କର ପ୍ରକାଶନ ପୂଜା ସମୟରେ ଗୋଟିଏ ସଂଖ୍ୟାରେ ସୀମିତ ଥାଏ । କାଦମ୍ବିନୀ ତାର ଏକ ସୁନ୍ଦର ବ୍ୟତିକ୍ରମ ।

ମୁଁ ଅନେକ ବର୍ଷ ହେଲା ଲେଖାଲେଖି ପ୍ରାୟ ଛାଡ଼ି ଦେଇଛି କହିଲେ ଚଳେ । କିନ୍ତୁ ଏଇ ସମୟ ଭିତରେ ମୁଁ ଯେଉଁ କେତୋଟି କବିତା ବା ଗଳ୍ପ ଲେଖିଛି, ସେ ସବୁକୁ ମୁଁ କେବଳ କାଦମ୍ବିନୀକୁ ହିଁ ପ୍ରକାଶ ପାଇଁ ଦେଇଛି ।

କାଦମ୍ବିନୀ ନିଜକୁ 'ପ୍ରିୟ ପାରିବାରିକ ବନ୍ଧନ' ବୋଲି କହନ୍ତି । ମୁଁ ବଙ୍ଗଳା ବା ହିନ୍ଦୀରେ ଏ ଭଳି ଯେତେ ପତ୍ରିକା ଦେଖିଛି, ମୋ ମତରେ କାଦମ୍ବିନୀର ମାନ ସେମାନଙ୍କ ଠାରୁ ଅନେକ ଉର୍ଦ୍ଧ୍ୱରେ । ସେଥିପାଇଁ ଏହାର ପ୍ରତିଷ୍ଠାତା ଅଚ୍ୟୁତ ସାମନ୍ତ, ସମ୍ପାଦିକା ଇତି ସାମନ୍ତ, ଉପଦେଷ୍ଟା ବିଭୂତି ପଟ୍ଟନାୟକ ଓ ପ୍ରକାଶକ କେଦାର ପୃଷ୍ଟି ଆମର ଧନ୍ୟବାଦର ପାତ୍ର । ମୁଁ ସମସ୍ତଙ୍କୁ ଅଭିନନ୍ଦନ ଜଣାଉଛି ଏବଂ ଆଶା କରୁଛି ଆପଣମାନେ ମୋ ସହିତ ମିଶି ସେମାନଙ୍କୁ ସମ୍ବର୍ଦ୍ଧନା କରିବେ ।

ଆମେ ଭାବୁ ଯେ ପତ୍ରିକା ଏକ ସାମୟିକ ଜିନିଷ ଯାହାକୁ ପଢ଼ିବା ପରେ ଫିଙ୍ଗି ଦିଆଯାଏ । ବର୍ତ୍ତମାନ କିନ୍ତୁ ଗବେଷକମାନେ ବୁଝୁଛନ୍ତି ଯେ ପତ୍ରିକାରେ ଅନେକ ଉପାଦେୟ ଲେଖା ବାହାରିଥାଏ, ଯାହା ପରେ ବହିରେ ସଂକଳିତ ହୋଇ ନଥାଏ । ସେଥିପାଇଁ କୌଣସି ବିଷୟରେ ଗବେଷଣା କରିବା ବେଳେ

ପତ୍ରପତ୍ରିକାର ପ୍ରକାଶିତ ଲେଖାର ମଧ୍ୟ ସାହାଯ୍ୟ ନେବାକୁ ପଡ଼ିଥାଏ । ଓଡ଼ିଶାର ଊନବିଂଶ ଶତାବ୍ଦୀ ବିଷୟରେ କିଛି ବି ଆଲୋଚନା କରିବା ବେଳେ ଉତ୍କଳ ଦୀପିକାର ପାଠ ଅପରିହାର୍ଯ୍ୟ । ସେହି ଦୃଷ୍ଟିରୁ ମଧ୍ୟ କାଦମ୍ବିନୀ ଭବିଷ୍ୟତ ପାଇଁ ସାଇତି ରଖିବା ଭଳି ପତ୍ରିକା । ଏଠାରେ ମୁଁ ଉଲ୍ଲେଖ କରିବାକୁ ଚାହିଁବି ସୃଜନିକା ସଂସ୍ଥା ଓ ପ୍ରଫେସର ନିଖିଳ ମୋହନ ପଟ୍ଟନାୟକଙ୍କୁ, ଯାହାଙ୍କର ଉଦ୍ୟମ ଫଳରେ ଉତ୍କଳ ଦୀପିକା ସମେତ ଅନେକ ପୁରୁଣା ଓଡ଼ିଆ ପତ୍ରିକା ବର୍ତ୍ତମାନ ଡିଜିଟାଲ୍ ରୂପରେ ଉପଲବ୍ଧ ।

ଓଡ଼ିଆର ପ୍ରଥମ ପତ୍ରିକା ଉତ୍କଳ ଦୀପିକାର ଜୀବନକାଳ ଥିଲା ସତୁରି ବର୍ଷ । ତା ପରେ ଅନେକ ଉଚ୍ଚମାନର ପତ୍ରିକା କିଛି ବର୍ଷ ପ୍ରକାଶ ପାଇ ବନ୍ଦ ହୋଇ ଯାଇଛନ୍ତି । ଏହି ତାଲିକାରେ ଅଛନ୍ତି, ଉତ୍କଳ ସାହିତ୍ୟ, ନବଭାରତ, ସହକାର ଏବଂ ପଚାଶ ଦଶକ ପରେ ପ୍ରକାଶ ପାଇଥିବା କୁଙ୍କୁମ, ଆସନ୍ତାକାଲି, ନବରବି, ସୁଚରିତା, ସମାବେଶ ଇତ୍ୟାଦି । ଏ ସବୁ ପତ୍ରିକା କିଛି ବର୍ଷର ପ୍ରକାଶନ ସମୟରେ ଅତ୍ୟନ୍ତ ଲୋକପ୍ରିୟ ଥିଲେ ଓ ସାହିତ୍ୟକୁ ସମୃଦ୍ଧ କରିବାରେ ସାହାଯ୍ୟ କରିଥିଲେ । ଉଦାହରଣ ସ୍ୱରୂପ ଡକ୍ଟର ମହତାବଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ଝଙ୍କାର । ଏକ ସମୟରେ ଝଙ୍କାରକୁ ସର୍ବଶ୍ରେଷ୍ଠ ପତ୍ରିକା ବୋଲି ମନେ କରାଯାଉଥିଲା, ଏବଂ ଏଥିରେ ପ୍ରକାଶିତ ହେଲେ ଲେଖକଙ୍କୁ ସାହିତ୍ୟିକ ହେବାର ସ୍ୱୀକୃତି ମିଳୁଥିଲା । ବର୍ତ୍ତମାନର ଝଙ୍କାର ତାର କଙ୍କାଳ ମାତ୍ର । ସେହିପରି ନବଭାରତର ନୂତନ ପ୍ରସ୍ଥ ବୋଲି କୁହାଯାଉଥିବା ଖବରକାଗଜ ପୃଷ୍ଠାର କିଛି ସ୍ତମ୍ଭ ନୀଳକଣ୍ଠ ଦାସଙ୍କ ପ୍ରତି ଓ ନବଭାରତ ପ୍ରତି ଅସମ୍ମାନ ଓ ଅପମାନ ।

ଆଜିକାଲି ବର୍ଷାଦିନରେ ଛତୁ ଫୁଟିବା ଭଳି ମାଳମାଳ ସାମୟିକ ପତ୍ରିକା ପ୍ରକାଶ ପାଉଛନ୍ତି । କୌଣସି ପତ୍ରିକାର କୌଣସି ସ୍ୱତନ୍ତ୍ର ନିଜସ୍ୱ ଆଭିମୁଖ୍ୟ ନାହିଁ । ପୂଜାସଂଖ୍ୟାମାନ ପଢ଼ିଲେ ଦେଖାଯିବ ଯେ ସବୁଥିରେ ଏକା ଲେଖକ, ଏକା ଭଳି ଲେଖା । କେବଳ ପତ୍ରିକାର ଆକାର, ବନ୍ଧାଇ ଓ ଶିରୋନାମା ଅଲଗା । କାହାରି କୌଣସି ନିର୍ଦ୍ଦିଷ୍ଟ ଚରିତ୍ର ନାହିଁ, କୌଣସି ସଂପାଦକୀୟ ଛାପ ନାହିଁ । ଅଧିକାଂଶ ସଂପାଦକ କେବଳ ମୁଦ୍ରାକର ମାତ୍ର ।

ଓଡ଼ିଆ ପତ୍ରିକାର ଏପରି ଅଳ୍ପ ଜୀବନକାଳ ହେଉଥିବା ବେଳେ କାଦମ୍ବିନୀର ପନ୍ଦର ବର୍ଷ କିଛି କମ ସମୟ ନୁହେଁ । ଆମର ନୀତିଶିକ୍ଷାରେ ପନ୍ଦର ବର୍ଷ

ପର୍ଯ୍ୟନ୍ତ ଗୋଟିଏ ପିଲାକୁ ତାଡ଼ନା କରାଯାଇପାରେ । ତା ପରେ ସେ ବୟସ୍କମାନଙ୍କ ସହ ସମାନ ଆସନ ପାଏ । ଏହି ବୟସ ଜଣକୁ ଯେତିକି ଅଧିକାର ଦିଏ, ସେତିକି ଦାୟିତ୍ୱ ମଧ୍ୟ । ଏହି ବୟସ ପରେ ଭୁଲ ଭ୍ରାନ୍ତି ପାଇଁ କୌଣସି ବାହାନା ସ୍ୱୀକୃତ ହୁଏ ନାହିଁ ଏବଂ କେହି ତାକୁ କ୍ଷମା କରନ୍ତି ନାହିଁ । ଏଥରକ ସବୁ ଭଲମନ୍ଦ ପାଇଁ ସେ ନିଜେ ହିଁ ଦାୟୀ । ସେଥିପାଇଁ ଜନ୍ମଦିନରେ ଭବିଷ୍ୟତକୁ ଆବାହନ କରିବା ସହିତ ଅତୀତ ଜୀବନର ମଧ୍ୟ ଆକଳନ କରାଯାଇଥାଏ । ଏହି ସମୟରେ ପତ୍ରିକାର ସଫଳତା ସହିତ ତାର ଦୋଷ ଦୁର୍ବଳତା ଓ ଅଭାବ ମଧ୍ୟ ମନେ ପକାଇବା ଉଚିତ ।

କାଦମ୍ବିନୀ ଗୋଟିଏ ପାରିବାରିକ ପତ୍ରିକା । ପାରିବାରିକ କହିଲେ ଅନେକେ ଭାବନ୍ତି ଯେ ଏହା ସ୍ତ୍ରୀମାନଙ୍କ ପାଇଁ ଉଦ୍ଦିଷ୍ଟ ପତ୍ରିକା । କିନ୍ତୁ ଏ ପତ୍ରିକା ଯେ ପୁରୁଷମାନଙ୍କ ଭିତରେ ବି ପ୍ରିୟ ତାର ପ୍ରମାଣ ଗତ ମାସରେ ପ୍ରକାଶିତ ପାଠକୀୟ ପତ୍ର । ଏହି ସ୍ତମ୍ଭରେ ପ୍ରକାଶିତ ଛ'ଟି ଯାକ ପତ୍ର ପୁରୁଷମାନଙ୍କ ପାଖରୁ ।

ପାରିବାରିକର ଅର୍ଥ ହେଉଛି ଏହାର ପରିବାରର ସମସ୍ତଙ୍କ ପାଇଁ । ଏ ପତ୍ରିକା ଘରକୁ ଆସିଲେ ସ୍କୁଲ କଲେଜରେ ପଢୁଥିବା ପୁଅଝିଅ ବି ପଢ଼ିବେ, ତାଙ୍କର ବାପା ମା ବି ପଢ଼ିବେ । ସେଥିପାଇଁ ଏଥିରେ ସମସ୍ତଙ୍କ ପାଇଁ ପଠନଯୋଗ୍ୟ ଲେଖା ରହିବା ଉଚିତ । ତାର ଅର୍ଥ ନୁହେଁ ଯେ ଯେଉଁ ଲେଖା ସ୍ତ୍ରୀଙ୍କ ପାଇଁ ବିଶେଷ ଭାବେ ଉଦ୍ଦିଷ୍ଟ ତାକୁ କେବଳ ସ୍ତ୍ରୀମାନେ ହିଁ ପଢ଼ିବେ । ରନ୍ଧାବଢ଼ା ପାଇଁ ପୁରୁଷମାନେ ବି ଆଗ୍ରହୀ; ପୃଥିବୀର ଅଧିକାଂଶ ଶେଫ ବା ମୁଖ୍ୟ ରାନ୍ଧୁଣିଆ ହେଉଛନ୍ତି ପୁରୁଷ । ଆମ ସମାଜରେ କିନ୍ତୁ କୁସଂସ୍କାର ବଶତଃ ରୋଷାଇ କରିବା ଏବଂ ପିଲାଛୁଆଙ୍କର ଯତ୍ନ ନେବାକୁ ସ୍ତ୍ରୀ ଲୋକଙ୍କର କାମ ବୋଲି ଧରାଯାଏ । ଏଠାରେ ଅନେକ ପୁରୁଷ ଲୋକ ରୋଷାଇ ଘରର ଦୁଆର ମାଡ଼ନ୍ତି ନାହିଁ । ଏ ମନୋଭାବ ବଦଳିବା ଉଚିତ । ମୁଁ ଆଶା କରୁଛି କାଦମ୍ବିନୀ ଆମର ପୁରୁଷମାନଙ୍କୁ ରୋଷାଇ ଘରର ବାଟ ଦେଖାଇ ଦେବ ।

ଠିକ୍ ସେହିପରି ଶିଶୁ ଓ କିଶୋରମାନଙ୍କ ପାଇଁ ଲେଖା । ବର୍ତ୍ତମାନ କାଦମ୍ବିନୀରେ ପିଲାଙ୍କ ପାଇଁ ବିଭାଗ ନାହିଁ, ବୋଧହୁଏ ଏହି ସଂସ୍ଥାରୁ ଏକ ସ୍ୱତନ୍ତ୍ର ପିଲାଙ୍କ ପତ୍ରିକା ପ୍ରକାଶ ପାଉଛି ବୋଲି । କିନ୍ତୁ ମନେ ରଖିବାର କଥା ଯେ ଶିଶୁ ଓ କିଶୋର ସାହିତ୍ୟ କେବଳ ସେଇମାନଙ୍କ ପାଇଁ ନୁହେଁ । ବୟସ୍କମାନେ ମଧ୍ୟ ତାକୁ

ଆଗ୍ରହର ସହିତ ପଢ଼ିଥାନ୍ତି । ପିଲାମାନଙ୍କ ପାଇଁ ଯେଉଁମାନେ ଲେଖୁଛନ୍ତି, ସେମାନେ ଏ ବିଷୟରେ ସଚେତନ ହେବା ଉଚିତ । ହାନ୍ସ କ୍ରିଷ୍ଟିଆନ୍ ଆଣ୍ଡରସନ୍ କହିଥିଲେ, ପିଲାମାନଙ୍କୁ ଗପ ଶୁଣାଇବା ବେଳେ ମନେ ରଖ ଯେ କବାଟ ପଛ ପାଖେ ଗୋଟିଏ ବୟସ୍କ ଲୋକ ମଧ ଠିଆ ହୋଇ ତମର କାହାଣୀ ଶୁଣୁଛି । Alice in Wonderland ଆଉ ପିଲାଙ୍କ ବହି ହୋଇ ନାହିଁ । କମ୍ପାନୀ ବୋର୍ଡ ରୁମ୍‌ରେ ଶେକ୍ସପିଅର୍‌ଙ୍କ ପରେ ଏହି ବହିରୁ ହିଁ ବେଶି ଉଦ୍ଧୃତି ବ୍ୟବହାର କରାଯାଇଥାଏ । ଦୁଃଖର ବିଷୟ ଯେ ଓଡ଼ିଆରେ ଶିଶୁ ସାହିତ୍ୟ ପ୍ରତି ପାଠକ ତଥା ଲେଖକମାନଙ୍କର ଏକ ନାକଟେକା ହେୟ ଦୃଷ୍ଟି ରହିଁଛି । ମୁଁ ନିଜେ ପିଲାଙ୍କ ପତ୍ରିକା ଆଗ୍ରହର ସହିତ ପଢ଼ିଥାଏ ଏବଂ ପ୍ରଥମେ ତାର ଧନ୍ଦା ପୃଷ୍ଠାକୁ ଯାଇ 'ଏହି ଦୁଇଟି ଚିତ୍ରରେ ଥିବା ସାତଟି ପ୍ରଭେଦକୁ ବାହାର କର' ଦେଖିଥାଏ । ମୁଁ ଗର୍ବର ସହିତ କହି ପାରେ ଯେ ମୁଁ ତା ଦେହରୁ ଅନ୍ତତଃ ପାଞ୍ଚଟି ପ୍ରଭେଦକୁ ସହଜରେ ବାହାର କରିଦେଇପାରେ ।

ପତ୍ରପତ୍ରିକାର ଏକ ବିଶେଷ ଅଙ୍ଗ ହେଲା ପୁସ୍ତକ ଆଲୋଚନା । ଦୁର୍ଭାଗ୍ୟବଶତଃ ବର୍ତ୍ତମାନ ଆମ ଦେଶର କୌଣସି ପତ୍ରପତ୍ରିକା ଏହାକୁ ଗୁରୁତ୍ୱ ଦେଉନାହାନ୍ତି । କୌଣସି ବହି ବିଷୟରେ ଦୀର୍ଘ ଆଲୋଚନା ଦେଖିବାକୁ ଦୁର୍ଲଭ ।

କିଛି ପତ୍ରିକାରେ ବହି ବିଷୟରେ ସାମାନ୍ୟ ଟିପ୍‌ପଣୀ ବା ନୋଟିସ ମାତ୍ର ବାହାରିଥାଏ । ଏ ସବୁ ଉପରଠାଉରିଆ ଭାବେ କରାଯାଇଥାଏ । ଆନନ୍ଦର ବିଷୟ ଯେ କାଦମ୍ବିନୀରେ ବହି ଉପରେ ଛୋଟ ଛୋଟ ଲେଖା ବାହାରିଥାଏ । ଏ ବର୍ଷ ମାର୍ଚ୍ଚ-ଏପ୍ରିଲ ଯୁଗ୍ମ ସଂଖ୍ୟାରେ ୧୪ଟି ବହିର ସଂକ୍ଷେପ ଆଲୋଚନା କରାଯାଇଥିଲା । କିନ୍ତୁ ଦୁଃଖର ବିଷୟ ଯେ ଚଉଦରୁ ଚଉଦଟି ବହି ବିଷୟରେ ମନ୍ତବ୍ୟ ଥିଲା ଯେ ବହିଟି ପାଠକାଦୃତ ହେବ, ବା ପାଠକୀୟତା ଲାଭ କରିବ କିମ୍ବା ପାଠକମାନଙ୍କୁ ବିମୋହିତ କରିବ । ସବୁ ବହି ବିଷୟରେ ଏକା ଭଳି ମତ ପାଠକର ମନକୁ ସନ୍ଦିଗ୍ଧ କରିବା ସ୍ୱାଭାବିକ ।

ପତ୍ରିକାର ଆଉ ଏକ ବଳିଷ୍ଠ ବିଭାଗ ହେଉଛି ପାଠକୀୟ ପ୍ରତିକ୍ରିୟା । କୌଣସି ଲେଖା ଉପରେ ପାଠକର ପ୍ରତିକ୍ରିୟା- ତା ସକାରାତ୍ମକ ହେଉ ବା ନକାରାତ୍ମକ - ଆଲୋଚ୍ୟ ବିଷୟଟିକୁ ଆହୁରି ଜୀବନ୍ତ କରିଥାଏ ଏବଂ ସେ ବିଷୟରେ ପାଠକମାନଙ୍କୁ ଅଧିକ ବିବରଣୀ ଯୋଗାଇଥାଏ । ଆମ ପତ୍ରପତ୍ରିକାରେ କିନ୍ତୁ

ପାଠକଙ୍କ ପତ୍ର କେବଳ ପତ୍ରିକାର, ସଂପାଦକଙ୍କର କିମ୍ବା କୌଣସି ଲେଖାର ପ୍ରଶଂସାର ସାର୍ଟିଫିକେଟ ହୋଇଥାଏ । ଏ ସବୁ ପତ୍ରକୁ କେହି ଗମ୍ଭୀରତାର ସହ ନିଅନ୍ତି ନାହିଁ ଏବଂ ଏହା ପାଠକମାନଙ୍କୁ ଆମୋଦିତ କରିବା ବ୍ୟତୀତ ଆଉ କୌଣସି ଅଧିକ ଜ୍ଞାନ ଦିଏ ନାହିଁ । ଏ ବିଷୟରେ ବଙ୍ଗଳା ପତ୍ରିକା 'ଦେଶ'ର ପତ୍ର ବିଭାଗ ଗୋଟିଏ ଆଦର୍ଶ । ଏଥିରେ ପାଠକମାନେ ଲେଖାର ଭୁଲଭ୍ରାନ୍ତି ଦର୍ଶାଇଥାନ୍ତି, ବା ସେ ବିଷୟରେ ଅଧିକ ତଥ୍ୟ ଦେଇ ମୂଳ ଲେଖାକୁ ଅଧିକ ସମୃଦ୍ଧ କରିଥାନ୍ତି । ଆମର ପତ୍ର ପତ୍ରିକାଙ୍କର ଏହା ଶିଖିବାର କଥା ।

ସମାଜରେ ସାହିତ୍ୟ ବାହାରେ ଏକ ବିଶାଳ ସାଂସ୍କୃତିକ ପୃଥିବୀ ଅଛି । ସାହିତ୍ୟ ତାର ଗୋଟିଏ ଛୋଟ ଅଂଶ ମାତ୍ର । ଏହି ପୃଥିବୀର ପାଠକ ଦର୍ଶକ ଉପଭୋକ୍ତା ଶ୍ରୋତା ପୁସ୍ତକ-ପାଠକଙ୍କ ଠାରୁ ଅନେକ ଅନେକ ବେଶି । ଆମର ଖାଦ୍ୟ, ଆମର ପର୍ବପର୍ବାଣି, ଆମର ସଂଗୀତ ନୃତ୍ୟ ନାଟକ ଯାତ୍ରା ସିନେମା, ଆମର କାରୁକଳା ବିଷୟରେ ଜାଣିବା ପାଇଁ ସମସ୍ତେ ଆଗ୍ରହୀ । ସୁଖର ବିଷୟ ଯେ ଏ ସବୁ ବିଷୟକୁ ପାଠକମାନଙ୍କ ପାଖରେ ପହଞ୍ଚାଇବାରେ କାଦମ୍ବିନୀ ଗୋଟିଏ ଅଗ୍ରଣୀ ପତ୍ରିକା ।

ଅନୁବାଦ ସାହିତ୍ୟ ମଧ୍ୟ ପତ୍ରିକାର ଏକ ବିଶେଷ ବିଭାଗ । ଆମର ପତ୍ରିକାମାନଙ୍କରେ ବିଭିନ୍ନ ଭାରତୀୟ ଭାଷା ତଥା ଇଂରେଜୀରୁ ଅନୁବାଦିତ ଲେଖାମାନ ପ୍ରକାଶ ପାଇଥାଏ । ଏହା ନିଶ୍ଚିତ ଭାବେ ଅଭିନନ୍ଦନୀୟ, କାରଣ ଏହା ଦ୍ୱାରା ଆମେ ଅନ୍ୟ ଭାଷାର କିଛି ଭଲ ସାହିତ୍ୟ ବିଷୟରେ ଜାଣିବାର ସୁଯୋଗ ପାଇଥାଉ । କିନ୍ତୁ ସମସ୍ୟା ହେଉଛି ଯେ ଏହି ଆଦାନପ୍ରଦାନରେ ଆମର ଆମଦାନୀ ବେଶି ଓ ରପ୍ତାନି ନାହିଁ କହିଲେ ଚଳେ । କାଦମ୍ବିନୀ ଏକ ସ୍ୱତନ୍ତ୍ର ବଙ୍ଗଳା ସାହିତ୍ୟ ସଂଖ୍ୟା ବାହାର କରିଥିଲେ । ବଙ୍ଗଳାର କୌଣସି ପତ୍ରିକା ଏ ଭଳି ଓଡ଼ିଆ ସ୍ୱତନ୍ତ୍ର ସଂଖ୍ୟା ବାହାର କରିବା କଥା ସ୍ୱପ୍ନରେ ମଧ୍ୟ ଭାବି ହେବ ନାହିଁ ।

ଦ୍ୱିତୀୟ କଥା ହେଲା, ଅନେକ ସମୟରେ ବିଭିନ୍ନ ଭାଷାର ଅନାମଧେୟ ଲେଖକଙ୍କର ନିମ୍ନମାନର ଲେଖାମାନ ମଧ୍ୟ ଅନୁବାଦିତ ହୋଇ ପ୍ରକାଶ ପାଉଛି । କେଉଁ ଲେଖାର ଅନୁବାଦ ପ୍ରକାଶ ପାଇବ ସେଥିପାଇଁ ମଧ୍ୟ କଠୋର ଶୃଙ୍ଖଳା ରହିବା ଉଚିତ ।

ମୁଁ ପତ୍ରିକାର ଯେତୋଟି ବିଭାଗ କଥା କହିଲି, ସେଥିରୁ ଗୋଟିଏ ସଂଖ୍ୟାରେ କାହାକୁ କେତେ ସ୍ଥାନ ଦିଆଯିବ, ତା ମଧ୍ୟ ଗୋଟିଏ ସମସ୍ୟା । ଅନେକ ବର୍ଷ ତଳେ ଝଂକାରର ଏକ ସଂଖ୍ୟାର ସଂପାଦକୀୟରେ ହରେକୃଷ୍ଣ ମହତାବ ଏ ବିଷୟରେ ଆଲୋଚନା କରିଥିଲେ ଏବଂ ସ୍ଥିର କରିଥିଲେ- ପୁରୁଣା ଓ ନୂଆ ସାହିତ୍ୟର ଆଲୋଚନା, ଐତିହାସିକ ଗବେଷଣା, ସୃଜନଶୀଳ ସାହିତ୍ୟ- ଏ ସବୁ କାହାକୁ କେତେ ସ୍ଥାନ ଦିଆଯିବ । ଏ ବିଷୟରେ ପ୍ରତ୍ୟେକ ପତ୍ରିକା ନିଜ ନିଜର ନୀତି ନିର୍ଦ୍ଧାରଣ କରିବା ଉଚିତ । ତା ହେଲେ ପ୍ରତ୍ୟେକ ପତ୍ରିକାର ଏକ ନିଜସ୍ୱ ଓ ସ୍ୱାତନ୍ତ୍ର୍ୟ ରହିବ ଏବଂ ତାହା ହିଁ ହେବ ସେ ପତ୍ରିକାର ପ୍ରୋଫାଇଲ ବା ଚାରିତ୍ରିକ ବିଶେଷତ୍ୱ ।

କାଦମ୍ବିନୀର ଗତ(ଜୁନ) ସଂଖ୍ୟାରେ ଜଣେ ପାଠକ ଲେଖିଛନ୍ତି, ଓଡ଼ିଆ ଜାତିର ସ୍ୱାଭିମାନ କହିଲେ କାଦମ୍ବିନୀକୁ ହିଁ ବୁଝାଇଥାଏ । ଓଡ଼ିଶାରେ ବର୍ତ୍ତମାନ ଓଡ଼ିଆ ଜାତିର ସ୍ୱାଭିମାନ ଓ ଅସ୍ମିତା କଥା ବାରମ୍ବାର ବିଭିନ୍ନ ସଭା ସମିତି ଆଲୋଚନାରେ ଉଠୁଛି । ଆହୁରି ଆଶ୍ଚର୍ଯ୍ୟର କଥା ଯେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ସ୍ୱୀକୃତି ମିଳିବା ପରେ ଏ ବିଷୟରେ ଅଧିକ ଓ ବିଶେଷ ଚର୍ଚ୍ଚା ହେଉଛି । ଓଡ଼ିଆ ଜାତି ଓ ଓଡ଼ିଆ ଭାଷା ଅତି ଗୌରବର ସହିତ ଅଛି ଏବଂ ରହିବ । ଶାସ୍ତ୍ରୀୟତାର ସାର୍ଟିଫିକେଟ ପାଇବା ପରେ କୌଣସି ପରିବର୍ତ୍ତନ ହେବ ନାହିଁ । ଆମେ ଯେତେବେଳେ ଇଂରେଜ ଓ ବଙ୍ଗାଳୀମାନଙ୍କର ଉପନିବେଶ ହୋଇ ରହିଥିଲୁ, ସେତେବେଳେ ଓଡ଼ିଆ ସ୍ୱାଭିମାନ କଥା ଉଠୁଥିଲା । ଆମକୁ ବର୍ତ୍ତମାନ ଏ ପ୍ରଶ୍ନ ଉଠାଇବାର କୌଣସି କାରଣ ନାହିଁ । ତେଲୁଗୁ, ତାମିଲ, କନ୍ନଡ଼ ବା ବଙ୍ଗଳା ଭାଷାଭାଷୀ କେହି ସେମାନଙ୍କର ସ୍ୱାଭିମାନର କଥା କହୁନାହାନ୍ତି । ଆମେ କାହିଁକି ସେ ବିଷୟ ଉଠାଇ ନିଜର ହୀନମନ୍ୟତାର ପ୍ରଚାର କରିବା ।

ସୁଖର କଥା ଯେ ଆମର ଯୁବ ସଂପ୍ରଦାୟ ଏ ଭଳି ଚିନ୍ତାର ଊର୍ଦ୍ଧ୍ୱରେ ଅଛନ୍ତି । ସେମାନେ ନିଜକୁ ସର୍ବଭାରତୀୟ କ୍ଷେତ୍ରରେ ଅନ୍ୟମାନଙ୍କର ସମକକ୍ଷ ବୋଲି ଭାବୁଛନ୍ତି । ନିଜକୁ ଗର୍ବର ସହିତ ଓଡ଼ିଆ ବୋଲି କହିବାରେ ସେମାନଙ୍କର ତିଳେ ମାତ୍ର ସଂକୋଚ ନାହିଁ । କେବେ କୁଆଡ଼େ ବାହାରର ଲୋକ 'ଓଡ଼ିଶା କେଉଁଠି' ବୋଲି ପ୍ରଶ୍ନ କରୁଥିଲେ । ବର୍ତ୍ତମାନ କୌଣସି ନିର୍ବୋଧ ଇଡିଅଟ ମଧ୍ୟ ଏ ଭଳି ପ୍ରଶ୍ନ କରିବ ନାହିଁ ।

ହୋଟେଲରେ ବର୍ତ୍ତମାନ ଓଡ଼ିଆ ଥାଳି ମିଳୁଛି । ଆଜିକାଲି ଲୋକମାନେ କେସି ଦାସ ରସଗୋଲା ବଦଳରେ ବିକଳି କର ଓ ପାହାଳ ରସଗୋଲା ଖାଉଛନ୍ତି । ଆମର ଖାଇବା ଦୋକାନର ନାଁ ଡାଲମା ବା ପଖାଳ ଦେବାରେ କୌଣସି ସଙ୍କୋଚ ନାହିଁ । ଛେନା ପୋଡ଼ପିଠାକୁ ଆଉ ଚିଜ୍ କେକ୍ କୁହାଯାଉ ନାହିଁ । ପ୍ରତି ବଲିଉଡ୍ ଫିଲ୍ମର କ୍ରେଡିଟରେ ମାଳମାଳ ଓଡ଼ିଆ ନାଁ । ଆମ ପିଲାମାନେ ରକ୍ ଷ୍ଟାର୍ ପ୍ରତିଯୋଗିତା ଜିତୁଛନ୍ତି । ଓଡ଼ିଆ ପଟଚିତ୍ର ଶୈଳୀକୁ ବାହାରେ ଅନୁକରଣ କରା ହେଉଛି । ସାରା ଦେଶର ବ୍ୟାଙ୍କ, ଆଇ.ଟି., ସଚିବାଳୟ ଅଫିସମାନଙ୍କର ଉଚ୍ଚପଦବୀରେ ଓଡ଼ିଆ ଭର୍ତ୍ତି । ଦିଲ୍ଲୀରେ ଓଡ଼ିଆ ଓକିଲ ଡାକ୍ତର ଚିତ୍ରକର ଶହ ଶହ ସଂଖ୍ୟାରେ । ଓଡ଼ିଆ ଗୁରୁ ଯାଇ ଆମେରିକାର ସଂସଦରେ ଭାଷଣ ଦେଉଛନ୍ତି । ବିଦେଶରେ ବଡ଼ ବଡ଼ ସହରରେ ଓଡ଼ିଶୀ ନାଚର ସ୍କୁଲ । ଆମକୁ ତେଣୁ ଆମର ଓଡ଼ିଆ ସ୍ୱାଭିମାନର ଡିଣ୍ଡିମ ବଜାଇବାର କୌଣସି ଆବଶ୍ୟକତା ନାହିଁ ।

*ଜୁଲାଇ ୨୦୧୫*

# ବିଷୁବ ମିଳନ ଓ ଝଂକାର

ବିଷୁବ ମିଳନ ବର୍ତ୍ତମାନ ଓଡ଼ିଶାର ଏକ ଜାତୀୟ ପର୍ବ ଭାବରେ ସ୍ୱୀକୃତ । ମୋ ଜାଣିବାରେ ବିଷୁବକୁ ପ୍ରଥମେ ଏ ମାନ୍ୟତା ଦେଇଥିଲେ ହରେକୃଷ୍ଣ ମହତାବ । ବାଳ ଗଙ୍ଗାଧର ତିଳକ ଯେପରି ଗଣେଶ ପୂଜାକୁ ମରାଠୀମାନଙ୍କ ପର୍ବ ଭଳି ପ୍ରଚଳନ କରାଇଥିଲେ, ସେହି ଭଳି ବିଷୁବକୁ ମହତାବ ହିଁ ଓଡ଼ିଆଙ୍କର ଏକ ମୁଖ୍ୟ ପର୍ବର ମର୍ଯ୍ୟାଦା ଦେଇଥିଲେ । ୧୯୫୦ର ପ୍ରଜାତନ୍ତ୍ର ପ୍ରଚାର ସମିତିର ବିଷୁବ ମିଳନ ପରେ ବର୍ତ୍ତମାନ ଓଡ଼ିଶାର ପୁରପଲ୍ଲୀରେ ବିଷୁବ ଉତ୍ସବ ପାଳନ କରାଯାଉଛି ।

ଆଜିକାଲି ସାହିତ୍ୟ ଆଳରେ ମାଳମାଳ ମେଳା, ସମାରୋହ, ଉତ୍ସବ ଓ ମହୋତ୍ସବମାନ ପାଳିତ ହେଉଛି । ଏ ସବୁରେ ଲେଖକଙ୍କଠାରୁ ବେଶୀ ଦେଖା ଯାଉଛନ୍ତି ଫିଲ୍ମଷ୍ଟାର, ସଂଗୀତଜ୍ଞ, ନର୍ତ୍ତକୀ ଓ ପେଜ୍-ଥ୍ରୀର ଚରିତ୍ରମାନେ । ବର୍ତ୍ତମାନ ପୁସ୍ତକ ଉନ୍ମୋଚନ ମଧ୍ୟ ଏ ଭଳି ମେଳାର ରୂପ ନେଲାଣି । ପାଶ୍ଚାତ୍ୟ ଦେଶରେ ବହିର ଲୋକାର୍ପଣ ହୋଇଥାଏ ବହି ଦୋକାନରେ; ସେଠାରେ ଶସ୍ତା ମଦ ଦିଆଯାଇଥାଏ, ଓ ସେଥିରେ ୨୦/୨୫ ଲୋକ ଥାନ୍ତି । ଆମ ଏଠାରେ ପୁସ୍ତକ ଉନ୍‌ମୋଚନ ପ୍ରାୟ ହେଉଛି ଫାଇଭ୍ ଷ୍ଟାର ହୋଟେଲ୍‌ରେ, ଶହ ଶହ ଲୋକଙ୍କ ଉପସ୍ଥିତିରେ ଏବଂ ଖାଇବା ପିଇବାର ପ୍ରାଚୁର୍ଯ୍ୟ ଭିତରେ । ସୁଖର ବିଷୟ ପ୍ରଜାତନ୍ତ୍ରର ଏହି ଅନୁଷ୍ଠାନକୁ ଏ ପର୍ଯ୍ୟନ୍ତ ମିଳନ ବୋଲି କୁହାଯାଉଛି ।୧୯୫୦ରେ ଏହା ଆରମ୍ଭ ହେବା ବେଳେ ଡକ୍ଟର ମହତାବ ଏଠାକୁ ତାଙ୍କର ବିଶାଳ ସାହିତ୍ୟିକ ପରିବାରକୁ ନିମନ୍ତ୍ରିତ କରିଥିଲେ । ମୁଁ ଆଶା କରୁଛି ମହତାବ ଆରମ୍ଭ କରିଥିବା ବଂଧୁମିଳନ ମେଳାରେ ପରିଣତ ହେବ ନାହିଁ ଏବଂ ଏହା ଲେଖକ ଓ ପାଠକଙ୍କର ସାହିତ୍ୟିକ ପରିବାର ଭିତରେ ସୀମିତ ରହିବ ।

ଆଉ ଗୋଟିଏ ଲକ୍ଷ୍ୟ କରିବାର କଥା ଯେ ବିଷୁବର ସମୟ ହେଉଛି ମାର୍ଚ୍ଚ ୧୧

ତାରିଖରେ ଓଡ଼ିଆ ଶାସ୍ତ୍ରୀୟ ମାନ୍ୟତା ପାଇବା ଦିବସ ଓ ଏପ୍ରିଲ ପହିଲା ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ତାରିଖର ଠିକ୍ ପରେ ପରେ । ଏ ବର୍ଷର ପହିଲା ଏପ୍ରିଲରେ ଓଡ଼ିଶାକୁ ୮୦ ବର୍ଷ ପୂରିଲା ଏବଂ ସରକାର ଓଡ଼ିଶା-୧୦୦ ପାଇଁ ପ୍ରସ୍ତୁତ ହେଉଛନ୍ତି । ଗତ ମାର୍ଚ୍ଚ ୧୧ ତାରିଖରେ ଓଡ଼ିଆ ଶାସ୍ତ୍ରୀୟ ମାନ୍ୟତା ଦିବସରେ ଆମର ଓଡ଼ିଆ ଭାଷା ପ୍ରତିଷ୍ଠାନ ଏ ଭଳି ବିଜ୍ଞାପନ ଦେଇଛନ୍ତି : "ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବାର ଦୁଇ ବର୍ଷ ପୂରାଣି ଅବସରରେ ଉତ୍କଳୀୟ ସଂସ୍କୃତି, ସାହିତ୍ୟ, ଭାଷାର ସମୃଦ୍ଧି ସାଧନା କରବା ସଙ୍ଗେ ସଙ୍ଗେ ମାତୃଭାଷାର ମହିମାକୁ ଋଦ୍ଧିମନ୍ତ କରିବାରେ ଆମ୍ଭେମାନେ ଯତ୍‌ପରୋନାସ୍ତି ଉଦ୍ୟମ କରିବା, ଏହାହିଁ ଆମର ଶପଥ ହେଉ ।" ଏ ଭିତରେ ଭାଷା ଅନୁଷ୍ଠାନର ମଧ ଦଶବର୍ଷ 'ପୂରାଣି' ହୋଇଯାଇଛି । ସେମାନେ ଯଦି ବିଜ୍ଞାପନଟିକୁ ଆଉ ଟିକିଏ ସହଜ ଓଡ଼ିଆରେ ଦେଇଥାନ୍ତେ ସାଧାରଣ ଲୋକ ବୁଝିପାରିଥାନ୍ତେ, ଏବଂ ସେମାନେ ଏ ପର୍ଯ୍ୟନ୍ତ ମାତୃଭାଷାକୁ ଋଦ୍ଧିମନ୍ତ କରିବା ପାଇଁ କ'ଣ କ'ଣ କରିଛନ୍ତି ସେ ବିଷୟରେ ଜଣାଇଥିଲେ ଲୋକେ ଉପକୃତ ହୋଇଥାନ୍ତେ ।

କିଛି ବର୍ଷ ହେଲା ନିଶ୍ଚିତ ଭାବରେ ଓଡ଼ିଆ ଭାଷା ପ୍ରତି ଜନସାଧାରଣଙ୍କର ସଚେତନତା ବୃଦ୍ଧି ପାଇଛି । ରାଜନୈତିକ ନେତା, ସାହିତ୍ୟିକ, ସାମ୍ବାଦିକ ଓ ସାଧାରଣ ଲୋକ ସମସ୍ତେ ଏ ବିଷୟରେ ମତ ରଖୁଛନ୍ତି ଓ ଦାବୀ ଜଣାଉଛନ୍ତି । ଏହା ନିଶ୍ଚୟ ଭଲ କଥା । ତେବେ ଏଥିରୁ ଅଧିକାଂଶ ଉଦ୍ୟମ ପ୍ରତୀକାତ୍ମକ ମାତ୍ର; ଯେପରିକି ଦାବୀ କରାଯାଉଛି, ଦୋକାନ ଓ ଅଫିସ୍‌ର ସାଇନବୋର୍ଡ ଓଡ଼ିଆରେ ଲେଖା ଯାଉ । ଏହା ନିଶ୍ଚୟ ଏକ ନ୍ୟାଯ୍ୟ ଦାବୀ, କିନ୍ତୁ ଏଥିପାଇଁ ଯାଇ ସାଇନବୋର୍ଡରେ କଳା ବୋଳିବା ସମୟ ଓ ଉଦ୍ୟମର ସଦୁପଯୋଗ ନୁହେଁ । ଭୁବନେଶ୍ୱରର ମଲ୍, ଗହଣା ଦୋକାନ ବା ଫାଇଭ ଷ୍ଟାର ହୋଟେଲର ସାଇନବୋର୍ଡ ଇଂରେଜୀରେ ବା ଅଲ୍‌ଚିକ ବା ଆରବିକ ଅକ୍ଷରରେ ଲେଖାଯିବ, ସେଥିରେ ଜନସାଧାରଣଙ୍କର କୌଣସି ଲାଭକ୍ଷତି ନାହିଁ । ଆମର ସମସ୍ୟା ହେଉଛି ଯେତେବେଳେ ସରକାରୀ କାମ ଓଡ଼ିଆରେ ନ ହେଉଥିବା ଯୋଗୁ ସାଧାରଣ ଲୋକ ଅସୁବିଧାରେ ପଡୁଛନ୍ତି ।

ଓଡ଼ିଆ ଭାଷାର ବିଭିନ୍ନ ପ୍ରକାରର ବ୍ୟବହାର ଅଛି : ସରକାରୀ ଓ ବ୍ୟବସାୟ କାମରେ, ଶିକ୍ଷାରେ, ସାହିତ୍ୟରେ ଏବଂ ଖବରକାଗଜ, ମିଡିଆ ଓ ସାମାଜିକ

ବ୍ୟବହାରରେ । ତେଣୁ ଭାଷାର ଆଲୋଚନା କଲାବେଳେ ଆମକୁ ପ୍ରତ୍ୟେକଟିର ସମସ୍ୟାକୁ ଅଲଗା ଭାବରେ ଦେଖିବାକୁ ହେବ । ସାହିତ୍ୟ ହେଉଛି ଭାଷାର ଗୋଟିଏ ମହତ୍ତ୍ୱପୂର୍ଣ୍ଣ କିନ୍ତୁ ଅତି ଛୋଟ ଅଂଶ । ଆମର ଭାଷାକୁ ଆମେ ଅଢ଼େଇ ହଜାର ବର୍ଷ ପୁରୁଣା ବୋଲି କହୁଛୁ, କିନ୍ତୁ ଆମର ସାହିତ୍ୟର ବୟସ ମାତ୍ର ପାଞ୍ଚ ଶହ ବର୍ଷ । ସାହିତ୍ୟରେ କ'ଣ ହେଉଛି ନ ହେଉଛି ସେଥି ସହିତ ସାଧାରଣ ଲୋକଙ୍କର କୌଣସି ସଂପର୍କ ନାହିଁ । ସେମାନଙ୍କର ସମସ୍ୟା ହେଲା ସେମାନଙ୍କର ଦରକାରୀ କାମ ଓଡ଼ିଆରେ ହେଉ ନ ଥିବା । ସରକାରୀ ଚିଠିପତ୍ର, ଜମିବାଡ଼ିର କାଗଜ, ପୋଲିସ ଓ ଆଇନକାନୁନ୍‌ର କାମ ଇଂରେଜୀରେ ହେଉଥିବାରୁ ସାଧାରଣ ଲୋକ ଅସୁବିଧାରେ ପଡୁଛନ୍ତି ଓ ଇଂରେଜୀ ଜାଣିଥିବା ଦଲାଲଙ୍କ ପାଖକୁ ଯିବାକୁ ବାଧ ହୋଇ ହଇରାଣ ଓ ଖର୍ଚ୍ଚାନ୍ତ ହେଉଛନ୍ତି ।

ଆମର ସରକାରୀ ଭାଷା ଆଇନ ତିଆରି ହୋଇଥିଲା ୧୯୫୪ରେ । ୧୯୮୩ରେ ଏହି ବିଷୁବମିଳନ ମଣ୍ଡପରୁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଓଡ଼ିଆକୁ ସରାକାରୀ ଭାଷା କରିବାର ଘୋଷଣା କରିଥିଲେ । ବାଷଠି ବର୍ଷ ପରେ ଏବେ କୁହାଯାଉଛି ଯେ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଓଡ଼ିଆ ଜାଣି ନଥିବାରୁ ଏହି ନିୟମଟି କାର୍ଯ୍ୟକାରୀ କରାଯାଇ ପାରୁନାହିଁ । ଆମେ ଭୁଲିଯାଉଛୁ ଯେ ଏହି କାନୁନ ତିଆରି ହେବା ପରେ ଓ ଓଡ଼ିଆ-ଅଜ୍ଞ ମୁଖ୍ୟମନ୍ତ୍ରୀ ଶାସନକୁ ଆସିବା ଆଗରୁ ଓଡ଼ିଆ ଜାଣିଥିବା ଦଶଜଣ ମୁଖ୍ୟମନ୍ତ୍ରୀ ଥିଲେ । ସେମାନେ ଏତେ ବର୍ଷ ଧରି କ'ଣ କରୁଥିଲେ ସେ ବିଷୟରେ କେହି ପ୍ରଶ୍ନ କରୁନାହାନ୍ତି ।

ଓଡ଼ିଆ ଭାଷା ବିଷୟରେ କହିବା ବେଳେ ଆମର ମୂଳ ଲକ୍ଷ୍ୟ ହେବା ଉଚିତ ୧୯୫୪ର ଆଇନକୁ ତୁରନ୍ତ କାର୍ଯ୍ୟକାରୀ କରିବା । ଧର୍ମଘଟ, ବନ୍ଦ, ସଭାସମିତି, ଅନଶନ, ସଂସଦରେ ଆଲୋଚନା ଏ ସବୁ କିଛି ବି ଏ ପର୍ଯ୍ୟନ୍ତ ଫଳପ୍ରଦ ହୋଇ ନାହିଁ ଓ ଶାସନର ନିଦ ଭାଙ୍ଗି ପାରିନାହିଁ । ଏଥିପାଇଁ ଆଉ କଣ କରାଯାଇପାରିବ ତା ମୋର କଳ୍ପନାରେ ବାହାରେ । ସରକାର ବୋଧହୁଏ ଭାବୁଛନ୍ତି ଯେ ସରକାରୀ କାମରେ ଓଡ଼ିଆ ବ୍ୟବହାର ଦ୍ୱାରା ଶାସନ କଳ ଅଚଳ ହୋଇଯିବ । ଏ ଧାରଣା ଯେ ଅମୂଳକ ସେ ବିଷୟରେ ଓଡ଼ିଆ ଭାଷା ପ୍ରତିଷ୍ଠାନ ସରକାରଙ୍କୁ ଉଚିତ ପରାମର୍ଶ ଦେଇପାରନ୍ତି ।

ଓଡ଼ିଆ ଶିକ୍ଷା ବିଷୟରେ ମୁଁ ଅନ୍ୟତ୍ର କହିଛି ଯେ ଆମର ପ୍ରାଥମିକ ଶିକ୍ଷା କେବଳ

ଓଡ଼ିଆ ଭାଷାରେ ଦିଆଯାଉ ଏବଂ ତା'ପରେ ସ୍କୁଲ ଶେଷ ପର୍ଯ୍ୟନ୍ତ ଓଡ଼ିଆ ଗୋଟିଏ ବାଧ୍ୟତାମୂଳକ ବିଷୟ ହେଉ । କର୍ଣ୍ଣାଟକ ସରକାର ଏ ଭିତରେ ଆଇନ କରି ତାଙ୍କ ପ୍ରଦେଶରେ ଏ ବ୍ୟବସ୍ଥା କରିଛନ୍ତି । ଓଡ଼ିଶାରେ ଏ ଭଳି ନିୟମ ହେଲେ ଆମ ପିଲାମାନେ ବାଧ୍ୟ ହୋଇ ଓଡ଼ିଆ ଶିଖିବେ ଏବଂ ଓଡ଼ିଆ ଭାଷା ପ୍ରତି ସେମାନଙ୍କର ସମ୍ମାନ ରହିବ । ଏଥି ସହିତ ସେମାନେ ଇଂରେଜୀ ମଧ୍ୟ ପଢ଼ିବାରେ କୌଣସି ସମସ୍ୟା ଉପୁଜିବ ନାହିଁ ।

ବାକି ରହିଲା ଓଡ଼ିଆ ସାହିତ୍ୟ କଥା । ଆଦର୍ଶ ଦୃଷ୍ଟିରୁ କଳା ଓ ସାହିତ୍ୟ ଗ୍ରାହକ ଓ ପାଠକମାନଙ୍କ ଉପରେ ନିର୍ଭରଶୀଳ ହେବା ଉଚିତ, ସରକାରୀ ଓ ଆନୁଷ୍ଠାନିକ ସାହାଯ୍ୟ ଉପରେ ନୁହେଁ । ତେବେ ସମାଜରେ ପରିବର୍ତ୍ତନ ଆସିବା ସଙ୍ଗେ ସଙ୍ଗେ କେତେକ  କଳା, ଯଥା ହାତକାମ, ଥିଏଟର ଇତ୍ୟାଦିକୁ ପୃଷ୍ଠପୋଷକ ଆବଶ୍ୟକ ହେଲେ । ଆଉ କିଛି କଳା ନିଜକୁ ରି-ଇନ୍‌ଭେଣ୍ଟ ବା ନବୀକରଣ କରି ନିଜ ପାଦରେ ଛିଡ଼ା ହୋଇପାରିଲେ, ଯଥା ଆମର ଯାତ୍ରା । ଓଡ଼ିଆ ସାହିତ୍ୟ ଅତି ପ୍ରାଚୀନ ସମୟରୁ ନିଜ ବଳରେ ସମ୍ମାନଜନକ ଭାବରେ ତିଷ୍ଠି ରହିଛି । ପୃଷ୍ଠପୋଷକଙ୍କଠାରୁ ବେଶି ପାଠକମାନେ ହିଁ ସାହିତ୍ୟକୁ ବଞ୍ଚାଇ ରଖିଛନ୍ତି । ସରକାରଙ୍କ ପକ୍ଷରୁ ଯେତିକି ସାହାଯ୍ୟ ମିଳୁଛି, ବା ଅନ୍ୟ ଭାବରେ କହିଲେ ହସ୍ତକ୍ଷେପ କରାଯାଉଛି- ଯଥା, ଏକାଡେମି, ପୁରସ୍କାର ଯୋଜନା, ବହି କିଣା- ସେ ସବୁ ସାହିତ୍ୟକୁ ପ୍ରୋତ୍ସାହନ ଦେବା ବଦଳରେ ଅନେକ ଭାବରେ ସମସ୍ୟା ଉପୁଜାଉଛନ୍ତି ଓ ସାହିତ୍ୟର କ୍ଷତି କରୁଛନ୍ତି ।

ସାହିତ୍ୟକୁ ପ୍ରୋତ୍ସାହନ ଦେବା ବିଷୟରେ ପ୍ରଜାତନ୍ତ୍ର ପ୍ରଚାର ସମିତିର ଭୂମିକା ସବୁବେଳେ ଅଗ୍ରଣୀ ରହିଆସିଛି । ପ୍ରଜାତନ୍ତ୍ରର ସାହିତ୍ୟ ପୃଷ୍ଠା ଓ ୧୯୪୯ରେ ଝଙ୍କାରର ପ୍ରକାଶ ଓଡ଼ିଆ ସାହିତ୍ୟରେ ଗୋଟିଏ ଗୋଟିଏ ମାଇଲ୍ ଖୁଣ୍ଟ । ଅନେକ ବର୍ଷ ପର୍ଯ୍ୟନ୍ତ ସାହିତ୍ୟିକ ଓ ପାଠକ ଏହାକୁ ଉତ୍କୃଷ୍ଟ ଓଡ଼ିଆ ସାହିତ୍ୟର ମାନଦଣ୍ଡ ବୋଲି ଗ୍ରହଣ କରୁଥିଲେ । ଝଙ୍କାରରେ ପ୍ରକାଶିତ ହେଲେ ଲେଖକକୁ ଭଲ ଲେଖକ ହୋଇଥିବାର ଓ କୂଳରେ ପହଞ୍ଚି ଯାଇଥିବାର ମାନ୍ୟତା ମିଳୁଥିଲା । ଝଙ୍କାରରେ ଲେଖା ପ୍ରକାଶିତ ହେବାମାତ୍ରେ ସେଇଟି ଆଲୋଚନାର ବିଷୟ ହୋଇଯାଉଥିଲା ଏବଂ ପାଠକମାନେ ନୂଆ ସଂଖ୍ୟା ଝଙ୍କାରର ପ୍ରକାଶ ଦିନକୁ ଅପେକ୍ଷା କରି ରହୁଥିଲେ ।

ବର୍ତ୍ତମାନ କିନ୍ତୁ ସେ ଅବସ୍ଥା ନାହିଁ । ତା'ର କାରଣ ନୁହେଁ ଯେ ଓଡ଼ିଆରେ

ମାଳମାଳ ପତ୍ରିକା ପ୍ରକାଶ ପାଉଛି । ଅବଶ୍ୟ ଏଥିରୁ ନିୟମିତ ପ୍ରକାଶ ପାଉଥିବା ପତ୍ରିକା ସଂଖ୍ୟା ନଗଣ୍ୟ । ଏହି ପତ୍ରିକାମାନଙ୍କର ନିଜର କୌଣସି ଆଭିମୁଖ୍ୟ ନାହିଁ । ପ୍ରତିଟି ପତ୍ରିକା ଅନ୍ୟଟି ଭଳି । ପ୍ରତ୍ୟେକରେ ସମାନ ଲେଖକ, ସମାନ ପ୍ରକାର ଲେଖା, କେବଳ ପତ୍ରିକା ନାଁ ଓ ସାଜସଜ୍ଜା ଅଲଗା ।

ଝଂକାର କିନ୍ତୁ ଏ ସବୁ ଦୃଷ୍ଟିରୁ ଗୋଟିଏ ସ୍ୱତନ୍ତ୍ର ପତ୍ରିକା ଥିଲା । ଏହାର ସଂପାଦକ ଡକ୍ଟର ମହତାବ ପତ୍ରିକାର ନୀତି ନିର୍ଦ୍ଧାରଣ କରିଥିଲେ ଏବଂ ଝଂକାର ଏହି ନୀତିକୁ ମାନି ଚଳୁଥିଲା । ଅନେକ ବର୍ଷ ପରେ, ୧୯୮୬ରେ, ପାଠକମାନଙ୍କର ମତ ସଂଗ୍ରହ କରି ଡକ୍ଟର ମହତାବ ଦଶଟି ସିଦ୍ଧାନ୍ତ ନିଆଯାଇଛି ବୋଲି ଜଣାଇଥିଲେ, ଯାହା ସେ ବର୍ଷର ଝଙ୍କାର ପୂଜା ସଂଖ୍ୟା ସଂପାଦକୀୟରେ ପ୍ରକାଶିତ ହୋଇଥିଲା । ଏହି ନୀତିମାନ ହେଲା :

୧. ସ୍ୱାଧୀନତା ପରବର୍ତ୍ତୀ ସାହିତ୍ୟର ସମୀକ୍ଷାକୁ ଅଗ୍ରାଧିକାର
୨. ଆଧୁନିକ ଯୁଗର ବିଭିନ୍ନ ବିଷୟରେ ଗବେଷଣାମୂଳକ ପ୍ରବନ୍ଧ ପ୍ରକାଶନ
୩. ଆଧୁନିକ ସମସ୍ୟାମାନଙ୍କ ଉପରେ ପର୍ଯ୍ୟବସିତ ଗଳ୍ପକୁ ଅଗ୍ରାଧିକାର ପ୍ରଧାନ
୪. ଅର୍ଥନୈତିକ, ବୈଜ୍ଞାନିକ ଓ ରାଜନୈତିକ ପ୍ରବନ୍ଧ ପ୍ରକାଶନ
୫. କବିମାନଙ୍କ ପାଇଁ ସଂପୂର୍ଣ୍ଣ ସ୍ୱାଧୀନତା ଏବଂ କବିତା ସମୀକ୍ଷା
୬. ପ୍ରାଚୀନ ସାହିତ୍ୟ ସମ୍ବନ୍ଧରେ ବା ଐତିହାସିକ ଗବେଷଣା ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ
୭. ପ୍ରବନ୍ଧ ସଂଖ୍ୟା ସୀମିତ
୮. ଗଳ୍ପ ସଂଖ୍ୟା ସର୍ବାଧିକ
୯. କବିତା ସଂଖ୍ୟା ଉପଯୋଗିତା ଅନୁଯାୟୀ
୧୦. ଅନୁବାଦ ସାହିତ୍ୟ ଓ ଅନ୍ୟ ସାହିତ୍ୟର ତୁଳନାତ୍ମକ ବିଚାର

ଏ ସଂପାଦକୀୟ ପ୍ରକାଶ ପରେ କେତେକ ଲେଖକ ଏହି ନୀତିମାନଙ୍କ ବିଷୟରେ ପ୍ରତିକୂଳ ମନ୍ତବ୍ୟ ଦେଇଥିଲେ । ଡକ୍ଟର ଗଗନେନ୍ଦ୍ରନାଥ ଦାଶ ଏକ ଦୀର୍ଘ ପତ୍ର ଲେଖି ଯେଉଁ ଛ'ଟି ଆପତ୍ତି ଉଠାଇଥିଲେ, ଡକ୍ଟର ମହତାବ ଝଂକାର ସଂପାଦକୀୟରେ ତାର ଏକ ଦୀର୍ଘ ଉତ୍ତର ଦେଇଥିଲେ ତିନିପୃଷ୍ଠାରେ । ଏଥିରେ ସେ ଝଂକାରର ଆଭିମୁଖ୍ୟକୁ ଆହୁରି ସ୍ପଷ୍ଟ କରି ଦେଇଥିଲେ ନିମ୍ନ ଭାବରେ :

୧. ପରାଧୀନତା ସମୟରେ ନୂତନ ଚେତନା ଜାଗ୍ରତ ହୋଇଛି ଏବଂ ଏଥି

ସଙ୍ଗେ ସଙ୍ଗେ ସାହିତ୍ୟର କ୍ରମବିକାଶ ମଧ୍ୟ ସାଧିତ ହେଉଛି । ତେଣୁ ସ୍ୱାଧୀନତା ପରବର୍ତ୍ତୀ ସାହିତ୍ୟର ସମୀକ୍ଷା ଆବଶ୍ୟକ ।

୨. ପ୍ରାଚୀନ ସାହିତ୍ୟର ଯଥାଯଥ ସମୀକ୍ଷା ହେଉ । ସାହିତ୍ୟ କାଳ ନିରୂପଣ ଗବେଷଣାର ଏକମାତ୍ର ବିଷୟବସ୍ତୁ ନହେଉ ।

୩. ରାଜନୀତି ବିଜ୍ଞାନ, ଅର୍ଥନୀତି ଓ ବୈଜ୍ଞାନିକ କ୍ଷେତ୍ରର ସାହିତ୍ୟିକ ଦିଗ ରହିଛି । ସେ ଦିଗଟିକୁ ସମୃଦ୍ଧ କଲେ ସାହିତ୍ୟ ଓ ସମାଜ ମଧ୍ୟ ସମୃଦ୍ଧ ହେବ ।

୪. ସାହିତ୍ୟିକ ମହଲରେ କବିମାନଙ୍କର ପ୍ରାଦୁର୍ଭାବ ବଢ଼ିଛି, ଏ ଧାରଣା ଭୁଲ । ଉଦ୍‌ବେଗ ପରିପୂର୍ଣ୍ଣ ଜୀବନରେ କବିତା ଏକ ସ୍ୱତଃସ୍ଫୂର୍ତ୍ତ, କମନୀୟ ଓ ଶାନ୍ତିପୂର୍ଣ୍ଣ ଆଶ୍ୱାସନା- ଏ କଥା ଭୁଲିଯିବା ଉଚିତ ନୁହେଁ ।

୫. ଉଚ୍ଚମାନର ଉପନ୍ୟାସ ଓ ସମୀକ୍ଷା କ୍ଷେତ୍ରରେ ଦେଖା ଦେଇଥିବା ଶୂନ୍ୟତାର ପୂରଣ ପାଇଁ ଝଙ୍କାର ଯଥାସାଧ୍ୟ ଉଦ୍ୟମ କରୁଛି ଓ କରିବ ।

ଇତ୍ୟାଦି ।

ଏ ସଂପାଦକୀୟ ଡକ୍ଟର ମହତାବ ଲେଖିଥିଲେ ୧୯୮୬ ଡିସେମ୍ବର ସଂଖ୍ୟା ଝଙ୍କାରରେ । ଦୁଃଖର କଥା ଯେ ଏହା ଲେଖିବାର ମାତ୍ର ମାସକ ଭିତରେ ସେ ଦେହତ୍ୟାଗ କଲେ, ଏବଂ ସେ ଯେଉଁ ସବୁ ନୀତି ନିର୍ଦ୍ଧାରଣ କରିଥିଲେ ତାକୁ ନିଜେ ପ୍ରୟୋଗ କରିବାର ସୁଯୋଗ ପାଇଲେ ନାହିଁ ।

ଏ ଭିତରେ ତିରିଶ ବର୍ଷ ବିତିଗଲାଣି ଏବଂ ସମାଜ ଓ ସାହିତ୍ୟ କ୍ଷେତ୍ରରେ ଅନେକ ପରିବର୍ତ୍ତନ ଆସିଛି । ଯେଉଁ ପରିସ୍ଥିତିରେ ଡକ୍ଟର ମହତାବ ଝଙ୍କାର ପାଇଁ ଏ ଭଳି ସଂପାଦକୀୟ ନିୟମ ପ୍ରଣୟନ କରିଥିଲେ, ସେ ସ୍ଥିତି ଆଉ ନାହିଁ । ବର୍ତ୍ତମାନ ବୋଧହୁଏ ସେହି ନୀତିନିୟମକୁ ସମୀକ୍ଷା କରିବାର ଆବଶ୍ୟକତା ଆସିଛି । ଡକ୍ଟର ମହତାବ ଲେଖିଥିଲେ, ସବୁ ଶ୍ରେଣୀର ପାଠକଙ୍କର ମତ ସଂଗ୍ରହ କରି ସିଦ୍ଧାନ୍ତ ଗ୍ରହଣ କରାଯାଇଛି; ସାହିତ୍ୟ କେବଳ ଲେଖକମାନଙ୍କ ପାଇଁ ନୁହେଁ, ପାଠକମାନଙ୍କର ମଧ୍ୟ ଏଥିରେ ଅଧିକାର ଅଛି । ବର୍ତ୍ତମାନ ସେହିମାନଙ୍କ ପରାମର୍ଶ ନେଇ ଝଙ୍କାରର ନୂଆ ଆଭିମୁଖ୍ୟ ତିଆରି ହେଉ ।

ମୋର ଏତେ କଥା କହିବାର ଉଦ୍ଦେଶ୍ୟ ହେଉଛି ଯେ ଏବେ ସମୟ ଆସିଛି ଝଙ୍କାର ନିଜର ପୁରୁଣା ନେତୃତ୍ୱ ହାତକୁ ନେଇ ନେବାର । ଶ୍ରୀ ଭର୍ତ୍ତୃହରି ମହତାବ ଓଡ଼ିଶାରେ ଡକ୍ଟର ମହତାବଙ୍କର ଯୋଗ୍ୟ ଦାୟାଦ ଭାବେ ଜଣା । ଉଭୟ ଓଡ଼ିଶା

ଭିତରେ ଓ ଜାତୀୟ କ୍ଷେତ୍ରରେ ସେ ଜଣେ ସଫଳ ସାଂସଦ ଭାବରେ ଜଣାଶୁଣା । ତାଙ୍କ ପଛରେ ଅଛନ୍ତି ପ୍ରଜାତନ୍ତ୍ର ଓ ଝଂକାରର ଅଗଣିତ ପାଠକ ମଣ୍ଡଳୀ । ମୁଁ ଆଶା କରୁଛି ସେ ଏଇ ଦାୟିତ୍ୱ ନେବେ ଓ ତାଙ୍କ ହାତରେ ଝଂକାରର ନବକଳେବର ହେବ । ପୁରୁଣା ଦିନରେ ଝଂକାର ଯେପରି ଆମ ଭଳି ଅନେକ ଲେଖକ ସୃଷ୍ଟି କରିଥିଲା, ଝଂକାର ମାଧ୍ୟମରେ ବର୍ତ୍ତମାନ ସେଇଭଳି ଏକ ନୂଆ ପ୍ରଜନ୍ମର ଲେଖକ ଗୋଷ୍ଠୀ ସୃଷ୍ଟି ହୁଅନ୍ତୁ ।

ଆଜିର ବିଷୁବ ସଂକ୍ରାନ୍ତି ଓଡ଼ିଆମାନଙ୍କ ପାଇଁ ଶୁଭଦିନ । ଏଇ ମାତ୍ର ଶେଷ ହୋଇଛି ଓଡ଼ିଶା ପାଇଁ ଆଉ ଦୁଇଟି ମହତ୍ୱପୂର୍ଣ୍ଣ ଦିନ- ୧୧ ମାର୍ଚ୍ଚ ଓ ପହିଲା ଏପ୍ରିଲ । ଏଇ ଦିନମାନଙ୍କରେ ଆମେମାନେ ଓଡ଼ିଆ ସ୍ୱାଭିମାନ କଥା କହିଥାଉ ଏବଂ ଓଡ଼ିଆ ଭାବରେ ଗର୍ବ ଅନୁଭବ କରୁ । ମୋ ମତରେ କେବଳ ଏତିକି ଯଥେଷ୍ଟ ନୁହେଁ, ସେଥିପାଇଁ ଆହୁରି କିଛି ଆବଶ୍ୟକ । ମୁଁ ଓଡ଼ିଶାରେ ଜନ୍ମିତ ଓ ଓଡ଼ିଆରେ ପରିପାଳିତ । କିନ୍ତୁ, କେବଳ ଏଠାରେ ଜନ୍ମ ହୋଇଥିବାର ସଂଯୋଗ ହେତୁ ଓଡ଼ିଶାକୁ ନିଜର ବୋଲି ଦାବୀ କରିବା ବା ନିଜକୁ ଓଡ଼ିଆ କହିବା ଧୃଷ୍ଟତା ହେବ । ମୁଁ ପ୍ରକୃତରେ ଓଡ଼ିଆ ହୋଇପାରିବି ଓଡ଼ିଶାର ମାଟି ପାଣି ପବନ ଓ ଲୋକଙ୍କୁ ଭଲ ପାଇ, ଓଡ଼ିଶା ବିଷୟରେ ଜାଣି ଓ ବୁଝି ଏବଂ ଓଡ଼ିଶା ଓ ଓଡ଼ିଆ ଭାଷାର ସେବା କରି । ତା ହେଲେ ହିଁ ମୁଁ ପ୍ରକୃତ ଓଡ଼ିଆ । ଯେ ପର୍ଯ୍ୟନ୍ତ ମୁଁ ଏ ସବୁ ନ କରିଛି, ସେ ପର୍ଯ୍ୟନ୍ତ ମୋର କୌଣସି ଅଧିକାର ନାହିଁ ନିଜକୁ ଓଡ଼ିଆ ବୋଲି କହିବାର ।

*ବିଷୁବ ମିଳନ, କଟକ ୧୩ ଏପ୍ରିଲ ୨୦୧୬*

*୧. ଆପଣ ଜଣେ ଲେଖକ ହେବେ ବୋଲି କେବେଠୁ ଜାଣିଥିଲେ ? ପିଲାଦିନେ ଆପଣଙ୍କୁ କ'ଣ ପଢ଼ିବାକୁ ଭଲ ଲାଗୁଥିଲା ?*

*- ବିବେକାନନ୍ଦ ଜେନା, କେନ୍ଦୁଝର*

ସ୍କୁଲ କଲେଜ ସମୟରେ ଲେଖାଲେଖି କରୁଥିବା ବେଳେ ପରବର୍ତ୍ତୀ ସମୟରେ ଲେଖିବା ଛାଡ଼ି ଦେଇ ପନ୍ଦର ବର୍ଷ ପରେ ୧୯୭୦ରେ ଯେତେବେଳେ ପୁଣି ଲେଖାରେ ହାତ ଦେଲି, ସେତିକି ବେଳେ ବୋଧହୁଏ ଲେଖକ ହେବି ବୋଲି ଜାଣିଲି । ପିଲାଦିନେ ମୁଁ ସବୁ ପ୍ରକାରର ବହି ପଢୁଥିଲି; ପ୍ରକୃତରେ କହିଲେ ମତେ 'ପଢ଼ିବାକୁ' ହିଁ ଭଲ ଲାଗୁଥିଲା ।

*୨. ଗଳ୍ପ, କବିତା, ଭ୍ରମ ଆଦି ଆପଣ ସାହିତ୍ୟର ଅନେକ ବିଭାଗରେ ଲେଖିଛନ୍ତି । ତେବେ କେଉଁ ବିଭାଗରେ ଆପଣ ନିଜକୁ ସବୁଠୁ ଭଲ ଭାବରେ ବ୍ୟକ୍ତ କରିପାରନ୍ତି ? ଅନ୍ୟ ଶବ୍ଦରେ କହିଲେ, କେଉଁଥିରେ ଆପଣ ସବୁଠୁ ସହଜ ଅନୁଭବ କରନ୍ତି ?*

*- ମଧୁସ୍ମିତା ମହାନ୍ତି, ଭଦ୍ରକ*

ମୁଁ ଯେଉଁ ସବୁ ବିଭାଗରେ ଲେଖିଛି, ସେ ସବୁଥିରେ ନିଶ୍ଚୟ ମୁଁ ନିଜକୁ ଭଲ ଭାବେ ବ୍ୟକ୍ତ କରିବାକୁ ଚାହେଁ; କିନ୍ତୁ ମୁଁ ସେଥିରେ କେତେଦୂର ସଫଳ ହୋଇଛି, ତାହା ପାଠକମାନେ ହିଁ କହିପାରିବେ । ମୋ ପାଇଁ ପ୍ରତ୍ୟେକ ଲେଖା ଗୋଟିଏ ଗୋଟିଏ ଆତଙ୍କ ଏବଂ ଏହି କଷ୍ଟସାଧ୍ୟ କାମଟି ପାଇଁ ମୁଁ କେବେହେଲେ ସହଜ ଅନୁଭବ କରେ ନାହିଁ । ଲେଖାଟି ଶେଷ ହେଲେ ଯେଉଁ ସନ୍ତୋଷ ମିଳେ ତା ପାଇ ନ ଥିଲେ ମୁଁ ଲେଖିବା ଛାଡ଼ି ଦେଇଥାନ୍ତି ।

*୩. ଆପଣ ବୋଧହୁଏ ଓଡ଼ିଆର ଏକାମାତ୍ର ଆଗଧାଡ଼ିର ଲେଖକ ଯିଏ ଶିଶୁମାନଙ୍କ ପାଇଁ ମଧ୍ୟ ଲେଖିଛନ୍ତି, ସେ ଦିଗରେ କିଛି ପରୀକ୍ଷାନିରୀକ୍ଷା ମଧ୍ୟ କରିଛନ୍ତି । ବଙ୍ଗଳା ଭଳି ଓଡ଼ିଆରେ ମଧ୍ୟ ସବୁ ବଡ଼ ସାହିତ୍ୟିକ ପିଲାଙ୍କ ପାଇଁ ଲେଖିବା ଉଚିତ ବୋଲି ଆପଣ ଭାବନ୍ତିନି କି ?*

*- ରାମନାରାୟଣ ନାୟକ, ପୁରୀ*

ମୁଁ ପିଲାଙ୍କ ପାଇଁ ଅଳ୍ପ କିଛି ଲେଖିଛି । ଓଡ଼ିଶାରେ ଶିଶୁ ଓ କିଶୋରମାନଙ୍କ ପାଇଁ ଲେଖୁଥିବା ସାହିତ୍ୟିକଙ୍କୁ ଉପଯୁକ୍ତ ସମ୍ମାନ ଦିଆଯାଏ ନାହିଁ । ମୁଁ ଭାବୁଛି ଆମର ତଥାକଥିତ ବିଶିଷ୍ଟ ସାହିତ୍ୟିକମାନେ ପିଲାଙ୍କ ପାଇଁ ଲେଖିଲେ ଏ ବିଭାଗକୁ ସମ୍ମାନ ମିଳିବ । ଏବଂ, ଆଶା କରାଯାଉ, ପିଲାମାନେ ହୁଏତ କିଛି ଭଲ ସାହିତ୍ୟ ପଢ଼ିବାକୁ ପାଇବେ ।

*୪. 'ଦେଶ କାଳ ପାତ୍ର' ଲେଖିବାର ପ୍ରେରଣା ଓ କାରଣ କ'ଣ ଥିଲା ?*

*- କୌତୁକ ପଣ୍ଡା, କଳାହାଣ୍ଡି*

*- ନେପାଳ ଚନ୍ଦ୍ର ସାହୁ, ମହଲଦା, ମୟୂରଭଞ୍ଜ*

ଊନବିଂଶ ଶତାବ୍ଦୀର ତାଳପତ୍ର ପୋଥି ଚିତ୍ରକର ରଘୁନାଥ ପୃଷ୍ଟିଙ୍କ ବିଷୟରେ ଗବେଷଣା କଲାବେଳେ ମତେ ସେ ସମୟର କାଗଜପତ୍ର( ବିଶେଷରେ ଉତ୍କଳ ଦୀପିକା) ପଢ଼ିବାକୁ ହୋଇଥିଲା । ଏବଂ ମତେ ସେଇ ସମୟଟି ଓଡ଼ିଶା ପାଇଁ ଏକ ଯୁଗାନ୍ତକାରୀ ସମୟ ବୋଲି ମନେ ହୋଇଥିଲା । ତାହା ହିଁ ଥିଲା ମୋର ବହିଟି ଲେଖିବାର ପ୍ରେରଣା, କାରଣ ଓ ଆବେଗ ।

*୫. 'ଦେଶ କାଳ ପାତ୍ର'ରେ ଐତିହାସିକ ଘଟଣା ଓ ଚରିତ୍ରଙ୍କୁ ନେଇ ଲେଖିବାବେଳେ ଆପଣ ନିଜ କଳ୍ପନାକୁ ମଧ୍ୟ ସେଥିରେ ମିଶ୍ରଣ କରିଛନ୍ତି । ଏପରି ଲେଖାରେ ଇତିହାସର ଗୁରୁତ୍ୱ କେତେ ରହିବା ଉଚିତ ? ତଥ୍ୟ ଗୁରୁତ୍ୱପୂର୍ଣ୍ଣ ନା ଲେଖା ପଠନୀୟତା ?*

*- ସୁଶାନ୍ତ କୁମାର ମହାନ୍ତି, କଟକ*

'ଦେଶ କାଳ ପାତ୍ର'ରେ କଳ୍ପନା ଅତି ଗୌଣ ଭାବରେ ଅଛି । ଏଥିରେ ଥିବା ଚରିତ୍ର ଓ ଘଟଣାମାନ ଇତିହାସ ଆଧାରିତ । ଏହି ବହିଟି ଇତିହାସ ନୁହେଁ, ତେଣୁ ଏହାକୁ ଇତିହାସ ଭାବରେ ପଢ଼ିବା ବା ଇତିହାସ ଭଳି ଏଥିରୁ ଉଦ୍ଧରଣ ଦେବା ଅସଙ୍ଗତ ।

ଇତିହାସ ଭିତ୍ତିକ ଉପନ୍ୟାସରେ କଳ୍ପନା ଓ ବାସ୍ତବ କି ମାତ୍ରାରେ ରହିବ ତାର କୌଣସି ଭାଗମାପ ନାହିଁ । ଅନ୍ୟ ଯେ କୌଣସି ସାହିତ୍ୟିକ କୃତି ଭଳି ଏଥିରେ ପଠନୀୟତା ହିଁ ଗୁରୁତ୍ୱପୂର୍ଣ୍ଣ । ଯେ ଐତିହାସିକ ସତ୍ୟ ଜାଣିବାକୁ ଚାହେଁ, ସେ ଇତିହାସ ପଢ଼ିବ, ଐତିହାସିକ ଉପନ୍ୟାସ ନୁହେଁ ।

*୬. ନିଜସ୍ୱ କଳ୍ପନାରୁ ରଚିତ ଗଳ୍ପ, ଉପନ୍ୟାସ ଓ କବିତା ଏବଂ ଇତିହାସ ବା ପୁରାଣ ଆଧାରିତ ଗଳ୍ପ, ଉପନ୍ୟାସ ଓ କବିତା ଭିତରୁ ଉଚ୍ଚସ୍ତରର ସାହିତ୍ୟ ବୋଲି ଆପଣ କାହାକୁ କହିବେ ?*

*- ରାମଚରଣ ଗୁରୁ, ସମ୍ବଲପୁର*

କଳ୍ପନା ପ୍ରସୂତ ସାହିତ୍ୟ ଓ ଇତିହାସ ପୁରାଣ ଆଧାରିତ ସାହିତ୍ୟ କେହି କାହାରିଠାରୁ ଉତ୍କୃଷ୍ଟ ବା ନିକୃଷ୍ଟ ନୁହନ୍ତି; ଉଭୟ ପ୍ରକାରର ସାହିତ୍ୟ ନିଜ ନିଜ ସ୍ଥାନରେ ନିଜର ବିଶିଷ୍ଟତା ଦାବୀ କରନ୍ତି । ଲେଖକ ପାଇଁ କଳ୍ପନାତ୍ମକ ସାହିତ୍ୟ ବେଶି ମହତ୍ତ୍ୱ ରଖେ କାରଣ କଳ୍ପନାର କୌଣସି ସୀମା ନାହିଁ, କିନ୍ତୁ ଦ୍ୱିତୀୟ ପ୍ରକାରର ସାହିତ୍ୟ ପାଇଁ ଲେଖକକୁ ଉତ୍ସ ଲେଖାର ସୀମା ଭିତରେ ରହିବାକୁ ହୁଏ ।

*୭. 'ସୁନ୍ଦର ଦାସ' ଏକ ସୁନ୍ଦର ଉପନ୍ୟାସ ହୋଇ ପାରିଥାଆନ୍ତା । ଆପଣ ତା'କୁ ନାଟକ ଭାବେ ଲେଖିବାର ନିଷ୍ପତ୍ତି ନେଇଥିଲେ କାହିଁକି ?*

*- ସୁରେନ୍ଦ୍ର ଖୁଣ୍ଟିଆ, କେନ୍ଦ୍ରାପଡ଼ା*

ମୁଁ 'ସୁନ୍ଦର ଦାସ'କୁ ପ୍ରଥମେ ଉପନ୍ୟାସ ଭାବେ ଲେଖିବାକୁ ଭାବିଥିଲି, କିନ୍ତୁ କିଛି ଦିନ ପୂର୍ବରୁ 'ଦେଶ କାଳ ପାତ୍ର' ଲେଖିଥିବାରୁ ଏବଂ ଅନେକ ବର୍ଷ ଧରି ନାଟକ ଲେଖି ନ ଥିବାରୁ ଏହାକୁ ନାଟକ ଭାବରେ ଲେଖିଲି । ନାଟକ ହୋଇଥିଲେ ମଧ୍ୟ ଏହାର ଚରିତ୍ର ଓ ଘଟଣାମାନ ଦେଶକାଳପାତ୍ର ଭଳି ଇତିହାସ ଉପରେ ଆଧାରିତ । ଦୁଃଖର ବିଷୟ ଯେ ସୁନ୍ଦର ଦାସ ବେଶି ପାଠକଙ୍କ ପାଖରେ ପହଞ୍ଚି ପାରିଲା ନାହିଁ; ହୁଏ ତ ଉପନ୍ୟାସ ଭାବରେ ଲେଖିଥିଲେ ଏହାକୁ ଆଉ କିଛି ପାଠକ ମିଳିଥାନ୍ତେ ।

*୮. ଆପଣ କେଉଁ କବିତାକୁ ଭଲ କବିତା କହିବେ ?*

*- ପ୍ରଫୁଲ୍ଲ ଚନ୍ଦ୍ର ବାରିକ, ରାଉରକେଲା*

ମୁଁ ଏ ପ୍ରଶ୍ନର ଉତ୍ତର ଦେବାକୁ ଅକ୍ଷମ । ସାହିତ୍ୟର ତତ୍ତ୍ୱ ବିଷୟରେ ମୋର କୌଣସି ଜ୍ଞାନ ବା ଆଗ୍ରହ ନାହିଁ । ତେବେ ମୁଁ ଏତିକି ଜାଣେ ଯେ ଯେଉଁ କବିତା ପଢ଼ିଲେ ଛାତି ଭିତରେ ହୁଲ୍‌ସ୍ଥୁଲ ହୁଏ, ସେଇଟି ଭଲ କବିତା ।

*୯. ଆପଣ କବିତାରେ କୌଣସି ବିରାମ ଚିହ୍ନ ରଖନ୍ତି ନାହିଁ । ଏ ପ୍ରକାର ଶୈଳୀ କାହିଁକି ?*

*- ନମିତା ମହାପାତ୍ର, ନୟାଗଡ଼*

କାହିଁକି ମୁଁ ମୋର କବିତାରୁ ବିରାମ ଚିହ୍ନ କାଟିଦେଲି ଜାଣେନା, ତେବେ ମୁଁ ଦେଖିଲି ଯେ ଧାଡ଼ିକୁ ଠିକ ଭାବରେ ଭାଙ୍ଗିଲେ ପାଠକକୁ ବୁଝିବାରେ କୌଣସି ଅସୁବିଧା ହେବ ନାହିଁ । ବିରାମ ଚିହ୍ନ ନ ଦେବା ମୋର ଅଭ୍ୟାସ ହୋଇଗଲା ।

(ଏଠାରେ ଉଲ୍ଲେଖଯୋଗ୍ୟ ଯେ ମୋର ଗଦ୍ୟ ଲେଖାରେ ମୁଁ ବିରାମ ଓ ଅନ୍ୟ ଚିହ୍ନର ବହୁଳ ବ୍ୟବହାର କରିଥାଏ ।)

*୧୦. ଆପଣଙ୍କ କବିତା ଭଲ ଲାଗେ; କିନ୍ତୁ ଅନେକ ସମୟରେ ମନେହୁଏ ସେଥିରେ ଆବେଗର ଅଭାବ ରହିଥିବା ଭଳି । ଆପଣ କବିତା ଲେଖିବାବେଳେ ଆବେଗଠୁ ଦୂରରେ ରହିବାକୁ ଚେଷ୍ଟା କରନ୍ତି କି ?*

*- ସନାତନ ମହାନ୍ତି, ଚଉଗଡ଼*

ମୋର କେଉଁ କବିତାରେ ଆବେଗ ଅଛି ବା କେଉଁଥିରେ ନାହିଁ, ମୋର ସେ ବିଷୟରେ ଧାରଣା ନାହିଁ । ପାଠକକୁ କୌଣସି କବିତା ପଢ଼ିବା ବେଳେ ଏପରି ଲାଗିପାରେ । ମୁଁ ଲେଖିଲା ବେଳେ ଆବେଗର ପାଖରେ ବା ଦୂରରେ ରହିବା ପାଇଁ ଚେଷ୍ଟା କରେ ନାହିଁ । ତେବେ ଲେଖାଟି ପାଠକକୁ କି ଭଳି ମନେ ହେଲା ତାହା ହିଁ ଶେଷ କଥା ।

*୧୧. ନୂଆପିଢ଼ିର କବିମାନେ କେଉଁ ପ୍ରସଙ୍ଗକୁ ନେଇ ଲେଖିବା ଉଚିତ ? ସେମାନେ ଛନ୍ଦବଦ୍ଧ କବିତା ଲେଖିବା ଉଚିତ କି ? ମାର୍ଗଦର୍ଶନ କରନ୍ତୁ !*

*- ପ୍ରଭୁଦତ୍ତ ଦାଶ, ଭୁବନେଶ୍ୱର*

ପୃଥିବୀରେ ଲେଖିବା ପାଇଁ ଅଗଣିତ ପ୍ରସଙ୍ଗ ରହିଛି; ସେଥିପାଇଁ ନୂଆ ପୀଢ଼ୀର କବିମାନେ ଯେ କୌଣସି ବିଷୟକୁ ନେଇ ଲେଖିପାରନ୍ତି । କିନ୍ତୁ ସେମାନେ ଯାହା ଲେଖିବେ ତାହା କବିତା ହେବା ଉଚିତ, ଭଲ କବିତା ହେବା ଉଚିତ । ଛନ୍ଦବଦ୍ଧ କବିତା, ମୁକ୍ତ ଛନ୍ଦ କବିତା, ଗଦ୍ୟ କବିତା ଯେ କୌଣସି ଶୈଳୀରେ ଭଲ କବିତା ଲେଖା ଯାଇପାରେ । ନୂଆ କବି ଅନେକ କବିତା ପଢ଼ିଲେ ନିଜେ ବୁଝି ପାରିବେ କେଉଁ ପ୍ରସଙ୍ଗ ନେଇ କି ଭଳି ଶୈଳୀରେ ଲେଖି ପାରିବେ ଏବଂ ତାହା ହିଁ ହେବ ତାଙ୍କ ପାଇଁ ଉଚିତ ମାର୍ଗ ।

*୧୨. ଆପଣଙ୍କ ଅଧିକାଂଶ ଗଳ୍ପରେ ଆପଣ ଆପଣଙ୍କ ଗଳ୍ପ ନାୟକଙ୍କୁ ଖୁବ୍ ଅସହାୟ ଓ ଦୟନୀୟ ଚରିତ୍ରଟେ କରି ଛାଡ଼ନ୍ତି । ଏପରି ଅଡୁଆ ପରିସ୍ଥିତିରେ ପକାନ୍ତି ଯେ ଚରିତ୍ରଟି ବେଶ୍ ହଲାପଟା ହୋଇ*

*ଖୁବ୍ ହାସ୍ୟାସ୍ପଦ ଓ ବିଚରା ଦିଶେ । ଚରିତ୍ରମାନଙ୍କୁ ଏଭଳି ଚିତ୍ରଣ କରିଥିବାରୁ ଆପଣ ଦୋଷୀ ଭାବରେ ଆକ୍ରାନ୍ତ ହୁଅନ୍ତ କି ? ଏଇ ଚରିତ୍ରମାନଙ୍କ ଦ୍ୱାରା ଏକ ମନସ୍ତାତ୍ତ୍ୱିକ ସ୍ତରରେ ଆପଣ ଅତିଷ୍ଠ ହୁଅନ୍ତି କି ?*

*- ଦୁର୍ଗାପ୍ରସାଦ ପଣ୍ଡା, ସମ୍ବଲପୁର*

ଏ କଥା ମୋ ମନକୁ ଆସିନଥିଲା । ଯଦି ସବୁ ଗଳ୍ପର ନାୟକ (ଭାଗ୍ୟଭଲ, ନାୟିକା ନୁହନ୍ତି) ଅସହାୟ, ଦୟନୀୟ, ହାସ୍ୟାସ୍ପଦ ଓ ବିଚରା, ତା ନିଶ୍ଚୟ ଲେଖକର ତ୍ରୁଟି । କାରଣ ମୋର ମତରେ ଜଣେ ଲେଖକର ଲେଖାରେ ପ୍ରତିଟି ଚରିତ୍ର ଅନ୍ୟ ଚରିତ୍ରରୁ ଭିନ୍ନ ହେବା ଉଚିତ ।

ଲେଖକ ନିଜ ଲେଖାର ଚରିତ୍ର ସହିତ ଏକାତ୍ମ ହେବା ଅନୁଚିତ । ଚରିତ୍ର ଗୋଟିଏ କାଳ୍ପନିକ ଜୀବ, ଲେଖା ଚାଲିଥିବା ପର୍ଯ୍ୟନ୍ତ ଲେଖକ ପାଖରେ ଥାଏ; ତା ପରେ ଲେଖକ ତାକୁ ଭୁଲିଯିବା ଉଚିତ । ଚରିତ୍ର ସେ ଯେ ଭଳି ଚିତ୍ରଣ କରିଛି ଏବଂ ତାହା ଦ୍ୱାରା ଯାହା ସବୁ କରାଇଛି, ସେଥିପାଇଁ ଲେଖକ ନିଜକୁ ଦାୟୀ କରିବାର କୌଣସି କାରଣ ନାହିଁ । ତା ନ ହେଲେ ରେବତୀର ପରିବାରକୁ ନିଶ୍ଚିହ୍ନ କରିଦେଇଥିବାର ଗ୍ଲାନି ଯୋଗୁ ଫକୀରମୋହନଙ୍କୁ ଆତ୍ମହତ୍ୟା କରିବାକୁ ପଡ଼ିଥାନ୍ତା ! ଅନ୍ତତଃ ମୋର ଏ ବିଷୟରେ କୌଣସି ମାନସିକ ଅତିଷ୍ଠତା ନାହିଁ ।

*୧୩. ସାହିତ୍ୟରେ ସମାଜ-ସଚେତନ କୌଣସି ପ୍ରତିବାଦୀ ସ୍ୱର ରହିବା ଲୋଡ଼ା କି ?*

*- ଗୋକୁଳି ମହାନ୍ତି, କଟକ*

ସବୁ ସାହିତ୍ୟ ଓ ସବୁ ଲେଖକ ଯେ ସମାଜ-ସଚେତନ ଓ ପ୍ରତିବାଦୀ ଲେଖା ଲେଖିବେ, ଏ ଭଳି କୌଣସି ନିୟମ ନାହିଁ । ତେବେ କୌଣସି ସାହିତ୍ୟର ସବୁ ଲେଖକ ଯଦି କଳ୍ପନା ବିଳାସୀ ଓ ପଳାୟନପନ୍ଥୀ କବିତା ଲେଖନ୍ତି, ତା ନିଶ୍ଚୟ ଚିନ୍ତାର ବିଷୟ ହେବ ।

*୧୪. ଆମ ଲେଖକମାନଙ୍କର ଉଚ୍ଚାରଣ ଓ ଆଚରଣ ଭିତରେ ପ୍ରଭେଦ କାହିଁକି ?*

*- ଅମୂଲ୍ୟ ବେହେରା*

ମୋ ମତରେ ଲେଖକର ବ୍ୟକ୍ତିଗତ ଆଚରଣ ଓ କାର୍ଯ୍ୟକଳାପ ବିଷୟରେ ଆମର ଜାଣିବାର କୌଣସି ଆବଶ୍ୟକତା ନାହିଁ । ତାର ଲେଖା ହିଁ ଆମ ପାଇଁ ସବୁ କିଛି । ସାଧୁସନ୍ଥ ସ୍ୱଭାବର ଲେଖକର ଖରାପ ଲେଖାଠାରୁ ଖଳ ପ୍ରକୃତି ଲେଖକର ଭଲ ଲେଖା ନିଶ୍ଚୟ ଅଧିକ ପ୍ରଶଂସନୀୟ ।

*୧୫. ଶୁଣିଛି, ଆପଣ ଆପଣଙ୍କ ପ୍ରଥମ ବହିର ପ୍ରଚ୍ଛଦ ଆଙ୍କିବା ଲାଗି ସତ୍ୟଜିତ ରାୟଙ୍କ ପାଖକୁ ଯାଇଥିଲେ । ସେ ପ୍ରସଙ୍ଗରେ କିଛି କହନ୍ତୁ ।*

*- ଲକ୍ଷ୍ମୀ ପ୍ରସାଦ ମିଶ୍ର, ସୋନପୁର*

ମୋର ପ୍ରକାଶକ ବନ୍ଧୁଙ୍କର ଆଗ୍ରହ କ୍ରମେ ସତ୍ୟଜିତଙ୍କୁ ଅନୁରୋଧ କରିବାରେ ସେ କବିତାର ଅନୁବାଦ ପଢ଼ି ପ୍ରଚ୍ଛଦ ଆଙ୍କି ଦେଇଥିଲେ । ବାସ୍,ଏତିକି ।

*୧୬. ଆପଣ ଚାକିରି କାଳ ଶେଷ ବେଳକୁ ମୁଖ୍ୟ ଶାସନ ସଚିବ ହୋଇ ଥାଆନ୍ତେ ବୋଧହୁଏ । କିନ୍ତୁ ମଝିରୁ ସ୍ୱେଚ୍ଛାକୃତ ଅବସର ଗ୍ରହଣ କଲେ କାହିଁକି ?*

*- ରାଜେଶ କୁମାର ଦାସ, ଭୁବନେଶ୍ୱର*

ମୁଁ ମୁକ୍ତ ଜୀବନ ବଞ୍ଚିବାକୁ ଚାହୁଁଥିଲି; ସେଥିପାଇଁ ଚାକରି ଛାଡ଼ି ଦେଲି । ଏହା ଯଦି ମୋ ପାଇଁ

ଲେଖିବାରେ ସହାୟକ ହେଲା, ସେଇଟି ବୋନସ୍ ବା ଅତିରିକ୍ତ ଲାଭ ।

*୧୭. ଆପଣଙ୍କ ଓଡ଼ିଶା ଓ ଓଡ଼ିଆ ପ୍ରେମ କମ୍ ନୁହେଁ । ତେବେ ଦିଲ୍ଲୀରେ ରହିବାର ନିଷ୍ପତ୍ତି ନେଲେ କାହିଁକି ? ଓଡ଼ିଶାଠୁ ଦୂରରେ ରହିବା ଆପଣଙ୍କ ଲେଖକ ଜୀବନକୁ କେମିତି ପ୍ରଭାବିତ କରିଛି ?*

*- ପୂର୍ଣ୍ଣିମା ଦାଶ, କୋଲକାତା*

ମୁଁ ୧୯୭୩ରେ ଦିଲ୍ଲୀକୁ ଆସିଲି ଏବଂ ରହୁ ରହୁ ଏଠାରେ ରହିଗଲି । ତେବେ ଏଠାରେ ରହିବାରେ ମୋର ଓଡ଼ିଶା ଓ ଓଡ଼ିଆ ସହିତ ସଂପର୍କରେ କୌଣସି ଅଭାବ ରହିଗଲା ବୋଲି ମୋର ମନେ ହୋଇନାହିଁ । ଏଠାରେ କାର୍ଯ୍ୟକ୍ଷେତ୍ର ଅଧିକ ବିସ୍ତୃତ ହୋଇଥିବାରୁ ମତେ ଏଠାରୁ ଅନେକ କିଛି ଶିଖିବାକୁ ମିଳିଲା ।

*୧୮. ଆପଣ ପୁରୀ ପଟ୍ଟଚିତ୍ର ଉପରେ ମୌଳିକ ଗବେଷଣା କରିଛନ୍ତି । ସେ ଦିଗରେ ରୁଚି କେମିତି ଆସିଲା ?*

*- ଯୋଗେନ୍ଦ୍ର ପତି, ବାରିପଦା*

ଚାକିରି କରୁଥିବା ସମୟରେ ମୁଁ ହସ୍ତକଳା କାରିଗର ଓ ବିଶେଷରେ ପଟ ଚିତ୍ରକାରଙ୍କ ସଂସ୍ପର୍ଶରେ ଆସିଥିଲି । ଓଡ଼ିଶାର କଳା ବିଷୟରେ ପଢ଼ାପଢ଼ି କରିବାରେ ମୋର ଉପଲବ୍ଧି ହେଲା ଯେ ଓଡ଼ିଶାର ମନ୍ଦିର ସ୍ଥାପତ୍ୟ ବିଷୟରେ ଅନେକ ଗବେଷଣା ହୋଇଥିବା ବେଳେ ଚିତ୍ରକଳା ଉପରେ କୌଣସି ଅଧ୍ୟୟନ ହୋଇନାହିଁ । ଏଥିରୁ ମୋର ଆଗ୍ରହ ହେଲା ଏ ବିଷୟରେ କିଛି କାମ କରିବା ପାଇଁ ।

*୧୯. ଆପଣ କଳାହାଣ୍ଡିର ଜିଲ୍ଲାପାଳ ଥିଲେ ଏକଦା । କଳାହାଣ୍ଡିକୁ ଲୋକେ ପ୍ରାୟ ସବୁ ସମୟରେ ଦାରିଦ୍ର୍ୟର ଏକ ଅନ୍ୟ ନାଁ ଭାବରେ ଜାଣି ଆସୁଛନ୍ତି । ଆପଣ କଳାହାଣ୍ଡିକୁ କେମିତି ଦେଖୁଛନ୍ତି ? ଆପଣ ସେଠି ଥିବାବେଳେ ଓ ବର୍ତ୍ତମାନ ଭିତରେ କିଛି ପାର୍ଥକ୍ୟ ଦେଖି ପାରୁଛନ୍ତି ?*

*- ମୋହନ ନାଏକ, ବଲାଙ୍ଗିର*

କଳାହାଣ୍ଡି ଛାଡ଼ିବାର ପଚାଶ ବର୍ଷ ପରେ ମୁଁ ୨୦୧୫ରେ ସେଠାକୁ ଯାଇଥିଲି । ସେଠାରେ ନିଶ୍ଚୟ ଅନେକ ପରିବର୍ତ୍ତନ ଆସିଛି । ମୁଁ ଭବାନୀପାଟଣାରେ ଥିବା ବେଳେ ସେଠାରେ ପାଉଁରୁଟି ମିଳୁ ନଥିଲା; ବର୍ତ୍ତମାନ ସେଠାରେ ନାଇକେ ଜୋତାର ଦୋକାନ ଖୋଲିଲାଣି । ଏ ସବୁ ସହରୀ ସ୍ୱଚ୍ଛନ୍ଦତାର ଗୋଟିଏ କାରଣ ହେଉଛି ଆଲୁମିନିଅମ । ଅନ୍ୟ ଦିଗରେ କିନ୍ତୁ ପୂର୍ବ ସମୟର ଦାରିଦ୍ର୍ୟ ମଧ୍ୟ ରହିଛି; ଦାନ ମାଝି ଘଟଣା ଏହାର ଏକ ଉଦାହରଣ । ଏଥିରୁ ଜଣାଯିବ ଯେ କିଛି ଲୋକ ସମୃଦ୍ଧିରୁ ଭାଗ ପାଉଥିବା ବେଳେ ଅନେକ ଲୋକ ଏପର୍ଯ୍ୟନ୍ତ ଏଥିରୁ ବଞ୍ଚିତ ରହିଛନ୍ତି ।

*୨୦. ରେଭେନ୍ସା କଲେଜ ବା ବିଶ୍ୱବିଦ୍ୟାଳୟ ନାଁ ବଦଳାଇବା ପ୍ରସଙ୍ଗରେ ଆପଣ ମତ ଦେଇଛନ୍ତି । ସେ ସଂପର୍କରେ କିଛି କହନ୍ତୁ । ତା' କ'ଣ ସମ୍ଭବ ?*

*- ଲୋକନାଥ ସାହୁ, ଭୁବନେଶ୍ୱର*

ରେଭେନ୍‌ଶାଙ୍କ ଅପାରଗତା ଓ ସମ୍ବେଦନାହୀନତା ଯୋଗୁ ନଅଙ୍କ ଦୁର୍ଭିକ୍ଷରେ ଓଡ଼ିଶାର ଦଶ ଲକ୍ଷ ଲୋକ ପ୍ରାଣ ହରାଇଥିଲେ । ବ୍ରିଟିଶ ସରକାରଙ୍କ ଦୁର୍ଭିକ୍ଷ କମିଶନ ଏଥିପାଇଁ ତାଙ୍କୁ ଦୋଷୀ ସାବ୍ୟସ୍ତ କରିଥିଲେ । ରେଭେନ୍‌ଶାଙ୍କ ବିଷୟରେ ମୁଁ କହିଥିଲି ଯେ ଆମ ଉପରେ ରାଜୁତି କରିବାକୁ ଇଂଲାଣ୍ଡରୁ

ଯେଉଁ କିଛି ଶ୍ୱେତ ବର୍ଣ୍ଣ ଦ୍ୱିପଦ ପ୍ରାଣୀ ଆସିଥିଲେ, ରେଭେନଶା ତାର ଏକ ନିକୃଷ୍ଟ ନମୁନା ଥିଲେ; ଆମର ଗୋଟିଏ ବିଶ୍ୱବିଦ୍ୟାଳୟକୁ ଏହି ଗୋରା ଅମଲାଙ୍କ ନାଁ ଦେବା ଓଡ଼ିଆ ଜାତି ପ୍ରତି ଉପହାସ । ଦ୍ୱିତୀୟରେ, କଟକ କଲେଜ ସାଙ୍ଗରେ ରେଭେନଶାଙ୍କ ନାଁ ଯୋଡ଼ା ହେବାର ଏକମାତ୍ର କାରଣ ହେଉଛି ମୟୂରଭଂଜ ରାଜା କଲେଜକୁ ୨୫୦୦୦ଟଙ୍କା  ଦାନ କରି କମିଶନରଙ୍କୁ ଖୋସାମତ କରିବା ପାଇଁ ଏହି ପ୍ରସ୍ତାବ ଦେଇଥିଲେ । ବର୍ତ୍ତମାନ ଆମର ବିଶ୍ୱବିଦ୍ୟାଳୟ ସେ ନାଁଟିକୁ ବୋହିବାର କୌଣସି ଯଥାର୍ଥତା ନାହିଁ ।

*୨୧. ଆପଣଙ୍କ ଜୀବନରେ ଅନେକ ଚମତ୍କାର ଅଭିଜ୍ଞତା ଥିବ । ସାହିତ୍ୟ ସମେତ ଚିତ୍ରକଳା ଆଦି ଆପଣ ଅନେକ ବିଭାଗକୁ ଛୁଇଁଛନ୍ତି । ଆପଣ ଆତ୍ମଜୀବନୀ ଲେଖୁଛନ୍ତି କି ? ଯଦି ନା, କାହିଁକି ?*

*- ସୋନାଲି ହୋତା, ଭୁବନେଶ୍ୱର*

ନା । ଗୋଟିଏ ସଚ୍ଚୋଟ ଆତ୍ମଜୀବନୀ ଲେଖିବା ପାଇଁ ଯେତିକି ସ୍ମରଣଶକ୍ତି, ସମଦର୍ଶିତା, ସତ୍ୟବଦ୍ଧତା ଓ ସତ୍‌ସାହସ ଦରକାର, ସେ ସବୁ ମୋର ନାହିଁ ବୋଲି ମୁଁ ଭାବୁଛି ।

*ସମ୍ବାଦ, ଫେବ୍ରୁଆରି ୨୬, ୨୦୧୭*

# ଗୋରା ଲୋକଙ୍କ ନାଁର ବୋଝ

## ୧. ଫେସ୍‌ବୁକ ଜାନୁଆରି ୧୮, ୨୦୧୭

କିଛି ଦିନ ହେଲା ରେଭେନ୍‌ଶା ୟୁନିଭର୍ସିଟିର ୧୫୦ ବର୍ଷ ପୂର୍ତ୍ତି ଉତ୍ସବ ବେଶ୍ ଧୂମଧାମରେ ପାଳନ କରାଯାଉଛି । ଏହା ଦ୍ୱାରା ରେଭେନ୍‌ଶାଙ୍କ ନାଁ ପୁଣି ଥରେ ପୁନର୍ଜନ୍ମ ପାଇଲା ଭଳି ଜଣା ପଡୁଛି । ବେଶ କିଛି ବର୍ଷ ତଳେ ଭୁବନେଶ୍ୱରର ଏକ ସାହିତ୍ୟ ସଭାରେ ମୁଁ କହିଥିଲି ଯେ କଟକର ଏହି ବିଶ୍ୱବିଦ୍ୟାଳୟରୁ ରେଭେନ୍‌ଶାଙ୍କ ନାଁ ଉଠାଇ ଦିଆଯାଉ, କାରଣ ସମସ୍ତଙ୍କୁ ଜଣା ଯେ ଏହି ମହାତ୍ମାଙ୍କ ଅପାରଗତାରୁ ନଅଙ୍କ ଦୁର୍ଭିକ୍ଷ ସମୟରେ ଆମ ଓଡ଼ିଶାର ଦଶ ଲକ୍ଷ ଲୋକ ମୃତ୍ୟୁ ମୁଖରେ ପଡ଼ିଥିଲେ । ଏ କଥାକୁ ଅତିରଂଜିତ କରି ମୁଁ କହିଥିଲି ଯେ ଆମର ବିଶ୍ୱବିଦ୍ୟାଳୟକୁ ରେଭେନ୍‌ଶାଙ୍କ ନାଁ ଦେବା ଜାଲିଆଁୱାଲା କଲେଜକୁ ଜେନେରାଲ ଡାୟାରଙ୍କ ନାଁ ଦେବା ସହିତ ସମାନ ।

ଆମ ଉପରେ ରାଜୁତି କରିବାକୁ ବ୍ରିଟିଶ ସରକାର ଯେଉଁ କିଛି ଶ୍ୱେତ ବର୍ଣ୍ଣ ଦ୍ୱିପଦ ପ୍ରାଣୀ ବା ସହଜ ଭାଷାରେ କହିଲେ ଗୋରା ଦି ଗୋଡ଼ିଆ ଜନ୍ତୁ ପଠାଇଥିଲେ, ରେଭେନ୍‌ଶା ତା'ର ଏକ ନିକୃଷ୍ଟ ନମୁନା ଥିଲେ । ଓଡ଼ିଶାରେ ସେତେବେଳେ ଏତେ ମହାନ୍ ପୁରୁଷ ଥିବା ବେଳେ(ଯଥା, ଗୌରୀଶଙ୍କର ରାୟ) ଗୋଟିଏ ବିଶ୍ୱବିଦ୍ୟାଳୟରେ ଏହି ଗୋରା ଅମଲାଙ୍କ ନାଁ ଯୋଡ଼ା ହେବା ଓଡ଼ିଆ ଜାତି ପ୍ରତି ଉପହାସ ।

ମୁଁ ଏ ବିଷୟରେ ବିଭିନ୍ନ ସମୟରେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଚିଠି ଲେଖିଥିଲି, କିନ୍ତୁ ତାଙ୍କ ପାଖରୁ ସୌଜନ୍ୟମୂଳକ ଉତ୍ତରଟିଏ ମଧ୍ୟ ପାଇ ନଥିଲି । ମୁଁ ଆଶା କରୁଛି ସମସ୍ତେ ଏ ବିଷୟରେ ଚିନ୍ତା କରିବେ ଓ ରାସ୍ତାଘାଟ ଅନୁଷ୍ଠାନମାନଙ୍କରୁ ଗୋରାଲୋକଙ୍କ ନାଁ ହଟାଇଲା ଭଳି ଏହି ବିଶ୍ୱବିଦ୍ୟାଳୟରୁ ମଧ୍ୟ ତାଙ୍କ ନାଁକୁ କାଟି ଫିଙ୍ଗି ଦେବେ ।

୨. ସମ୍ବାଦ ମାର୍ଚ୍ଚ ୨୨, ୨୦୧୭

'ଗୋରା ଲୋକଙ୍କ ବୋଝ' କବିତାରେ କିପ୍‌ଲିଙ୍ଗ୍ ବର୍ଣ୍ଣନା କରିଥିଲେ ଗୋରା ଲୋକମାନେ କିପରି ଉପନିବେଶ ସ୍ଥାପନ କରି କଳା ଲୋକଙ୍କୁ ସଭ୍ୟ କରିବାର ଭାର ନିଜ ଉପରକୁ ନେଇ ଯାଉଛନ୍ତି । ବର୍ତ୍ତମାନ ଉପନିବେଶ ଲୋପ ପାଇଗଲାଣି, କିନ୍ତୁ ଆମକୁ ଏବେ ବି କିଛି ଗୋରା ଲୋକଙ୍କ ନାଁ'ର ବୋଝ ବୋହିବାକୁ ପଡୁଛି ।

୧୯୪୭ରେ ଇଂରେଜ ଆମ ଦେଶକୁ ଛାଡ଼ି ପଳାଇବା ପରେ ଆମର ଅନେକ ରାସ୍ତାଘାଟ, ଅନୁଷ୍ଠାନ ଓ ସରକାରୀ ବେସରକାରୀ ସଂସ୍ଥାମାନଙ୍କରୁ ବିଲାତୀ ନାଁ ହଟାଇ ଦେଶୀ ନାଁ ଦେବା ଆରମ୍ଭ ହେଲା । ଏହି କ୍ରମରେ ଓଡ଼ିଶାରେ ଭିକ୍ଟୋରିଆ ସ୍କୁଲ, ରସେଲକୁଣ୍ଡା ଓ ମାଟ୍‌ଉଡ୍ ପାର୍କକୁ ବଦଳାଇ କରା ହେଲା ଭକ୍ତମଧୁ ବିଦ୍ୟାପୀଠ, ଭଞ୍ଜନଗର ଓ ଗୋପବନ୍ଧୁ ପାର୍କ । ଅତି ନିକଟରେ ଇଂରେଜମାନେ ଦେଇଥିବା ନାଁ ଓରିସ୍‌ସା ଓ ଓରିୟାକୁ ସମ୍ବିଧାନରେ ବଦଳାଇ କରାଗଲା ଓଡ଼ିଶା ଓ ଓଡ଼ିଆ ।

୧୯୭୬ ମସିହାରେ ୧୯ ଜଣ ଛାତ୍ରଙ୍କୁ ନେଇ ଆରମ୍ଭ ହୋଇଥିଲା କଟକ କଲେଜ । ୧୯୭୮ରେ ମୟୂରଭଂଜର ଶ୍ରୀକୃଷ୍ଣଚନ୍ଦ୍ର ଭଞ୍ଜଦେଓ କଲେଜକୁ ୨୫,୦୦୦ ଟଙ୍କା ଦାନ କଲେ ଓ ତାଙ୍କର ଆଗ୍ରହରେ କଲେଜର ନାଁକୁ ବଦଳାଇ କରାଗଲା ରେଭେନ୍‌ଶା କଲେଜ । ୨୦୦୬ରେ ଏହି କଲେଜର ପଦୋନ୍ନତି ହୋଇ ଏହା ଏକ ବିଶ୍ୱବିଦ୍ୟାଳୟ ହେଲା । ଏହାର ନାଁ ରଖାଗଲା ରେଭେନ୍‌ଶା ବିଶ୍ୱବିଦ୍ୟାଳୟ ।

ଏହି ନାମକରଣ ସାଧାରଣ ରୁଚିର ବିରୋଧୀ ହୋଇଥିବାରୁ ଓ ଏଥିରେ ଉପନିବେଶର ଆଭାସ ଥିବାରୁ ମୁଁ ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ଚିଠି ଦେଇ ଏହି ଅନୁଷ୍ଠାନରୁ ରେଭେନ୍‌ଶାଙ୍କ ନାଁକୁ ବାହାର କରି ଦେବା ପାଇଁ ଲେଖିଥିଲି । ଏହା ପରେ ଆଉ କେତୋଟି ଚିଠି ସତ୍ତ୍ୱେ ମୁଁ ଏ ବିଷୟରେ ନିର୍ଣ୍ଣୟ ତ ଦୂରର କଥା, ସୌଜନ୍ୟମୂଳକ ପ୍ରାପ୍ତିସ୍ୱୀକାର ମଧ ପାଇ ନଥିଲି । ଏଥିରୁ ଜଣାପଡ଼ିବ ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟ କିଭଳି କାର୍ଯ୍ୟକ୍ଷମ ଓ ସଂବେଦନଶୀଳ ।

ଏହା ପରେ ଯେତେବେଳେ ଏହି ବିଶ୍ୱବିଦ୍ୟାଳୟ ୧୫୦ ବର୍ଷ ପୂର୍ତ୍ତି ଉତ୍ସବ ପାଳନ କଲା, ମୁଁ ପୁଣିଥରେ ଏହି ପ୍ରଶ୍ନ ଉଠାଇଲି । ମୁଁ ଦେଖାଇଥିଲି କିପରି ନଅଙ୍କ ଦୁର୍ଭିକ୍ଷ ସମୟରେ ରେଭେନ୍‌ଶାଙ୍କର ଅପାରଗତା ଓ ସମବେଦନା ଅଭାବରୁ ଓଡ଼ିଶାର ଦଶଲକ୍ଷ ଲୋକ ମୃତ୍ୟୁମୁଖରେ ପଡ଼ିଥିଲେ, ଯେଉଁଥିପାଇଁ ସ୍ୱୟଂ ବ୍ରିଟିଶ ସରକାର

ତାଙ୍କୁ ଦୋଷୀ ସାବ୍ୟସ୍ତ କରିଥିଲେ ।

ଏ ବିଷୟ ପ୍ରସାରିତ ହେବା ପରେ ଦେଖାଗଲା ଯେ ଅନ୍ତତଃ କିଛି ଲୋକ ରେଭେନ୍‌ଶାଙ୍କ ନାଁ'କୁ ସମର୍ଥନ କରୁଛନ୍ତି ଏବଂ ଏକ ରେଭେନ୍‌ଶା ବଞ୍ଚାଅ କ୍ଲବ୍ ଗଢ଼ିବା ପାଇଁ ତତ୍ପର । ତାଙ୍କ ସପକ୍ଷରେ ଏ କଥା କୁହାଗଲା ଯେ ସେ ଓଡ଼ିଆ ଭାଷାକୁ ବଞ୍ଚାଇଥିଲେ । ଏ କଥା କହିବା ଦ୍ୱାରା ନିଶ୍ଚିତ ଭାବେ ଆମର ଗୌରୀଶଙ୍କର, ଫକୀରମୋହନ ପ୍ରମୁଖଙ୍କ ଭାଷା ସୁରକ୍ଷା ଆନ୍ଦୋଳନକୁ ନ୍ୟୂନ କରିଦିଆଯାଉଛି । ଏଥିରୁ ଜଣାପଡୁଛି ଯେପରିକି ବର୍ତ୍ତମାନ ଏକ ରେଭେନ୍‌ଶା ସୁରକ୍ଷା ଆନ୍ଦୋଳନର ପ୍ରସ୍ତୁତି ହେଉଛି ।

ଏଠାରେ ଉଲ୍ଲେଖନୀୟ ଯେ ସ୍ୱାଧୀନତା ଆନ୍ଦୋଳନର ଭାରତ ଛାଡ଼ ବିକ୍ଷୋଭ ସମୟରେ ରେଭେନ୍‌ଶା କଲେଜର ଛାତ୍ରମାନେ ଏହି କୋଠାରୁ ୟୁନିଅନ୍ ପତାକାକୁ ବାହାର କରି ଦେଇଥିଲେ । ପରିତାପର ବିଷୟ ଯେ ସ୍ୱାଧୀନତାର ସତୁରି ବର୍ଷ ପରେ ଆମମାନଙ୍କ ମନରୁ ଔପନିବେଶିକ ମନୋଭାବ ଯାଇ ନାହିଁ । ଆମେ ଭାବୁଛୁ ଯେ ବ୍ରିଟିଶ ଅମଲାମାନେ ଓଡ଼ିଆ ଭାଷା ଓ ଓଡ଼ିଶାର ଶିକ୍ଷା ବିଷୟରେ ଉପରକୁ ସୁପାରିଶ କରି ଆମ ପ୍ରତି ଦୟା ଦେଖାଇ ଆମକୁ ଧନ୍ୟ କରିଛନ୍ତି । ଦମନକାରୀଙ୍କର ଛୋଟ ଛୋଟ ଦୟାର ଉଚ୍ଛିଷ୍ଟ ପାଇଁ କୃତକୃତ୍ୟ ହେବା ଏକ ରୁଗ୍‌ଣ ଔପନିବେଶକ ମାନସିକତା । ରେଭେନ୍‌ଶାଙ୍କ ଯୋଗ୍ୟତାରୁ ବଳି ବଡ଼ ପ୍ରଶ୍ନ ହେଉଛି ଆମ ଅନୁଷ୍ଠାନରେ ଗୋଟିଏ ବିଲାତୀ ନାଁକୁ ଯୋଡ଼ିବା ।

ଏ କଥା ମଧ୍ୟ କୁହାଯାଉଛି ଯେ ଦେଶରେ ଏତେ ବଡ଼ ବଡ଼ ସମସ୍ୟା ଥିବାବେଳେ ଗୋଟିଏ ଅନୁଷ୍ଠାନର ନାଁ ବଦଳାଇବା ବିଷୟରେ ସମୟ ନଷ୍ଟ କରିବା ଉଚିତ ନୁହେଁ । ଏଇଟି ନିଶ୍ଚୟ ଗୋଟିଏ ଛୋଟ କଥା, ଏପରିକି ଏହାକୁ ସମସ୍ୟା ବୋଲି ମଧ୍ୟ କୁହାଯିବ ନାହିଁ । ତେବେ ପ୍ରତ୍ୟେକ ସମସ୍ୟା ନିଜ ନିଜ ସ୍ଥାନରେ ଗୁରୁତ୍ୱପୂର୍ଣ୍ଣ । ଦାରିଦ୍ର୍ୟ ଦୂରୀକରଣ ଓଡ଼ିଆ ଭାଷା ସମସ୍ୟାରୁ ନିଶ୍ଚୟ ଅଧିକ ଗୁରୁତର ଏବଂ ଆତଙ୍କବାଦ ଚାଷୀ ଆତ୍ମହତ୍ୟାଠାରୁ ଅଧିକ ସମସ୍ୟାସଂକୁଳ । କିନ୍ତୁ ସେଥିପାଇଁ ଓଡ଼ିଆ ଭାଷା ସମସ୍ୟା ବା ଚାଷୀ ଆତ୍ମହତ୍ୟାକୁ ଅଣଦେଖା କରାଯାଇ ପାରିବ ନାହିଁ । ନାଁ ବଦଳାଇବା ଗୋଟିଏ ଛୋଟ କଥା ହୋଇପାରେ, କିନ୍ତୁ ଔପନିବେଶିକ ମନୋବୃତ୍ତି ଆଦୌ ଉପେକ୍ଷାର ବିଷୟ ନୁହେଁ ।

ପ୍ରଥିତଯଶା କବି ଜଗନ୍ନାଥ ପ୍ରସାଦ ଦାସ(ଜେପି)ଙ୍କର ବହୁମୁଖୀ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ସାହିତ୍ୟର ଅନ୍ୟ ବିଭାଗରେ ମଧ୍ୟ ଦେଖିବାକୁ ମିଳେ । ପ୍ରବନ୍ଧ, ବକ୍ତୃତା ଓ ସାକ୍ଷାତ୍‌କାର ମାଧ୍ୟମରେ ଓଡ଼ିଆ ସାହିତ୍ୟକୁ ବିଭିନ୍ନ ଭାବରେ ସେ ଋଦ୍ଧିମନ୍ତ କରିଛନ୍ତି ଏବଂ ପାଠକମାନଙ୍କର ଚିନ୍ତା ଓ ଚେତନାର ଦିଗନ୍ତକୁ ପ୍ରସାରିତ କରିପାରିଛନ୍ତି । ଗଭୀର ଅଧ୍ୟୟନ ଓ ମୌଳିକ ଚିନ୍ତାପ୍ରସୂତ ତାଙ୍କର ମତାମତ ପାଠକମାନଙ୍କୁ ସାହିତ୍ୟ, ସଂସ୍କୃତି ଓ ଇତିହାସକୁ ଭିନ୍ନ ଦୃଷ୍ଟିକୋଣରୁ ବିଚାର କରିବା ପାଇଁ ଅନୁପ୍ରେରିତ କରିଥାଏ । ତାଙ୍କ ଚିନ୍ତାଜଗତ ସଂପର୍କରେ ଏହି ପୁସ୍ତକରେ ସ୍ଥାନିତ ଭାଷଣ, ପ୍ରବନ୍ଧ ଓ ସାକ୍ଷାତ୍‌କାରଗୁଡ଼ିକରୁ ପାଠକମାନେ ଏକ ସମ୍ୟକ୍ ଧାରଣା ପାଇ ପାରିବେ ।

ଜଗନ୍ନାଥ ପ୍ରସାଦ ଦାସ କବି, ଗାଳ୍ପିକ, କଳା ଐତିହାସିକ, ନାଟ୍ୟକାର ଭାବରେ ଓଡ଼ିଶା ଓ ଓଡ଼ିଶା ବାହାରେ ସୁପରିଚିତ । ତାଙ୍କ ରଚିତ ଅନେକ ପୁସ୍ତକ ଇଂରାଜୀ ଓ ଅନ୍ୟାନ୍ୟ ଭାରତୀୟ ଭାଷାରେ ଅନୂଦିତ ହୋଇ ପାଠକୀୟ ଆଦୃତି ଲାଭ କରିଛି । ସେ ବହୁ ପୁରସ୍କାର ଓ ସମ୍ମାନରେ ଭୂଷିତ । ୨୦୦୭ ମସିହାରେ ତାଙ୍କୁ ସରସ୍ୱତୀ ସମ୍ମାନ ପ୍ରଦାନ କରାଯାଇଥିଲା ।